# କୀର୍ତ୍ତିତ କୃଷ୍ଣଚରଣ

(ଡକ୍ଟର କୃଷ୍ଣଚରଣ ବେହେରାଙ୍କ ଏକାଦଶାହ ଅବସରରେ ପ୍ରକାଶିତ ସ୍ମରଣିକା)

ଉପଦେଷ୍ଟା :

ରବିନାରାୟଣ ସେନାପତି, ଆଇ.ଏ.ଏସ୍.

ଡକ୍ଟର ବିମଳେନ୍ଦୁ ମହାନ୍ତି

ଡକ୍ଟର ଗୌରାଙ୍ଗ ଚରଣ ଦାଶ

ଶ୍ରୀ ଅସିତ ମହାନ୍ତି

ଡକ୍ଟର ବିଜୟାନନ୍ଦ ସିଂହ

ଶ୍ରୀମତୀ ମଧୁଶ୍ରୀ ବେହେରା

ଶ୍ରୀ ପୁଣ୍ୟଶ୍ଳୋକ ବେହେରା

ଶ୍ରୀମତୀ ମୀନାକ୍ଷୀ ବେହେରା

ଶ୍ରୀମତୀ ରାଜଶ୍ରୀ ବେହେରା

ସଂପାଦନା

ଡ. ଚିତ୍ତରଂଜନ ବେହେରା

ପ୍ରକାଶକ

ବିଜୟିନୀ ପବ୍ଲିକେଶନ୍ସ, କଟକ

# କୀର୍ତ୍ତିତ କୃଷ୍ଣଚରଣ

(ଡକ୍ଟର କୃଷ୍ଣଚରଣ ବେହେରାଙ୍କ
ଏକାଦଶାହ ଅବସରରେ ପ୍ରକାଶିତ ସ୍ମରଣିକା)

ଉପଦେଷ୍ଟା :

ରବିନାରାୟଣ ସେନାପତି, ଆଇ.ଏ.ଏସ୍.
ଡକ୍ଟର ବିମଳେନ୍ଦୁ ମହାନ୍ତି
ଡକ୍ଟର ଗୌରାଙ୍ଗ ଚରଣ ଦାଶ
ଶ୍ରୀ ଅସିତ ମହାନ୍ତି
ଡକ୍ଟର ବିଜୟାନନ୍ଦ ସିଂହ
ଶ୍ରୀମତୀ ମଧୁଶ୍ରୀ ବେହେରା
ଶ୍ରୀ ପୁଣ୍ୟଶ୍ଳୋକ ବେହେରା
ଶ୍ରୀମତୀ ମୀନାକ୍ଷୀ ବେହେରା
ଶ୍ରୀମତୀ ରାଜଶ୍ରୀ ବେହେରା

ସଂପାଦନା
ଡ. ଚିତ୍ତରଞ୍ଜନ ବେହେରା

ପ୍ରକାଶକ
ବିଜୟିନୀ ପବ୍ଲିକେଶନ୍ସ, କଟକ

ପ୍ରଥମ ପ୍ରକାଶ
୮ ଅଗଷ୍ଟ ୨୦୧୭

ମୁଦ୍ରଣ
ସଙ୍ଗୀତା ପ୍ରିଣ୍ଟର୍ସ, କଟକ



## ଡକ୍ଟର କୃଷ୍ଣଚରଣ ବେହେରା

ଜନ୍ମ : ୨ ଜୁନ୍ ୧୯୩୨

ମୃତ୍ୟୁ : ୨୯ ଜୁଲାଇ ୨୦୧୭

# ଦୁଇପଦ କଥା...

ଶେଷ ନିଃଶ୍ୱାସ ପର୍ଯ୍ୟନ୍ତ ଯେଉଁ ମହାନ୍ ଆତ୍ମା ମୋ ବିଦ୍‌ବତ୍ତାକୁ ଉଜ୍ଜୀବିତ କରିବାକୁ ସାହସ ଦେଇ ଆସୁଥିଲା ତାଙ୍କ ପାଇଁ ଯେତେ ଲେଖିଲେ ବି କମ୍ ହେଇଯିବ ।

ସେଇ ପୁଣ୍ୟାତ୍ମା ପରମପୁରୁଷଙ୍କଠାରୁ 'ଶେଷକଥା' ନ ଶୁଣିପାରିବାର ଅବସୋସ ମୋ ପ୍ରାଣକୁ ବାରମ୍ବାର ଦେଉଛି ଆଘାତ । କରତି ହେଇଯାଉଚି ଛାତି ।

କହୁଚି...

ଆଉ କିଛି ରହିଗଲା...

ସାଆନ୍ତାଣୀ (ମୋ ସ୍ତ୍ରୀ ଡ. ବନପ୍ରଭା ପରିଡ଼ା)ଙ୍କ ଖବର ପଚାରିବାକୁ ମୋ ପାଖରେ ଆଉ କେହି ନାହିଁ । ନାହାନ୍ତି ମୋ ପ୍ରତ୍ୟେକଟି ଲେଖାକୁ ମାର୍ଜିତ ସଂଶୋଧିତ କରିବାକୁ । କିଏ ଦେବ ମୋତେ ଆଉ ପିତୃତୁଲ୍ୟ ସ୍ନେହ । ଅଦମ୍ୟ ଉତ୍ସାହ । ଅଜାଡ଼ିଦେବ ଅସରନ୍ତି ଭଲ ପାଇବା । କିଏ ଆଉ କରିବ ଆକଟ । ମୋ ଭଲମନ୍ଦରେ କିଏ ହେବେ ଠିଆ । କାହାଠୁ ପାଇବି ପ୍ରେରଣା, ଦିଗ୍‌ଦର୍ଶନ, ଦିଶା ।

କିଏ ହେବ ମୋ ଦକ୍ଷତା ବୃଦ୍ଧିର ଦ୍ରଷ୍ଟା ।

ସେଇ ପରମ ପୁରୁଷଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ....

ସ୍ନେହାନୁବନ୍ଧ ଚିରଞ୍ଜନ

# ପୃଷ୍ଠାରେ ପୃଷ୍ଠାରେ ଶ୍ରଦ୍ଧାସୁମନ...

●



# ଉତ୍କଳ ସାହିତ୍ୟ ସମାଜ

(ଓଡ଼ିଶାର ପ୍ରାଚୀନତମ ସାହିତ୍ୟ ଓ ସାଂସ୍କୃତିକ ପ୍ରତିଷ୍ଠାନ)

ପ୍ରତିଷ୍ଠା : ୧୯୦୩, ପଂଜିକୃତ ସଂଖ୍ୟା : ୮୧୪/କୋ/୨୨.୬.୧୯୩୫

## ଶୋକବାର୍ତ୍ତା

ଡକ୍ଟର କୃଷ୍ଣଚରଣ ବେହେରାଙ୍କ ଆଜୀବନ ସାରସ୍ୱତ ସାଧନା ଓଡ଼ିଆ ବାଣୀଭଣ୍ଡାରକୁ ସମୃଦ୍ଧ କରିଛି । ଛଅ ଦଶନ୍ଧିରୁ ଊର୍ଦ୍ଧ୍ୱକାଳ ଧରି କଥା ସାହିତ୍ୟ, କବିତା, ପ୍ରବନ୍ଧ-ସମାଲୋଚନା, ଗ୍ରନ୍ଥ ସଂପାଦନା, ସାହିତ୍ୟ ପତ୍ରିକା ସଂପାଦନା, ସାରସ୍ୱତ ସଂଗଠନ ଓ ଗବେଷଣା ପ୍ରକଳ୍ପର ତତ୍ତ୍ୱାବଧାରକ ରୂପେ ନିଜର ଭୂମିକାକୁ ସେ ନିଷ୍ଠାର ସହ ନିର୍ବାହ କରି ଆସିଥିଲେ । ଓଡ଼ିଆ ଭାଷା ସାହିତ୍ୟରେ ତାଙ୍କର ଅଧ୍ୟାପନା ଓ ଦିଗଦର୍ଶନ ସଦା ସ୍ମରଣୀୟ ହୋଇ ରହିବ । ଉତ୍କଳ ସାହିତ୍ୟ ସମାଜର ଏହି ସମ୍ମାନାସ୍ପଦ ଆଜୀବନ ସଦସ୍ୟଙ୍କ ଅବର୍ତ୍ତମାନ ଓଡ଼ିଆ ସାହିତ୍ୟ ପାଇଁ ଅପୂରଣୀୟ କ୍ଷତି ।

ଡକ୍ଟର କୃଷ୍ଣଚରଣ ବେହେରାଙ୍କ ପରଲୋକରେ ଉତ୍କଳ ସାହିତ୍ୟ ସମାଜ ପକ୍ଷରୁ ୩୦ ଜୁଲାଇ, ୨୦୧୭ ରବିବାର ସନ୍ଧ୍ୟାରେ ଅନୁଷ୍ଠାନ ପରିସରସ୍ଥ ଶ୍ରୀଧର ପାଠଘରଠାରେ ଅନୁଷ୍ଠିତ କାର୍ଯ୍ୟ ନିର୍ବାହିକା ସମିତି ବୈଠକରେ ଶୋକ ପ୍ରସ୍ତାବ ଆଗତ କରାଯାଇ ନିରବ ପ୍ରାର୍ଥନା କରାଯାଇଥିଲା । ଅନୁଷ୍ଠାନର ସଭାପତି ଡକ୍ଟର ବିଜୟାନନ୍ଦ ସିଂହଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ଏହି ବୈଠକରେ ଦିବଙ୍ଗତ ସାଧକଙ୍କ କର୍ମମୟ ଜୀବନ ଓ ଓଡ଼ିଆ ସାହିତ୍ୟକୁ ତାଙ୍କର ବିପୁଳ ଅବଦାନ ସଂପର୍କରେ ଆଲୋଚିତ ହୋଇଥିଲା ।

ସାଧାରଣ ସଂପାଦକ

# ଓଡ଼ିଆ ଭାଷା-ସାହିତ୍ୟ ବିଭାଗ

## ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାର

## ଶୋକବାର୍ତ୍ତା

ଓଡ଼ିଶାର ଖ୍ୟାତନାମା ସାହିତ୍ୟ ସାଧକ ପ୍ରଫେସର ଡକ୍ଟର କୃଷ୍ଣଚରଣ ବେହେରାଙ୍କ ବିୟୋଗରେ ଉତ୍କଳ ବିଶ୍ୱବିଦ୍ୟାଳୟ ସ୍ନାତକୋତ୍ତର ଓଡ଼ିଆ ବିଭାଗର ଛାତ୍ରଛାତ୍ରୀ, ଅଧ୍ୟାପକ, ଅଧ୍ୟାପିକା ଓ କର୍ମଚାରୀବୃନ୍ଦ ଅତ୍ୟନ୍ତ ମର୍ମାହତ । ଡକ୍ଟର ବେହେରା ଓଡ଼ିଆ କଥାସାହିତ୍ୟ ଓ ସମାଲୋଚନା ସାହିତ୍ୟକୁ ଯେଭଳି ସମୃଦ୍ଧ କରିଛନ୍ତି । ତାହା ପାଠକମାନଙ୍କପାଇଁ ସୃଷ୍ଟି କରିଛି ଅନନ୍ୟ ପ୍ରେରଣା । ଓଡ଼ିଆ ଭାଷା ସାହିତ୍ୟର ଗବେଷଣାପାଇଁ ସେ ପ୍ରତିଷ୍ଠା କରିଥିଲେ 'ଓଡ଼ିଆ ଗବେଷଣା ପରିଷଦ' । ଏହାର ସଭାପତି ଭାବରେ ଜୀବନର ଶେଷ ପର୍ଯ୍ୟାୟ ପର୍ଯ୍ୟନ୍ତ ସେ ସକ୍ରିୟ ଭୂମିକା ନେଇଥିଲେ । ଯୁବ ଅଧ୍ୟାପକ ଓ ଗବେଷକମାନଙ୍କୁ ଗବେଷଣା କ୍ଷେତ୍ରରେ ସଫଳତା ଅର୍ଜନ କରିବାପାଇଁ ସେ ଯେଉଁ ଦିଗ୍‌ଦର୍ଶନ ଦେଉଥିଲେ, ତାହା ଏକାନ୍ତ ସ୍ମରଣୀୟ ହୋଇରହିବ । ତାଙ୍କ ବିୟୋଗ ଫଳରେ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଯେଉଁ ଶୂନ୍ୟସ୍ଥାନ ସୃଷ୍ଟି ହେଲା ତାହା ବାସ୍ତବରେ ଅପୂରଣୀୟ । ପ୍ରଫେସର ବେହେରାଙ୍କ ପବିତ୍ର ଆତ୍ମାର ସଦ୍‌ଗତି କାମନା କରିବା ସଙ୍ଗେ ସଙ୍ଗେ ତାଙ୍କ ପରିବାରବର୍ଗଙ୍କୁ ଏ ଦୁଃଖ ସହ୍ୟ କରିବାପାଇଁ ଈଶ୍ୱର ଶକ୍ତି ପ୍ରଦାନ କରନ୍ତୁ, ଏହା ହିଁ ଆମର ପ୍ରାର୍ଥନା ।

ଓଡ଼ିଆ ଭାଷା-ସାହିତ୍ୟ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାର

# ମୋ ଦୃଷ୍ଟିରେ କୃଷ୍ଣଚରଣ

## ରବିନାରାୟଣ ସେନାପତି

ମୋ ଛାତ୍ର ଜୀବନର ଯେଉଁ କେତେକ ସ୍ମୃତି ଏ ପର୍ଯ୍ୟନ୍ତ ମନ ଭିତରେ ସମୟ ସମୟରେ ଉଙ୍କିମଳାରେ, ତନ୍ମଧ୍ୟରେ ସାହିତ୍ୟ ଓ ସଂସ୍କୃତି ସହିତ ସଂପୃକ୍ତ ଥିବା କେତେକ ଘଟଣାବଳୀ ପ୍ରମୁଖ । ଏହିସବୁ ଘଟଣାବଳୀ ଭିତରେ ମୋର ମନେପଡୁଛି, ଆମ ହାଇସ୍କୁଲରେ ଆୟୋଜିତ ହୋଇଥିବା ଏକ ସମ୍ବର୍ଦ୍ଧନା ସଭା କଥା । ଏହି ସଭାର ମୁଖ୍ୟ ଆକର୍ଷଣ ଥିଲେ ଭଦ୍ରକ କଲେଜର ତତ୍କାଳୀନ ସୁପରିଚିତ ଅଧ୍ୟାପକ ଡକ୍ଟର କୃଷ୍ଣଚରଣ ବେହେରା । ସେ ଓଡ଼ିଆ ସାହିତ୍ୟରେ ଗବେଷଣା କରି ଡକ୍ଟରେଟ୍ ଉପାଧି ଲାଭ କରିଥିବାରୁ ତାଙ୍କୁ ସମ୍ବର୍ଦ୍ଧନା ଦେବା ଉଦ୍ଦେଶ୍ୟରେ ଏହି ସଭା ଆୟୋଜିତ ହୋଇଥିଲା । ବୋଧହୁଏ ୧୯୬୬-୬୭ ମସିହାର କଥା । ମୁଁ ସେତେବେଳେ ଦଶମ ଶ୍ରେଣୀରେ ପଢୁଥାଏ । ଦୋଳସାହିସ୍ଥିତ ରାମନାରାୟଣ ହାଇସ୍କୁଲର ପୁରାତନ ଛାତ୍ର ଭାବରେ ଡକ୍ଟର କୃଷ୍ଣଚରଣ ବେହେରା ଏଭଳି ଗୌରବର ଅଧିକାରୀ ହୋଇ ଆମ ସ୍କୁଲର ଜଣେ କୃତି ଛାତ୍ର ଏବଂ ପରବର୍ତ୍ତୀ କାଳରେ ପ୍ରଥମ ଡକ୍ଟରେଟ୍ ଉପାଧି ପ୍ରାପ୍ତ ବ୍ୟକ୍ତି ଥିଲେ । କହିବା ବାହୁଲ୍ୟ, ତାଙ୍କର ଏଭଳି କୃତିତ୍ୱ ଆମପାଇଁ ବହୁ ଆନନ୍ଦ ଓ ଉତ୍ସାହ ଆଣି ଦେଇଥିଲା ।

ପୂର୍ବରୁ ଡକ୍ଟର କୃଷ୍ଣଚରଣ ବେହେରାଙ୍କ ବିଷୟରେ ଆମେ ଶୁଣିଥିଲୁ । ମାତ୍ର ତାଙ୍କ ସହ ପ୍ରତ୍ୟକ୍ଷ ସାକ୍ଷାତ ହେବାର ସୁଯୋଗ ମିଳି ନଥିଲା । ତେଣୁ ଏହି ସମ୍ବର୍ଦ୍ଧନା ସଭା ଥିଲା ଆମ ପାଇଁ ଅପୂର୍ବ ସୁଯୋଗ । ସମ୍ବର୍ଦ୍ଧନା ସଭା ଆୟୋଜନ ହେବାର ଶୁଣି ମୁଁ ତାଙ୍କ ଲିଖିତ କେତୋଟି ପୁସ୍ତକ ସ୍କୁଲ ପାଠାଗାରରୁ ନେଇ ପଢ଼ିସାରିଥିଲି । ବିଶେଷ ଭାବରେ ଏହି ସଭାରେ ଛାତ୍ରମାନଙ୍କ ତରଫରୁ କିଛି କହିବା ପାଇଁ ସ୍କୁଲର ପ୍ରଧାନ ଶିକ୍ଷକ ମୋତେ ଦାୟିତ୍ୱ ଦେଇଥିଲେ । କାରଣ ସ୍କୁଲର ବିଭିନ୍ନ ଆଲୋଚନା ସଭାରେ ମୁଁ ନିୟମିତ ଭାଗ ନେଉଥିଲି । ମାତ୍ର ଗଳ୍ପଗୁଡ଼ିକ ସଂପର୍କରେ କିଛି ଆଲୋଚନା

କରିବା, ପୁଣି ଲେଖକଙ୍କ ନିଜ ଉପସ୍ଥିତିରେ, ଏକଥା ଭାବିଲା ବେଳକୁ ମୋ ଦେହ ଝାଳେଇ ଯାଉଥିଲା । ତଥାପି ସାହସ ସଞ୍ଚୟ କରି ସେହି ସଭାରେ ସାର୍‌ଙ୍କର କେତୋଟି ଗଳ୍ପର ଯଥାସାଧ୍ୟ ଆଲୋଚନା କରିଥିଲି । ତା'ପରେ ସାର୍ ତାଙ୍କ ବକ୍ତବ୍ୟରେ ଅନେକ କଥା କହିଲେ । ସଭା ଶେଷ ହେଲାପରେ ପ୍ରଧାନଶିକ୍ଷକଙ୍କ କୋଠରିକୁ ମୋତେ ଡାକି ମୋ ପିଠି ଥାପୁଡ଼େଇ ଦେଲେ ଏବଂ କିଛି ଉତ୍ସାହପୂର୍ଣ୍ଣ ଉପଦେଶ ଦେଇଥିଲେ । ଏହା ଥିଲା ସାର୍‌ଙ୍କ ସହ ମୋର ପ୍ରଥମ ସାକ୍ଷାତ ସମୟର ଏକ ଚିତ୍ର ।

ଏହାପରେ ମୁଁ ଯେତେବେଳେ ୧୯୬୮ ମସିହାରେ ମାଟ୍ରିକ ପାସ୍ କରି ଭଦ୍ରକ କଲେଜରେ ନାମ ଲେଖାଇଲି, ସେତେବେଳେ ପ୍ରଥମେ କଲେଜ ପରିସରରେ ତାଙ୍କ ବାସଭବନକୁ ଯାଇ ତାଙ୍କୁ ସାକ୍ଷାତ କରି ପ୍ରଣାମ ନିବେଦନ କଲି । ସେ ପ୍ରଥମେ ଆଶ୍ଚର୍ଯ୍ୟ ହୋଇଗଲେ, ମୁଁ ଯେତେବେଳେ କହିଲି ଯେ ମୁଁ କଳା ଶ୍ରେଣୀରେ ନାମ ଲେଖାଇଛି । ତାଙ୍କର ପ୍ରଶ୍ନ ଥିଲା ତୁମେ ମାଟ୍ରିକ୍‌ରେ ଏତେ ଭଲ ନମ୍ବର ରଖି କାହିଁକି ବିଜ୍ଞାନ ପଢୁ ନାହିଁ । ମୁଁ ତାଙ୍କୁ ବୁଝାଇବାକୁ ଚେଷ୍ଟା କଲି ଯେ ବିଜ୍ଞାନ ପଢ଼ିବା ପାଇଁ ମୋର ଆଗ୍ରହ ନାହିଁ । କିଛି ସମୟ ସେ ବିଷୟରେ କଥା ହେଲା ପରେ ସେ କହିଲେ- ଠିକ୍ ଅଛି, ତୁମେ ଭଲ ଭାବରେ ପଢ଼ି ବିଶ୍ୱବିଦ୍ୟାଳୟରେ କିଛି ଗୋଟାଏ ପୋଜିସନ ରଖିବାକୁ ଚେଷ୍ଟା କର ଏବଂ ମୋ ସହିତ ଯୋଗାଯୋଗ ରଖିଥିବ । ମୁଁ ସେହି ସମୟରେ ଅନୁଭବ କଲି ଯେ ସେ ଜଣେ ଶିକ୍ଷକ ନୁହଁନ୍ତି, ବରଂ ଜଣେ ଅଭିଭାବକ ମଧ୍ୟ ।

ଭଦ୍ରକ କଲେଜରେ ପଢୁଥିବା ସମୟରେ ମୁଁ ତାଙ୍କ ଘନିଷ୍ଠ ସଂପର୍କରେ ଆସିଛି । ତାଙ୍କ ପରିବାରର ପ୍ରତ୍ୟେକ ସଦସ୍ୟଙ୍କ ସହ ଭଲ ଭାବରେ ମିଶିଛି । ସେତେବେଳେ ତାଙ୍କ ପିଲାମାନେ ସ୍କୁଲରେ ପଢୁଥିଲେ । ପରବର୍ତ୍ତୀ ସମୟରେ ସେମାନେ ଖୁବ୍ ଯୋଗ୍ୟ ହୋଇଛନ୍ତି । ସାରଙ୍କ ଘରକୁ ଯାଇ ବିଭିନ୍ନ ପୁସ୍ତକ ଅଧ୍ୟୟନ କରିବାର ସୁଯୋଗ ପାଇଛି, ସେଥିପାଇଁ ମୁଁ ତାଙ୍କ ନିକଟରେ ଋଣୀ ।

ତାଙ୍କ ସହିତ ବିଭିନ୍ନ ସମୟରେ ବିଭିନ୍ନ ବିଷୟରେ ଆଲୋଚନା କରିଛି । ଆଲୋଚନା ସମୟରେ ମୁଁ ଲକ୍ଷ୍ୟ କରିଛି ସେ ସର୍ବଦା ନିରପେକ୍ଷ ଏବଂ ବସ୍ତୁନିଷ୍ଠ ଭାବରେ ନିଜର ମତ ଉପସ୍ଥାପନ କରିଥାଆନ୍ତି । ମୁଁ ବ୍ରହ୍ମପୁରରେ ସବ୍‌କଲେକ୍ଟର ଥିବା ସମୟରେ ସାର୍ ଆମ ଘରକୁ ଆସିଥିଲେ ଏବଂ ତାଙ୍କଦ୍ୱାରା ରଚିତ ପ୍ରବନ୍ଧ ପୁସ୍ତକ 'ଟଲ୍ସ ଓ ଚରିତ'ଟି ମୋତେ ଉପହାର ଦେଇଥିଲେ ଏବଂ ସେହି ପୁସ୍ତକଟିକୁ ମୋ

ସମେତ ତାଙ୍କର ଅନ୍ୟ କେତେକ ଛାତ୍ରଙ୍କ ନାମରେ ଉତ୍ସର୍ଗ କରିଥିଲେ । ଏଥିରୁ ତାଙ୍କର ଛାତ୍ର ବତ୍ସଳତା ଓ ଅକପଟ ସ୍ନେହ ସହଜରେ ଅନୁମେୟ । କାର୍ଯ୍ୟ ବ୍ୟସ୍ତତା ହେତୁ ମୁଁ ତାଙ୍କ ସହିତ ଅଧିକ ସମୟ ବିତାଇବା ସମ୍ଭବ ହୋଇ ନାହିଁ । ମୁଁ କଟକରେ ଥିଲାବେଳେ ରେଭେନ୍ସା କଲେଜ ପରିସରରେ ତାଙ୍କ ବାସଭବନକୁ ଯାଇଛି । ସେ ମଧ୍ୟ ତାଙ୍କ ସାନପୁଅ ଟୁଟୁକୁ (ଶୁଭକାନ୍ତ) ନେଇ ଆମ ଘରକୁ ଆସିଥିଲେ । ସେହି ସମୟରେ ଟୁଟୁ ଭାରତୀୟ ବିଦେଶ ସେବାରେ ଯୋଗ ଦେବାର ଥାଏ ।

ସାରଙ୍କ ଦ୍ୱାରା ପରିଚାଳିତ 'ଓଡ଼ିଆ ଗବେଷଣା ପରିଷଦ' ପକ୍ଷରୁ ଆୟୋଜିତ ବିଭିନ୍ନ ସଭା ଓ ଆଲୋଚନାଚକ୍ରରେ ମୁଁ କେତେଥର ଯୋଗ ଦେବାର ସୁଯୋଗ ପାଇଛି । ପରିଷଦର ମୁଖପତ୍ର 'ଏଷଣା'ରେ ତାଙ୍କରି ପ୍ରେରଣାରେ ମୋର କେତୋଟି ଲେଖା ପ୍ରକାଶିତ ହୋଇଛି । ଯେବେ ସାର୍ ଫୋନ କରନ୍ତି, ପଚାରି ବୁଝନ୍ତି ମୋର ଲେଖାଲେଖି ସଂପର୍କରେ । ଏଭଳି ଆନ୍ତରିକତା ଖୁବ କମ୍ ଦୃଷ୍ଟିଗୋଚର ହୁଏ । ଓଡ଼ିଆ ସାହିତ୍ୟର ପ୍ରବୀଣ ରଥୀମାନଙ୍କ ମଧ୍ୟରେ ସେ ଅନ୍ୟତମ ।

ମୋ ଭଳି କେତେଜଣ ଛାତ୍ରଛାତ୍ରୀଙ୍କ ମଧ୍ୟରେ ସାର ତାଙ୍କ ସ୍ୱପ୍ନ ସାକାର ହେବାର ସମ୍ଭାବନା ଦେଖୁଥିଲେ । ମୋତେ ଜଣା ନାହିଁ, ସାରଙ୍କ ସ୍ୱପ୍ନ ସାକାର କରିବାରେ ଆମେ କେତେଦୂର ସମର୍ଥ ହୋଇଛୁ । ମାତ୍ର ଏତିକି କହିବି ତାଙ୍କ ଭଳି ଜଣେ ପ୍ରେରଣାଦାତା ଗୁରୁ ଥିଲେ, ଛାତ୍ରମାନଙ୍କର ଭବିଷ୍ୟତ ନିଶ୍ଚୟ ଉଜ୍ଜ୍ୱଳ ହେବ, ଏଥିରେ ସନ୍ଦେହ ନାହିଁ ।



# ସାରସ୍ୱତ ବଂଧୁ କୃଷ୍ଣଚରଣ

## ଦାଶରଥି ଦାସ

କୃଷ୍ଣବାବୁ ଚାଲିଗଲେ । ପରିଣତ ବୟସରେ ଯିବାକୁ ହୁଏ । ସ୍ଥାନ ଓ କାଳ ପୂର୍ବ ନିର୍ଦ୍ଧାରିତ । ଲେଖକ ଏଇ ଯିବ ଯିବ । ତେବେ କୃଷ୍ଣବାବୁଙ୍କ ଯିବା ଓ ଆମତମଙ୍କ ଯିବା ମଧ୍ୟରେ ପାର୍ଥକ୍ୟ ଅଛି । ଏକଦା ସେ ରେଭେନ୍ସା କଲେଜର ଓଡ଼ିଆ ବିଭାଗର ମୁଖ୍ୟ ଥିଲେ । ଲେଖକ ଥିଲା ତାଙ୍କର ଅନ୍ୟତମ ସହକର୍ମୀ- ଯାହା ଉପରେ ସେ ଆର୍ତ୍ତବଲ୍ଲଭ ଓଡ଼ିଆ ସେମିନାରର ଦାୟିତ୍ୱ ନ୍ୟସ୍ତ କରିଥିଲେ । ସେସବୁ ଦିନ ଥିଲା ଓଡ଼ିଆ ଅଧ୍ୟାପନା ଓ ଅଧ୍ୟୟନର ସୁଦିନ । ସବୁ ସୁଶୃଙ୍ଖଳ । ପରିପାର୍ଶ୍ୱ ସଂପ୍ରୀତି ପରିପୂର୍ଣ୍ଣ ଓ ସାହିତ୍ୟ ପୁଲକିତ । ମୁଖ୍ୟଟି ନୀତିନିଷ୍ଠ, କର୍ତ୍ତବ୍ୟପରାୟଣ ଓ ସମୟାନୁବର୍ତ୍ତୀ ହୋଇଥିବାରୁ ବିଭାଗଟି କର୍ମଚଞ୍ଚଳ ଥିଲା । ଅଧ୍ୟାପନା, ସେମିନାର ଅନୁଷ୍ଠାନ, ମୁଖପତ୍ର 'ସାହିତ୍ୟପତ୍ର' ପ୍ରକାଶନ ସବୁ ନିୟମିତ । ଛାତ୍ରଙ୍କ ମଧ୍ୟରେ ସାହିତ୍ୟବୋଧ, ସାହିତ୍ୟ ସଂପ୍ରୀତି ଓ ସାହିତ୍ୟ ପାଠ ପ୍ରତି ଅନୁରାଗ ବଢ଼ିବ; ସେଥିପାଇଁ ସବୁ ପ୍ରକାର ସଦୁଦ୍ୟମ ଚାଲିଥାଏ ସାରାବର୍ଷ- ପ୍ରାଚୀନ ଓଡ଼ିଆ ସାହିତ୍ୟ ଗୀତମୟ- ଗୀତ ନ ଶୁଣିଲେ କି ପ୍ରାଚୀନ ସାହିତ୍ୟ ପଢ଼ା ? ଘରୁ ରେକର୍ଡ ପ୍ଲେୟାର ଆଣି ସେ କଣ୍ଠଶିଳ୍ପୀଙ୍କ କଣ୍ଠରୁ ଛାନ୍ଦ ଚଉପଦୀ ଶୁଣାନ୍ତି ପିଲାଙ୍କୁ; ସଂଗୀତ ମାଧ୍ୟମରେ ପାଠ ନପଢ଼ିଲେ ପ୍ରାଚୀନ ସାହିତ୍ୟ ପଢ଼ା ଅସଂପୂର୍ଣ୍ଣ ହୋଇଯିବ । କୃଷ୍ଣ ବାବୁ କେବଳ ଦକ୍ଷ ଅଧ୍ୟାପକ କି ଦକ୍ଷ ପ୍ରଶାସକ ନଥିଲେ, ଥିଲେ ବି ଓଡ଼ିଆର ଅନ୍ୟତମ ବିଶିଷ୍ଟ ଲେଖକ ଓ ସାହିତ୍ୟ ସଂଗଠକ । ଗଢ଼ିଛନ୍ତି ବିରାଟ ଅନୁଷ୍ଠାନ 'ଗବେଷଣା ପରିଷଦ', ଲେଖିଛନ୍ତି ଶତାଧିକ ସାହିତ୍ୟ ପୁସ୍ତକ । କ'ଣ ନ କରିଛନ୍ତି ସେ ? ଜୀବନ ତାଙ୍କ ଦ୍ୱାରା କ'ଣ କରାଇ ନ ନେଇଛି ? କେତେ ବିଷୟରେ ନ ଭାବିଛନ୍ତି ସେ ? ଭାବଚିନ୍ତାର ବୈଚିତ୍ର୍ୟ ଅଭାବିତ । କେତେ ଯେ ସେମିନାର ଅନୁଷ୍ଠାନ କରିଛନ୍ତି ତାର ଇୟତ୍ତା ନାହିଁ, କେତେ ବିଷୟରେ ଓଡ଼ିଆ ଅଧ୍ୟାପକଙ୍କୁ ପ୍ରବନ୍ଧ ଲେଖାଇଛନ୍ତି ତାହା ବି ଅଚିନ୍ତନୀୟ । ନୂଆ ପୁରୁଣା କେତେ

ବହିର ଶୁଦ୍ଧପାଠ ନିର୍ଣ୍ଣୟ ଓ ସଂପାଦନା କରିଛନ୍ତି ତାହା ବି ଅକଳନୀୟ; କେତେ ଯେ ଛାତ୍ରଙ୍କୁ ଗବେଷଣା ଦୀକ୍ଷା ଦେଇଛନ୍ତି ତାହା ବି ଈର୍ଷଣୀୟ । ଏକ୍ଷଣାରେ କେତେ ଯେ ପ୍ରବନ୍ଧ ଲେଖାଇଛନ୍ତି ତାହା ଅଭାବିତ । ଚାରିପାଖରେ ତାଙ୍କର ଅନୁଗତ ଶିଷ୍ୟଙ୍କ ପରିକ୍ରମା । ସାରସ୍ୱତ ମୂଲ୍ୟବୋଧ ତାଙ୍କର ପ୍ରୀତିକର । ଲେଖିଛନ୍ତି ସାହିତ୍ୟର ସବୁ ବିଭାଗରେ- ଗଳ୍ପ, କବିତା, ନାଟକ, ଆତ୍ମଜୀବନୀ, ପ୍ରବନ୍ଧ, ରମ୍ୟରଚନା, ସମାଲୋଚନା- ସବୁ କ୍ଷେତ୍ରରେ ଯଥାସମ୍ଭବ ଖ୍ୟାତି କୀର୍ତ୍ତି । ବ୍ୟକ୍ତିତ୍ୱଟି ଥିଲା ଭଦ୍ର, ବିନୟୀ । ଭାଷା, ବ୍ୟବହାର ଓ ଆଚାର ଆଚରଣରୁ ଉଷ୍ଣତା ଓ ଆନ୍ତରିକତା ବାରି ହୋଇ ପଡୁଥିଲା । ତେବେ ନିର୍ଭୀକତା ନ ଥିଲା ନୁହେଁ, ଥିଲା; ବରଂ ସେ ବଡ଼ ସ୍ପଷ୍ଟବାଦୀ । ଅଧ୍ୟାପକମାନେ କ୍ଲାସ୍ ନ ନେଲେ ସେ କ୍ରୋଧ ପ୍ରକାଶ କରୁଥିଲେ ଯଥେଷ୍ଟ- ଦିନେ ତାଙ୍କ ପରବର୍ତ୍ତୀ ବିଭାଗୀୟ ପ୍ରଫେସର ମୁଖ୍ୟଙ୍କୁ ସେ ଭର୍ତ୍ସନା କରୁଥିବାର ଲେଖକ ଦେଖିଛି; ମୁଖ୍ୟଟି କ୍ଲାସ ନିଅନ୍ତି ନାହିଁ । ମୁଖ୍ୟ କ'ଣ କ୍ଲାସ ନେବା ସମୀଚୀନ ? ସେ ଦେଖିବେ କ୍ଲାସ୍ ହେଉଛି କି ନାହିଁ । ମାତ୍ର କୃଷ୍ଣବାବୁ ଥିଲେ ଅଧ୍ୟାପକ ପରି ଅଧ୍ୟାପକଟିଏ; ଆଗେ କ୍ଲାସ୍, ପଛେ ମୁଖ୍ୟତ୍ୱ ।

ଯାଆନ୍ତୁ । ଯିଏ ଯାଏ, ସେ ନିଶ୍ଚିନ୍ତରେ ଯାଏ ବୋଧହୁଏ । ପ୍ରସ୍ଥାନ ନିରୁଦ୍‌ବିଗ୍ନ । ସବୁ ଉଦ୍‌ବେଗ ଓ ଚିନ୍ତା ଚାରିପାଖର ଆତ୍ମୀୟ ସ୍ୱଜନଙ୍କର । କୃଷ୍ଣବାବୁଙ୍କ ଶୋକସନ୍ତପ୍ତ ପୁତ୍ରକନ୍ୟା ଓ ବୋହୂଜାମାତାଙ୍କୁ ଭଗବାନ ଧୈର୍ଯ୍ୟ ଓ ସାହସ ଦିଅନ୍ତୁ ନୂଆ ଜୀବନର ସମ୍ମୁଖୀନ ହେବାକୁ, ଏତିକି ଆଜିର ପ୍ରାର୍ଥନା । ତାଙ୍କ ବାପା ଯେ ଭଲ ଓଡ଼ିଆ ଅଧ୍ୟାପକମାନଙ୍କ ଭିତରୁ ଅନ୍ୟତମ ଥିଲେ ସେ ଏକଥା ଭାବନ୍ତୁ ଓ ତାଙ୍କ ମୂଲ୍ୟବୋଧକୁ ପାଥେୟ କରି ସୁସ୍ଥ ଓ ସୁନ୍ଦର ଭାବରେ ବଞ୍ଚନ୍ତୁ ।



# ସାହିତ୍ୟ ସାଧକ କୃଷ୍ଣଚରଣ : ଏକ ଦୃଷ୍ଟିପାତ

**ଶରତ ଚନ୍ଦ୍ର ପ୍ରଧାନ**

ସମକାଳୀନ ଓଡ଼ିଆ ସାହିତ୍ୟରେ ଡକ୍ଟର କୃଷ୍ଣଚରଣ ବେହେରା ଏକ ସ୍ମରଣୀୟ ନାମ । ତାଙ୍କର ସାରସ୍ୱତ ସାଧନା ବହୁମୁଖୀ । ସେ ରେଭେନ୍ସା କଲେଜରୁ ସ୍ନାତକ ହେଲାପରେ ଶାନ୍ତିନିକେତନରେ ଓଡ଼ିଆ ଭାଷା ଓ ସାହିତ୍ୟରେ ସ୍ନାତକୋତ୍ତର ଶିକ୍ଷା ପାଇଥିଲେ । ତାଙ୍କର ସାରସ୍ୱତ ଚେତନାର ପରିପ୍ରକାଶ ଶାନ୍ତିନିକେତନ ଅଧ୍ୟୟନ କାଳରେ ପରିପୁଷ୍ଟି ଲଭିଥିଲା । ପ୍ରାଥମିକ ପର୍ଯ୍ୟାୟରେ ସେ କବିତା ଲେଖା ପ୍ରତି ମନୋନିବେଶ କରିଥିଲେ । ସେତେବେଳେ ତାଙ୍କୁ ସୃଷ୍ଟିଛଡ଼ା ଗୋଠଫିଟା ବୋଲି ବିବେଚିତ କରାଯାଉଥିଲା । କୃଷ୍ଣଚରଣଙ୍କ ଛଦ୍ମନାମ ଥିଲା ସୃଷ୍ଟିଛଡ଼ା ।

ଶ୍ରୀ ବେହେରାଙ୍କ ସାରସ୍ୱତ ସାଧନା ଆରମ୍ଭ ହୋଇଥିଲା କବିତା ଲେଖାରୁ । ନୂଆ କିଛି କରିବାରେ ତାଙ୍କର ଝୁଙ୍କ ଥିଲା ଅଧିକ । ସେ ନିଜେ ଲେଖିଛନ୍ତି :

"ସୃଷ୍ଟିଛଡ଼ା ମୁଁ
ଜଗତ ସହିତେ ଅମେଳ ଅମିଶା, ପୂରାପୂରି ଖାପଛଡ଼ା
ଏକମାତ୍ର ମୁହିଁ ହେବିନି କା ସାଥେ
କାହା ପଛେ କାହିଁ ହେବିନି ସମାଜେ ଛିଡ଼ା ।
କାଳୀ ଗାଈ ପରି ଭିନ୍ନ ମୋହର ଗୋଠ
ଚଲାପଥ ଛାଡ଼ି ଜଗତରେ ମୁହିଁ ଫିଟାଇବି ଆରେ
ଫିଟାଇବି ନୂଆ ବାଟ ।"

ଏହା ଥିଲା ସେଦିନ ତରୁଣ କବି କୃଷ୍ଣଚରଣଙ୍କ ଶପଥ ।

ତେବେ ପ୍ରାଥମିକ ପର୍ଯ୍ୟାୟରେ କୃଷ୍ଣଚରଣ ମାର୍କସବାଦୀ ଚେତନାନିଷ୍ଠ କବିତା ଲେଖୁଥିଲେ । ବିଂଶ ଶତକର ଷଷ୍ଠ ଦଶନ୍ଧିବେଳକୁ ବଙ୍ଗଳା ଓ ଓଡ଼ିଶାରେ ସାମ୍ୟବାଦୀ କାବ୍ୟଧାରାର ଝଡ଼ ଥମି ନଥିଲା । ସ୍ୱଭାବେ ପଶ୍ଚିମ ବଙ୍ଗଳା ଥିଲା ସାମ୍ୟବାଦର

ଚାରଣଭୂମି । ଏଣୁ ଶ୍ରୀ ବେହେରା ମନୋଭୂମିରେ ମାର୍କ୍ସବାଦୀ ଚେତନା ଦାନା ବାନ୍ଧିବା ସ୍ୱାଭାବିକ ଥିଲା । କୃଷ୍ଣଚରଣ ସ୍ୱୟଂ ନିଜର ଉପରେ ସାମ୍ୟବାଦୀ ଚେତନାର ପ୍ରଭାବ ସଂପର୍କରେ କହନ୍ତି- "କଲିକତାରୁ ସେତେବେଳେ ମାର୍କ୍ସବାଦୀ ସାହିତ୍ୟର ସ୍ରୋତ ଶାନ୍ତିନିକେତନ ଆଡ଼କୁ ପ୍ରବାହିତ ହେଉଥାଏ । ଇଂରାଜୀ ଅନୁବାଦରେ ରୁଷୀୟ ତଥା ପୃଥିବୀର ଅନ୍ୟାନ୍ୟ ଦେଶର ପ୍ରଗତିବାଦୀ କାବ୍ୟକବିତା, ଗଳ୍ପ ଉପନ୍ୟାସ, ନାଟକ ପ୍ରବନ୍ଧାଦିର ଗ୍ରନ୍ଥ ଓ ପତ୍ରପତ୍ରିକା ପଢ଼ିବା ପାଇଁ ଭଲ ଲାଗୁଥାଏ । ଏହା ସବୁ ପଢ଼ିବା ସଙ୍ଗେ ସଙ୍ଗେ ବୋଲପୁର ଓ କଲିକତାର ଅନେକ କମ୍ୟୁନିଷ୍ଟକର୍ମୀ ଓ ନେତାଙ୍କ ସହ ସଂପର୍କ ରଖିଥଲି । ଶାନ୍ତିନିକେତନରେ ମୁଁ ଏକ ପ୍ରକାର କମ୍ୟୁନିଷ୍ଟ ପାଲଟି ଯାଇଥିଲି ।" ଏଥିରେ ପ୍ରତିପାଦିତ ହୁଏ ଯେ ଶ୍ରୀ ବେହେରା ମୂଳରୁ ପ୍ରଗତିବାଦୀ ଚେତନାନିଷ୍ଠ ଏକ କବି ।

କୃଷ୍ଣଚରଣ ସତତ ଅନୁଭବ କରନ୍ତି ଜୀବନ ସତ୍ୟ କିନ୍ତୁ କବିତା ମିଥ୍ୟା ନୁହେଁ । ତାହା ଜୀବନ ପରି ଆଉ ଏକ ସଙ୍ଗ । କବିମାତ୍ରେ କବିତା ଲେଖିଲାବେଳେ ଏହା ଅନୁଭବ କରିଥାଏ, ଏଣୁ ବେହେରା ବି କହୁଥିଲେ- "ମହାମାନବିକତାର ଆଲୋକ ସନ୍ତାନ- ନାମ ତା'ର କରିବି ସାର୍ଥକ" ରୂପେ ନିଜକୁ ପ୍ରତିପାଦନ କରିବାକୁ ସଚେଷ୍ଟ ଥିଲେ । ଫଳରେ ସେ ସାମ୍ୟବାଦୀ ଚିନ୍ତାଧାରାକୁ ନିଜର କାବ୍ୟକବିତାର ଆଧାର ରୂପେ ଗ୍ରହଣ କରିଥିଲେ । ଏହାର ଫଳଶ୍ରୁତି ସ୍ୱରୂପ 'ବିଦ୍ରୋହୀ', 'ଆଲୋକ ସନ୍ଧାନ', 'ନପୁଂସକ ତୀର୍ଥର ବାଲାଡ୍' ପରି କବିତାମାନ ଲେଖିଥିଲେ । ତାଙ୍କର 'ଏଇ ଝିଅଟିକି ଜାଣ କି', '୫୪ ଭାନୁବାଈର ଲେନ' ତୁଲ୍ୟ କବିତାରେ ମାନବୀୟ ମୂଲ୍ୟବୋଧର ସୁନ୍ଦର ପରିପ୍ରକାଶ ଘଟିଛି । 'ଏଇ ଝିଅଟିକି ଜାଣ କି ?' ପରି କବିତାରେ ନିମ୍ନବର୍ଗ ପ୍ରତି କବିଙ୍କର ସମ୍ବେଦନଶୀଳତା ଏବଂ '୫୪ ଭାନୁବାଈର ଲେନ'ରେ ବେଶ୍ୟାପଡ଼ାର ନିଛକ ଚିତ୍ର ରହିଛି । ଅବହେଳିତା ଭାନୁବାଈମାନେ ୫୪, ଭାନୁବାଇ ଲେନରେ କବିଙ୍କ ବାର୍ତ୍ତା ହେଲା- "ସେ ଶପଥ / ନିପୀଡ଼ିତ ନାରୀ ଜାତିର / ସନ୍ନଦ୍ଧ ଶପଥ / ସେ ବିପ୍ଳବ / ମୁକ୍ତିକାମୀ ସମାଜର ଆଗ୍ନେୟ ବିପ୍ଳବ ।" କିନ୍ତୁ କବିଙ୍କର ଏଇ ସାମ୍ୟବାଦୀ ଦୃଷ୍ଟିଭଙ୍ଗୀ ଅଧିକ ଦିନ ରହିଲା ନାହିଁ । ତାହା 'ଚା' କପ୍‌ରେ ଝଡ଼' ଉଠାଇଲା ଅଥଚ ଦୀର୍ଘକାଳ ତିଷ୍ଠି ନ ରହି ଭସାବଉଦ ପରି ଭଭେଇ ଗଲା । ସେ ପଦ୍ୟ ଚତ୍ୱର ଛାଡ଼ି ଗଦ୍ୟ ଜଗତରେ ପାଦ ଦେଲେ ।

କୃଷ୍ଣଚରଣଙ୍କ ଗଦ୍ୟ ଚତ୍ୱର ବହୁବର୍ଣ୍ଣା । ଏହି ଗଳ୍ପର ଗହଗହ ସ୍ୱନ, ଶିଶୁ

ସାହିତ୍ୟର ଦରୋଟି କଥା, ପ୍ରବନ୍ଧ, ରମ୍ୟରଚନାର ବୁଦ୍ଧିଦୀପ୍ତ ମନନଧର୍ମୀ ହାସ୍ୟ ପରିହାସ, ସାହିତ୍ୟ ଆଲୋଚନାର ମଧୁର ଜଗତ ଏବଂ ସଂକଳନ ସଂପାଦନର ପାଠୋଇ ଦୃଷ୍ଟି ଦିଶିଯାଏ । ବସ୍ତୁତଃ ଶ୍ରୀ ବେହେରାଙ୍କ ସାରସ୍ୱତ ସାଧନା ବହୁମୁଖୀ ।

ଲେଖକଙ୍କ ଗଳ୍ପରେ ସମ୍ବେଦନଶୀଳତା, ଅବହେଳିତ ବର୍ଗ ପ୍ରତି ଦରଦୀ ଦୃଷ୍ଟି ଏବଂ ସର୍ବୋପରି କାବ୍ୟଧର୍ମୀ ଆଭିମୁଖ୍ୟ ଲକ୍ଷିତ ହୁଏ । ଲେଖକ ବହୁ ସମୟରେ ଏକ ମୁକ୍ତ ସମାଜ ଓ ସର୍ବୋପରି ଜୀବୀଧର୍ମୀ ଜୀବନୀ ଛବି ଆଙ୍କିଛନ୍ତି । ପୁଣି ଲେଖକ ନିଜକୁ ଦଳିତ ଗୋଷ୍ଠୀର ଅନ୍ୟତମ ପ୍ରତିଭୂ ବୋଲି ବିଚାର କରିବାକୁ ଭୁଲି ନାହାନ୍ତି । ବେଳେବେଳେ ଲେଖକଙ୍କ ଲେଖା ଆପଣା ଢ଼ୋଲ ଆପେ ପିଟିବାକୁ କୁଣ୍ଠାବୋଧ କରେ । ଏସବୁ ସତ୍ତ୍ୱେ ଶ୍ରୀ ବେହେରାଙ୍କ ଗଳ୍ପର ଭାଗବତ ବୈଚିତ୍ର୍ୟ ଓ ଲିଖନ କଳାର ପରୀକ୍ଷା ନିରୀକ୍ଷା ବେଶ୍ ହୃଦୟଗ୍ରାହୀ । ଏ ଦୃଷ୍ଟିରୁ 'ମଇଳାକୁଣ୍ଡ', 'ସନ୍ନ୍ୟାସୀର ସଂସାର', 'ରଥ, ରଥୀ ଓ ରଥକାର', 'ଐତରେୟ' ଏବଂ 'ଜୀବୀଧର୍ମୀଭିତ୍ତିକ ବହୁଚର୍ଚ୍ଚିତ 'ବେଦୀ' ଗଳ୍ପକୁ ନିଆଯାଇପାରେ ।

କୃଷ୍ଣଚରଣଙ୍କ ଗଦ୍ୟଜଗତ ପରିକ୍ରମା କଲାବେଳେ ବଡ଼ ନିଆରା ଲାଗନ୍ତି ସେ । ତାଙ୍କର 'ଅଧ୍ୟାପକର ବେଦନା', 'ମିଷ୍ଟର ଉଡ୍‌ହାଉସଙ୍କ ଓଡ଼ିଶା ଆବିଷ୍କାର' ପରି ରଚନାକୁ ତାର ଦୃଷ୍ଟାନ୍ତ ଭାବେ ନିଆଯାଇପାରେ । ପୂର୍ବରୁ ସୂଚିତ ହୋଇଛି ଡକ୍ଟର ବେହେରା ବୃତ୍ତିରେ ଅଧ୍ୟାପକ । ତାଙ୍କ ଆଲୋଚନାରେ କଥାସାହିତ୍ୟ ଓ ନାଟ୍ୟସାହିତ୍ୟ ସାହିତ୍ୟର ଅନ୍ୟାନ୍ୟ ବିଭାଗ ତୁଳନାରେ ଅଧିକ ଆଲୋଚିତ । ସେ ଓଡ଼ିଆ ଉପନ୍ୟାସ, ଗଳ୍ପ ଉପନ୍ୟାସ, କଥାସାହିତ୍ୟ, ନାଟ୍ୟସାହିତ୍ୟ ପରିଚୟ ପ୍ରସଙ୍ଗ-ନାଟକ, ଏକାଙ୍କିକା, ଏକବିଂଶ ଶତାବ୍ଦୀର ଓଡ଼ିଆ ସାହିତ୍ୟ ଓ ପ୍ରଗତି ସାହିତ୍ୟ ଆଦି ସମୀକ୍ଷାଧର୍ମୀ ରଚନାମାନ ଲେଖିଛନ୍ତି । ସେ ପାଠ୍ୟ ଚାହିଦା ଦେଖି କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ, ବୈଦେହୀଶ ବିଳାସ, କବିସୂର୍ଯ୍ୟ ଗ୍ରନ୍ଥାବଳୀ, ଗୋପାଳକୃଷ୍ଣ ରଚନାବଳୀ ଆଦି ସଂକଳନମାନ ପ୍ରକାଶ କରିଛନ୍ତି । ସ୍ଥାନୀୟ ଚାହିଦା ମୁତାବକ କବି ଶେଖର ଚିନ୍ତାମଣି, ମୋଗଲ ତାମସା ବି ତାଙ୍କ ଦ୍ୱାରା ଆକଳିତ ଓ ସଂକଳିତ ହୁଏ । ସେ ଗବେଷଣା କଲାବେଳେ ଋଜୁଧର୍ମିତା ଉପରେ ଦୃଷ୍ଟି ଦିଅନ୍ତି । ଲେଖକଙ୍କ ଦୃଷ୍ଟିରେ ସମୀକ୍ଷକ ବେହେରାଙ୍କ ଆଖିରେ ସମାଲୋଚକର ଭୂମିକା ଯମରାଜାଙ୍କ ଭୂମିକା କରି । ତାଙ୍କ ଭାଷାରେ କହିଲେ- "ସାହିତ୍ୟର ଯେକୌଣସି ବିଭାଗର ସମୀକ୍ଷା କରନ୍ତି ନା କାହିଁକି, ସମାଲୋଚକ ପ୍ରକୃତରେ ଯମ ସଦୃଶ । ସାହିତ୍ୟ କ୍ଷେତ୍ରରୁ ଆବର୍ଜନା ବା ପଙ୍କିଳତା

ଅନ୍ତ କରୁଥିବାରୁ ସେ କୃତାନ୍ତ, ସାରସ୍ୱତ ମାନଦଣ୍ଡ ହସ୍ତରେ ଧାରଣ କରିଥିବାରୁ ସେ ଦଣ୍ଡଧର । ସାହିତ୍ୟରେ ଶମ ବା ସଂଯମ ସ୍ଥିରତା ଆଦି ଆନୟନ କରୁଥିବା ହେତୁ 'ଶମନ' । ସର୍ବୋପରି ସକଳ ପ୍ରକାର ସାଂସ୍କୃତିକ ଧର୍ମରେ ଭୂଷିତ ହୋଇ ସଂସାରରେ ଅଧିକ ପୁଣ୍ୟ ଲାଭ କରୁଥିବା ହେତୁ ସେ ଧର୍ମରାଜ । ଏତାଦୃଶ ତରାଜୁରେ ସାହିତ୍ୟ ସମାଲୋଚନାର ମୂଲ୍ୟାୟନରେ ବିଶ୍ୱାସ ରଖିବାକୁ ଶ୍ରୀ ବେହେରା ଆହ୍ୱାନ ଦେଇଛନ୍ତି ।

ଏ ରୂପେ ବିଚାର କଲେ ଡକ୍ଟର କୃଷ୍ଣଚରଣ ବେହେରାଙ୍କ ସାରସ୍ୱତ ଦିଗନ୍ତ ବେଶ ବିଚିତ୍ରବର୍ଣ୍ଣା । ସେ ତ ଦେଖିବାକୁ ନିପଣ୍ଡ କୃଷ୍ଣବର୍ଣ୍ଣ । ସେ ସାହିତ୍ୟକୁ ନୂଆ ଢଙ୍ଗରେ ଦେଖିବାକୁ ଚାହୁଁଥିଲେ । ଆଷାଢ଼ର କହାହାଣ୍ଡିଆ ମେଘ ଯେପରି ପୃଥ୍ୱୀରେ ନୂଆ ସମ୍ଭାବନା ସୃଷ୍ଟି କରେ । ତାଙ୍କ ପ୍ରତିଷ୍ଠିତ ଗବେଷଣା ପରିଷଦ ସାହିତ୍ୟ ଆଲୋଚନା କ୍ଷେତ୍ରରେ ତତ୍ତ୍ୱମୁଖୀ ଦୃଷ୍ଟି ସହ ସମାଲୋଚନା କ୍ଷେତ୍ରରେ ନୂଆ ରାହା ଦେଖାଇବ ବୋଲି ଆଶା ଓ ବିଶ୍ୱାସ ରଖି କାମ କରି ଚାଲିଥିଲେ । ଡକ୍ଟର ବେହେରା ପଠନ ଓ ପାଠନ କ୍ଷେତ୍ରରେ ବେଶ ସୁଠାମ ମନେହୁଅନ୍ତି । ତାଙ୍କ ସହ ରେଭେନ୍ସା ମହାବିଦ୍ୟାଳୟରେ କାମ କଲାବେଳେ ତାଙ୍କର ଚେତନାର କଳାଘୁମର ରୂପ ଦେଖିଛି । ସେ ବର୍ଷଣମୁଖୀ ଘନକୃଷ୍ଣ ମେଘଖଣ୍ଡ ପରି ବେଶ ସୃଜନରତ ଥିଲେ । ଦୀର୍ଘକାଳ ଧରି ସାହିତ୍ୟର ସେବା ଓ ସଂଗଠନରେ ନିଜକୁ ବିନିଯୋଗ କରିଯାଇଛନ୍ତି । ଚାଲନ୍ତୁ, ଏହି ସାରସ୍ୱତ ସାଧକଙ୍କ  ଅବର୍ତ୍ତମାନରେ ଆମେ ସବୁ ଭୂମାପୁରୁଷଙ୍କ ପାଖରେ ପ୍ରାର୍ଥନା କରିବା ଯେ ତାଙ୍କର ଆତ୍ମାର ସଦ୍‌ଗତି ହେଉ ଓ ତାଙ୍କର ପିତୃଦତ୍ତ ନାମର ସାର୍ଥକତା ସଂପାଦିତ ହେଉ ।



ଯୋବ୍ରା, ମଝିସାହି, କଟକ-୩

# ଜଣେ ମୁଗ୍ଧ ସହଯାତ୍ରୀର ସ୍ୱପ୍ନ

## ହେମନ୍ତ କୁମାର ଦାସ

ମୁଁ ତାଙ୍କୁ ପୂର୍ବରୁ ଜାଣିଥିଲି ଦୁଇଟି କାରଣରୁ । ପ୍ରଥମ କାରଣଟି ହେଲା- ମୁଁ ଅଧ୍ୟାପକ ହେବାପରେ ଘରୋଇ ଭାବେ ଓଡ଼ିଆରେ ଏମ୍.ଏ. ପରୀକ୍ଷା ଦେବା ସମୟରେ ଗଳ୍ପ ସାହିତ୍ୟକୁ ନେଇ ରଚିତ ତାଙ୍କର ଆଲୋଚନା ପୁସ୍ତକ କିମ୍ବା ସାହିତ୍ୟ ପଢ଼ିଥିବା କାରଣରୁ । ସେ ସମୟରେ ଏହାହିଁ ଥିଲା ଓଡ଼ିଆରେ ଏ ସଂପର୍କୀୟ ଏକମାତ୍ର ପୁସ୍ତକ । ଦ୍ୱିତୀୟ କାରଣଟି ହେଲା, ସେ ସମୟରେ ରେଭେନ୍ସା କଲେଜର ଅଧ୍ୟାପକ ବିଶ୍ରାମ କକ୍ଷରେ ତାଙ୍କର କୌଣସି ରଚନାକୁ ନେଇ ହୋଇଥିବା ଉତ୍ତପ୍ତ ଆଲୋଚନା ହେତୁରୁ । ସେତେବେଳେ ସେ ଘରୋଇ ମହାବିଦ୍ୟାଳୟ ଭଦ୍ରକରେ ଅଧ୍ୟାପନା କରୁଥିବାର ଶୁଣିଥିଲି ।

ତା'ପରେ ୧୯୭୩-୭୪ର ଏକ ଶୀତାର୍ତ୍ତ ସନ୍ଧ୍ୟାରେ ବ୍ରହ୍ମପୁର ରାଜରାସ୍ତାରେ ତାଙ୍କ ସହ ଚାକ୍ଷୁଷ ଦେଖାହେଲା । ସେତେବେଳକୁ ଭଦ୍ରକ କଲେଜ ସରକାରୀ ହୋଇ ସାରିଥାଏ ଏବଂ ସେ ସମ୍ଭବତଃ ବାରିପଦା ବଦଳି ହୋଇ ବ୍ରହ୍ମପୁରରେ ଅଧ୍ୟାପନା କରୁଥିବା ତାଙ୍କର ପ୍ରିୟଛାତ୍ର ସ୍ୱର୍ଗତଃ କ୍ଷେତ୍ରବାସୀ ନାୟକଙ୍କ ପାଖକୁ ଆସିଥାଆନ୍ତି । ଇତିମଧ୍ୟରେ ଚାରୋଟି ଦଶନ୍ଧିରୁ ଊର୍ଦ୍ଧ୍ୱ ସମୟ ଅତିକ୍ରାନ୍ତ ହୋଇଗଲାଣି । ଅବସର ଗ୍ରହଣ ପରେ ସେ କଟକର ସ୍ଥାୟୀ ବାସିନ୍ଦା ହେଲେ । ମୁଁ ତ କଲେଜରେ ପଢ଼ିବା ଦିନର ଏଠାରେ ରହି ଆସୁଛି । ବାଟ ଚାଲୁ ଚାଲୁ ବେଳେବେଳେ ପାଖେଇ ଆସି ଏକାଠି କିଛିବାଟ ଚାଲିଛି । ପୁଣି ଦୂରେଇ ଯାଇଛି । ବୟସ ବି ବଢ଼ୁଛି- ସଂପର୍କ ଅତୁଟ ରହିଛି । କିଏ ଜଣେ କହିଥିଲେ ପରା- Age is a concept relation goes far beyond it

ତାଙ୍କୁ ଯେତିକି ପାଖରୁ ଦେଖିଛି, ତାଙ୍କୁ ଜଣେ କମ୍ କାମର ମଣିଷ ବୋଲି ବିଶ୍ୱାସ କରିଛି । ବାକ୍ୟ ସର୍ବସ୍ୱ ପ୍ରଗତିର ଫମ୍ପା କଥାର ଗର୍ଜନ ଅପେକ୍ଷା ସ୍ୱେଦରକ୍ତ

ବିଜଡ଼ିତ କାୟିକ ଶ୍ରମ ନିର୍ଭର ବିକାଶ ଉପରେ ତାଙ୍କର ଅତୁଟ ବିଶ୍ୱାସ । ଆତ୍ମପ୍ରଚାର, ବିମୁଖ ନିଜ ବାଟରେ ତଳକୁ ଅନାଇ ଚାଲୁଥିବା ଏଇ ସାନମାପର ମଣିଷଟିଠାରେ ଯେଉଁ ଅପୂର୍ବ ସାଙ୍ଗଠନିକ ଦକ୍ଷତା ରହିଛି, ତାକୁ ସେ ସଂପୂର୍ଣ୍ଣ ରୂପେ ଲଗାଇ ଦେଇଛନ୍ତି ଭାଷା ସାହିତ୍ୟର ଉନ୍ନତି କାମରେ । ନିଜ ହାତରେ କ୍ଷମତାକୁ ଜାବୁଡ଼ି ନ ଧରି ଏକ ଦ୍ୱିତୀୟ ପିଢ଼ିର କର୍ମୀ ଗୋଷ୍ଠୀ ପ୍ରସ୍ତୁତ କରିବା ହେଉଛି ତାଙ୍କ କର୍ମ ଯୋଜନାର ଅନ୍ୟତମ ସଫଳତା । ଅତୀତ ଗର୍ଭରୁ ଲୁଚାଇ ପୁନରୁଦ୍ଧାର ଏବଂ ସେ ସବୁର ପ୍ରଚାର ହେଉଛି ଏହାଙ୍କର ଅନ୍ୟତମ କୃତିତ୍ୱ । ଯେଉଁ ରହସ୍ୟପୂର୍ଣ୍ଣ ଭାଷାର ଏବଂ ରୋମାଞ୍ଚକର ସ୍ଥିତିରେ ସେ ବଂଶୀବଲ୍ଲଭ ଗୋସ୍ୱାମୀଙ୍କ 'ମୋଗଲ ତାମସା'ର ଉଦ୍ଧାର କରି ପ୍ରକାଶ କରିଛନ୍ତି । ତାହା ତ କୌଣସି ଗୋଟିଏ କାହାଣୀଠାରୁ କମ୍ ଉତ୍କଣ୍ଠାପୂର୍ଣ୍ଣ ନୁହେଁ । ସବୁଠାରୁ ବଡ଼କଥା, ନିଜର ସ୍ୱଧର୍ମ ଅଧ୍ୟାପନା ବୃତ୍ତିରେ ନୀତିନିଷ୍ଠ ଭାବରେ ଏକାଗ୍ର ରହି ସେ ଯେପରି ଘଣ୍ଟା ଘଣ୍ଟା କରି ଜ୍ଞାନ ବିତରଣ କରୁଥାଆନ୍ତି, ସେତେବେଳେ ତାଙ୍କୁ ପୁରାଣ ଯୁଗର ତପୋବନ ସଂସ୍କୃତିର ଜଣେ ଧ୍ୟାନମଗ୍ନ ଋଷି ବ୍ୟତୀତ ଅନ୍ୟ କାହା ସହିତ ତୁଳନା କରିବାକୁ ମନ ହୁଏ ନାହିଁ । ଏ ସଂପର୍କରେ ମୋର ବ୍ୟକ୍ତିଗତ ଅନୁଭବ ବି ରହିଛି । ୧୯୭୫ ମସିହାରେ ମୋର କଟକ ପରିବର୍ତ୍ତନ ହେଲା ପରେ ଗବେଷଣା କାର୍ଯ୍ୟରେ ମୁଁ ବାରମ୍ବାର ତାଙ୍କ ଘରକୁ ଯାଉଥାଏ । କଟକରେ ସେ ସମୟରେ ମୋ ବିଷୟରେ ସନ୍ଦେହ ଦୂର କରିବାକୁ ଆଉ କେହି ନ ଥାଆନ୍ତି । ତାଙ୍କର ବସାଘରର ଡ୍ରଇଁରୁମରେ ବସି ଘଣ୍ଟା ଘଣ୍ଟା ଧରି ମୁଁ ତାଙ୍କ ସହିତ ଆଲୋଚନା କରୁଥାଏ । କହିବା ବାହୁଲ୍ୟ ଜ୍ଞାନର ଦିଗନ୍ତରେ ବହୁ ଅନୁଦ୍‌ଘାଟିତ ରହସ୍ୟକୁ ସେ ପରସ୍ତ ପରସ୍ତ କରି ଖୋଲି ଦେଉଥାଆନ୍ତି । ନିଜ ସଂଗ୍ରହକୁ ଅନେକ ଦୁର୍ମୂଲ୍ୟ ପ୍ରାଚୀନ ପୁସ୍ତକ ଆଣି ମୋର ଥୋଇ ଦେଇ ତହିଁରୁ ନୋଟ ନେବାକୁ ମୋତେ କହୁଥାଆନ୍ତି । ସଂସାରର ଦାବି ସେତେବେଳେ ଗୌଣ ହୋଇଯାଉଥାଏ । ସମୟର ସଙ୍କେତକୁ ଫୁତ୍କାରରେ ଉଡ଼ାଇ ଦେଇ ଜ୍ଞାନଚର୍ଚ୍ଚା ଚାଲିଥାଏ । ଆଜି ସେ ସବୁ ସୁଖଦ ସ୍ମୃତିର ଉପାଦାନ ମାତ୍ର ହୋଇ ରହିଛି ।

ସେଦିନ ଶ୍ରୀରାମଚନ୍ଦ୍ର ଭବନରେ ତାଙ୍କଠାରୁ କ୍ଷେତ୍ରବାସୀ ସାହିତ୍ୟ ବିଦ୍ୟା ପୁରସ୍କାର ଗ୍ରହଣ କଲାବେଳେ ଲକ୍ଷ୍ୟ କରିଛି, କର୍ମ ପ୍ରବଣତା ପୂର୍ବଭଳି ରହିଛି । ମାତ୍ର ନିଷ୍ଠୁର ଜରା, କର୍ମଶକ୍ତିଟିକୁ ମାତ୍ର ଅପହରଣ କରି ନେଉଛି । ଜ୍ଞାନ-ବିମୁଖ-ସହାୟକ ପୁସ୍ତିକାର ନିର୍ଭର ପରୀକ୍ଷା ବୈତରଣୀ ଉତ୍ତୀର୍ଣ୍ଣ ତତ୍ପର ବର୍ତ୍ତମାନ ପିଢ଼ି ପାଇଁ

ଏହିଭଳି ଜଣେ ଜ୍ଞାନତପସ୍ୱୀ ଗୁରୁଙ୍କର ଯେ କେତେ ଆବଶ୍ୟକତା ରହିଛି ତାହା ସେଇ ମୁହୂର୍ତ୍ତରେ ଅନୁଭବ କରିଛି ।

କହିବାକୁ ମନ ହୋଇଛି, ସାର ଯେଉଁ ଆତ୍ମବିଶ୍ୱାସ ଏବଂ ସ୍ୱାଭିମାନ ନେଇ ଆପଣଙ୍କର ଯାତ୍ରା ଆରମ୍ଭ ହୋଇଥିଲା, ତାହା କ'ଣ ଆଉ ଫେରି ଆସିବ ନାହିଁ ? ଜିଜ୍ଞାସୁ ଛାତ୍ରମଣ୍ଡଳୀର ମଧ୍ୟ ମଣି ହୋଇ ଆପଣ କ'ଣ ସେମାନଙ୍କୁ ସାହିତ୍ୟର ଦୁର୍ଗମ ପଥରେ ଯାତ୍ରା କରିବା ନିମନ୍ତେ ପ୍ରେରିତ କରିବେ ନାହିଁ । ଅପୂର୍ବ ସାଙ୍ଗଠନିକ ଦକ୍ଷତା ପ୍ରଦର୍ଶନ କରି ଆହୁରି ଅନେକ 'ଏଷଣା'ର ସୃଷ୍ଟି ସମ୍ଭାବନାକୁ ତ୍ୱରାନ୍ୱିତ କରିବେ ନାହିଁ ? ମାନସିକ ଶକ୍ତି ଶରୀରର ଦୃଢ଼ତା ହୋଇ ଆପଣଙ୍କୁ ପୂର୍ବଭଳି କର୍ମଚଞ୍ଚଳ କରିବ ନାହିଁ ? ଭାଷା ଓ ସାହିତ୍ୟର ଜଣେ ଅନୁରାଗୀ ସେବକ ଭାବରେ ଏତିକି ମାତ୍ର ଆପଣଙ୍କଠାରୁ କାମନା ।



(ଏପ୍ରିଲ୍-ଜୁନ୍ 'ଜନସୁଧା' ସାହିତ୍ୟପତ୍ର ପାଇଁ
କୃଷ୍ଣଚରଣ ବେହେରାଙ୍କ ଉପରେ ହେମନ୍ତ ସାର୍‌ଙ୍କ ଠୁଁ ହସ୍ତଗତ ପାଣ୍ଡୁଲିପି)

# ଜ୍ଞାନତପସ୍ୱୀ କୃଷ୍ଣଚରଣ

## ବୈଷ୍ଣବ ଚରଣ ସାମଲ

ହୁଏତ ଜଣେ ପଶୁ ଇତ୍ୟାଦିଙ୍କୁ ଜାଣି ଯାଇପାରେ, ମାତ୍ର ମଣିଷକୁ ଜାଣିବା ଏତେ ସହଜ ନୁହେଁ । ଜର୍ମାନ ଦାର୍ଶନିକ ଫାଇଲେମୋନ ତ ଏଥିପାଇଁ କହିଥିଲେ ଯେ ମଣିଷ ଦୁଇ ଗୋଡ଼ରେ ସିଧା ହୋଇ ଚାଲୁଥିଲେ ମଧ ସେ ଦୁର୍ଦ୍ଦାନ୍ତ ପଶୁଠାରୁ ଆହୁରୀ ଭୟଙ୍କର । ତେବେ ମଣିଷ ଭୟଙ୍କର ବୋଲି କ'ଣ ମଣିଷଙ୍କୁ ମାନିବା ନାହିଁ ? ସବୁ ମଣିଷ ତ ସମାନ ନୁହଁନ୍ତି; ସେଥିରେ ପୁଣି ଜଣେ ଜଣେ ଏପରି ମଣିଷ ଥାଆନ୍ତି ଯେଉଁମାନଙ୍କର ଜ୍ଞାନ, ହୃଦୟବତ୍ତା ଓ ମଣିଷପଣିଆ ଜାତିକୁ, ଦେଶକୁ ଓ ସମଗ୍ର ବିଶ୍ୱକୁ ମାର୍ଗ ଦେଖାଇଥାଏ । ବୈଦିକ ଯୁଗରୁ ଆରମ୍ଭ କରି ଏଯାବତ୍ ପୃଥିବୀ କେତେ କେତେ ବଦଳିଗଲାଣି । ସେଥିରେ ମଣିଷମାନେ ବି ବଦଳୁଛନ୍ତି । ତାହାରି ଭିତରେ ଯେଉଁମାନେ ମାଟି, ମଣିଷ ଓ ସଂସ୍କୃତିକୁ ଭଲପାଉଥାନ୍ତି ସେମାନେ କିନ୍ତୁ ଅବିଚଳିତ ଥାଆନ୍ତି ଓ ଜାତିର ସଙ୍କଟ ସମୟରେ ନିଜର ବିବେକାନୁମୋଦିତ ମାର୍ଗଟିକୁ ବାଛିନିଅନ୍ତି । ସେଇ ମାର୍ଗରେ ସେମାନେ ଜାତିକୁ ପ୍ରେରଣା ଦିଅନ୍ତି; ଉତ୍ପ୍ରେରଣା ମଧ ଦିଅନ୍ତି । ଏଇମିତି ଜଣେ ମଣିଷ ପରି ମଣିଷ ଡକ୍ଟର କୃଷ୍ଣଚରଣ ବେହେରା । ଅହଂକାର ନାହିଁ, ଅଭିମାନ ନାହିଁ, ଅଛି ପ୍ରଚଣ୍ଡ ସ୍ୱାଭିମାନ । ସେ ପ୍ରକୃତରେ ଶତ୍ରୁମିତ୍ର ନିର୍ବିଶେଷରେ ସମସ୍ତଙ୍କୁ ଭଲ ପାଉଥିବା ମଣିଷଟିଏ । ଅନେକ ଦୁଃଖ ତାଙ୍କ ଭିତରେ । ପତ୍ନୀ ବିୟୋଗ ହୋଇଗଲା, ଆଉ ଆଇ.ଏଫ୍.ଏସ୍. ପାଇ ଉଚ୍ଚ ପଦବୀ ମଣ୍ଡନ କରିଥିବା ପୁତ୍ର ଶୁଭକାନ୍ତର ମଧ ଅକାଳ ବିୟୋଗ ହୋଇଗଲା । ଏଇ ଦୁଇ ବିପର୍ଯ୍ୟୟ ଓ ମାନସିକ ସଂକଟ କାଳରେ ମୁଁ ଯାଇଛି ତାଙ୍କ ପାଖକୁ । ଅଥଚ ମୁଁ ଅନୁଭବ କରିଛି ସିଏ ଯେମିତି ଧୈର୍ଯ୍ୟର ଏକ ଅଟଳ ମହାମେଣ୍ଟ । ଲୁହ ନାହିଁ, ଅଛି ସେଇମିତି ମୁହଁରେ ସ୍ମିତ । ଯେମିତି କିଛି ହୋଇ ନାହିଁ । ମୋର ମନେହୁଏ ସତେ କ'ଣ ସେ ଗୀତାର ସାଂଖ୍ୟ ଦର୍ଶନର ମଣିଷଟିଏ କି ?

କୃଷ୍ଣବାବୁ ସଦା ଅବିଚଳିତ । ବିଶ୍ୱଭାରତୀରେ ଅଧ୍ୟୟନ ବେଳେ ସେ କେବଳ ଓଡ଼ିଆ ବିଭାଗର ଶ୍ରେଣୀ କକ୍ଷରେ ଆବଦ୍ଧ ହୋଇ ରହୁ ନଥିଲେ । ଇଂରାଜୀ, ବଙ୍ଗଳା, ହିନ୍ଦୀ, ଦର୍ଶନ ଓ ଅନ୍ୟାନ୍ୟ ବିଭାଗର ଛାତ୍ରଛାତ୍ରୀ ତଥା ଗୁଣୀ-ଜ୍ଞାନୀ ଅଧ୍ୟାପକ/ଅଧ୍ୟାପିକାଙ୍କ ସହିତ ସଂପର୍କ ରଖୁଥିଲେ ଓ ସେମାନଙ୍କଠାରୁ ଜ୍ଞାନ ଆହରଣ କରୁଥିଲେ । ତାଙ୍କର ବୈଶିଷ୍ଟ୍ୟ ସେ କାହାରି ଦ୍ୱାରା ଭାସି ଯାଉନଥିଲେ । ସେ ସେଇଦିନରୁ ଜାଣିଥିଲେ ସିଏ କିଏ ଓ ତାଙ୍କର କର୍ତ୍ତବ୍ୟ କ'ଣ । ତା'ପରେ ସେ ଭଦ୍ରକ କଲେଜରେ ଅଧ୍ୟାପକ ହେଲେ, ସେଇ କଲେଜର ନବ ନିର୍ମାଣରେ ସେ ଏକାତ୍ମ ହୋଇଗଲେ । ସିଏ ପୁଣି ରେଭେନ୍‌ସା କଲେଜକୁ ଆସିଲେ, ବିଭାଗୀୟ ମୁଖ୍ୟ ହେଲେ । ତାଙ୍କର ସମସ୍ତ ଯୋଗ୍ୟତା ଥାଇବି ତାଙ୍କୁ ପ୍ରଫେସର କରାଗଲା ନାହିଁ । ସିଏ ଏମିତି ଗୋଟିଏ ମଣିଷ ଯେ ନିଜ ପାଇଁ କାହାକୁ କହନ୍ତି ନାହିଁ । ଯାହା ହେଲା ସେତିକିରେ ସେ ସନ୍ତୁଷ୍ଟ । ଏଇ ଆତ୍ମସନ୍ତୋଷ ପାଇଁ ସେ ମହାନ୍ । ସେ ଏକାଧାରରେ କର୍ମଯୋଗୀ ଓ ଜ୍ଞାନଯୋଗୀ ।

କୃଷ୍ଣଚରଣ ଭଲ ପାଆନ୍ତି ମାଟିକୁ, ମଣିଷକୁ ଓ ସଂସ୍କୃତିକୁ । ଓଡ଼ିଆ ଭାଷା, ଓଡ଼ିଆର ସଂସ୍କୃତି, ଓଡ଼ିଆ ସାହିତ୍ୟ, ଓଡ଼ିଆର ପ୍ରବୃତ୍ତି ଓ ସର୍ବୋପରି ସାଧାରଣ ମଣିଷଙ୍କ ପ୍ରତି ତାଙ୍କ ପ୍ରାଣ ଓ ହୃଦୟର ଗଭୀର ଆଦର । ଏଥିପାଇଁ ସେ ମଧ ସାରସ୍ୱତ ସାଧକ ହେବା ସହିତ ହୋଇଛନ୍ତି ଜଣେ ସାରସ୍ୱତ ସଂଗଠକ । ପ୍ରତିଷ୍ଠା କରିଛନ୍ତି ଓଡ଼ିଆ ଗବେଷଣା ପରିଷଦ ଓ ପ୍ରକାଶ କରିଛନ୍ତି 'ଏଷଣା' ନାମକ ଏକ ଗବେଷଣାତ୍ମକ ପତ୍ରିକା । ଅବଶ୍ୟ ଏ ଦିଗରେ ତାଙ୍କର ପ୍ରିୟ ଛାତ୍ର ଡକ୍‌ଟର କ୍ଷେତ୍ରବାସୀ ନାୟକ ଓ ଡକ୍‌ଟର ଲାବଣ୍ୟ ନାୟକଙ୍କ ସାହାଯ୍ୟ ଭୁଲିବାର ନୁହେଁ । ଗବେଷଣା ପରିଷଦ ଓ ଏଷଣା ତାଙ୍କର ଆତ୍ମା ଓ ହୃଦୟ । ବିସ୍ମୟ ଲାଗେ ସତରେ କେତେ ଗଭୀର ମମତା ଏଥିପାଇଁ । ଇଏ ତାଙ୍କର ଏକ ତପସ୍ୟା ଓ ସିଏ ସେଇ ତପୋବନର ତପସ୍ୱୀ । ସିଏ ତପସ୍ୱୀ ସତ ମାତ୍ର ତାଙ୍କୁ ଘେରି ରହିଛନ୍ତି କେତେ ତରୁଣ ଗବେଷକ/ଗବେଷିକା । ସମସ୍ତଙ୍କୁ ସେ ମାର୍ଗ ଦେଖାନ୍ତି । ଭାଷା, ସଂସ୍କୃତି ଓ ସାହିତ୍ୟକୁ ଭଲପାଅ ବୋଲି କହନ୍ତି । ମୋତେ ମଧ ସେଇ ପରିଷଦକୁ ଡାକିଛନ୍ତି ପ୍ରବନ୍ଧ ପଢ଼ିବା ପାଇଁ । ମୁଁ ଯାଇଛି । ଦେଖିଛି ସେହି ଆଲୋଚନା ଚକ୍ରର ଗାମ୍ଭୀର୍ଯ୍ୟକୁ, ବିଦ୍ୱାନମାନଙ୍କର ଚର୍ଚ୍ଚାକୁ । ପୁରସ୍କାର ଦେବାର ବ୍ୟବସ୍ଥା କରିଛନ୍ତି, ପ୍ରିୟ ଛାତ୍ର ଓ ଗବେଷକ କ୍ଷେତ୍ରବାସୀ ନାୟକଙ୍କ ନାମରେ 'କ୍ଷେତ୍ରବାସୀ ବିଦ୍ୟା ପୁରସ୍କାର' । ଚିନ୍ତା କରନ୍ତୁ ତ, କେତେ

ଉଦାର ଏଇ ମଣିଷଟି । ତାଙ୍କର ହୃଦୟର ଗଭୀରତାକୁ କ'ଣ ମାପି ହୁଏ ? ସେ ତ ଅନନ୍ତ ଆକାଶଠାରୁ ପ୍ରଶସ୍ତତର, ପ୍ରଶାନ୍ତ ମହାସାଗର ଠାରୁ ଗଭୀରତର । ଇଏ ସମ୍ଭବ ହୋଇଛି କେବଳ ମାଟି, ମଣିଷ, ଭାଷା ଓ ସଂସ୍କୃତିକୁ ଭଲପାଉଥିବାରୁ । ରେଭେନ୍‌ସା କଲେଜରେ ଥରେ ଉପନ୍ୟାସ ସଂପର୍କରେ ସେମିନାର ହେଉଥାଏ । କୃଷ୍ଣବାବୁଙ୍କ ପାଖରେ ମୁଁ ବସିଥାଏ । ମଞ୍ଚରେ ଅଧ୍ୟାପକ ବକ୍ତା ଓ ପ୍ରବନ୍ଧ ପାଠକ କହିଲେ ଯେ ଓଡ଼ିଆ ଭାଷାରେ ଉପନ୍ୟାସ ନାହିଁ । କେତେଜଣ ପ୍ରସିଦ୍ଧ ଔପନ୍ୟାସିକ/ ଔପନ୍ୟାସିକାଙ୍କ ନାଁ ଧରି କହିଲେ ଯେ ଏମାନଙ୍କୁ ଉପନ୍ୟାସ ଲେଖି ଆସେ ନାହିଁ । ସେଦିନ କୃଷ୍ଣବାବୁ ସହିପାରିଲେ ନାହିଁ । ମୋତେ କହିଲେ 'ବୈଷ୍ଣବ ବାବୁ ! ଇଏ କ'ଣ ହେଉଛି ? ଏସବୁ କଥାକୁ ଆମେ ଶୁଣୁଛୁ କିପରି ? ଇଏ କ'ଣ ଭ୍ରାନ୍ତ ଅହମିକା ନୁହେଁ ?' ତା'ପରେ ସିଏ ମଧ ମଞ୍ଚକୁ ଯାଇ ତାଙ୍କ ବକ୍ତବ୍ୟ ଦେଲେ, ମୁଁ ମଧ ମୋ ବକ୍ତବ୍ୟ ଦେଇ ଓଡ଼ିଆ ଉପନ୍ୟାସ ଓ ଔପନ୍ୟାସିକଙ୍କ ପ୍ରତିଭାର ମୂଲ୍ୟାୟନ କଲୁ । ମୁଁ ସେଦିନ ଅନୁଭବ କଲି ତାଙ୍କର ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତି ପ୍ରତି ସ୍ୱାଭିମାନ କେତେ ନିବିଡ଼ ।

କୃଷ୍ଣବାବୁ ଦୀର୍ଘକାଳ ଅଧାପନା କଲେ ମାତ୍ର ବୃତ୍ତି ତାଙ୍କ ପ୍ରବୃତ୍ତିକୁ ଗ୍ରାସ କରିପାରିନାହିଁ । ବିଶ୍ୱଭାରତୀରେ ଅଧ୍ୟୟନ କରୁଥିବା ସମୟରୁ ସେ କବିତା ଲେଖୁଥିଲେ । ସେତେବେଳେ ତାଙ୍କ ଭିତରେ ତୀବ୍ର ପ୍ରତିକ୍ରିୟା ସୃଷ୍ଟି କରୁଥିଲା ସାମାଜିକ ବୈଷମ୍ୟକୁ ନେଇ । ତେଣୁ ସେ ଯେଉଁ କବିତା ଲେଖୁଥିଲେ ସେଥିରେ ମୁଖ୍ୟ ଭାବ ଥିଲା ସାମାଜିକ ବୈଷମ୍ୟ ବିରୋଧରେ ସ୍ୱର ଉତ୍ତୋଳନ । 'ଚା' କପ୍‌ରେ ଝଡ଼', '୫୪ ଭାନୁବାଈ ଲେନ୍‌' ଆଦି କବିତା ପୁସ୍ତକରୁ ତାଙ୍କ 'ସାମାଜିକ' ଅଙ୍ଗୀକାରବଦ୍ଧତାର ପରିଚୟ ମିଳେ । ସେ ମଧ ରଚନା କରିଛନ୍ତି 'ଲଘୁ ପଂଚକ' ଓ 'ପିପାସାର ପ୍ରାର୍ଥନା' । ତାଙ୍କର ଗଳ୍ପ ପୁସ୍ତକ ମଧରେ ସୃଷ୍ଟିର ସ୍ୱପ୍ନ, ଗୋପନ ପତ୍ର, ଉଭା ଓ ପୋତା, ବେଦୀ ଇତ୍ୟାଦି ଗଳ୍ପ, ନାରୀ ଏକ ନଦୀର ନାମ, ଐତରେୟ, ନାରୀମେଧ, ଇତର ଇତରା, ମାଟିମାଗୁଣି, ଆଦିକଳ୍ପ ଇତ୍ୟାଦି ପ୍ରଧାନ । ସର୍ବତ୍ର ସେ ସମାଜର ନିମ୍ନବର୍ଗର ନର ନାରୀଙ୍କୁ ଚରିତ୍ର କରିଦେଇଛନ୍ତି ଓ ସେମାନଙ୍କ ଅଶ୍ଳୀଳ ସମସ୍ୟା ପ୍ରତି ପାଠକମାନଙ୍କ ଦୃଷ୍ଟି ଆକର୍ଷଣ କରିଛନ୍ତି । ଗଳ୍ପରୁ ତାଙ୍କ ସ୍ରଷ୍ଟା-ବ୍ୟକ୍ତିତ୍ୱର ଯଥାର୍ଥ ପରିଚୟ ମିଳେ । ମୁଁ ମଧ ତାଙ୍କ ଗଳ୍ପ-ଜଗତ ଉପରେ ଅତୀତରେ ପ୍ରବନ୍ଧ ଲେଖି ଗଭୀର ଆନନ୍ଦ ପାଇଛି । ଅଧାପକର ବେଦନା, ଚରୁ ଓ ଚରିତ ତାଙ୍କର ରମ୍ୟ

ରଚନା, ପ୍ରଗତି ସାହିତ୍ୟ, କଥା ସାହିତ୍ୟ, ଅଶ୍ଳୀଳତା ବିପକ୍ଷରେ, ଓଡ଼ିଆ ଉପନ୍ୟାସ, କେତୋଟି ସାହିତ୍ୟିକ ଅଭିଭାଷଣ, ଶ୍ରୀଜଗନ୍ନାଥ ଓ ଓଡ଼ିଆ ସାହିତ୍ୟ, ନାଟ୍ୟସାହିତ୍ୟ ପରିଚୟ ଆଦି ତାଙ୍କର ସମାଲୋଚନାତ୍ମକ ପୁସ୍ତକ ଓ ଏସବୁରୁ ତାଙ୍କର ମୌଳିକ ବିଚାର ଦୃଷ୍ଟିର ପରିଚୟ ମିଳିଥାଏ । ସେ ମଧ ଶିଶୁ କିଶୋର ସାହିତ୍ୟ ଲେଖିଛନ୍ତି । ସାହିତ୍ୟର ସବୁ ବିଭାଗରେ ସେ ଲେଖନୀ ଚାଳନା କରି ସିଦ୍ଧି ଲାଭ କରିଛନ୍ତି ।

ପ୍ରଫେସର କୃଷ୍ଣଚରଣ ବେହେରାଙ୍କୁ ମୁଁ ଜାଣେ ଜଣେ ସ୍ନେହୀ ଛାତ୍ରବତ୍ସଳ ଅଧ୍ୟାପକ ଭାବରେ । ଜାଣେ ମଧ ଜଣେ ବନ୍ଧୁପ୍ରେମୀ ଦରଦୀ ହୃଦୟର ମଣିଷ ଭାବରେ । ସିଏ ଆଦୌ ସଂକୀର୍ଣ୍ଣ ନୁହଁନ୍ତି । ହୃଦୟ ତାଙ୍କର ପ୍ରସାରିତ । ସ୍ନେହ, ଶ୍ରଦ୍ଧା, ପ୍ରେମ ଓ ମାନବିକତାର ସିଏ ପୂର୍ଣ୍ଣ ମଣିଷଟିଏ । ଯିଏ ଯେତେବେଳେ ତାଙ୍କ ପାଖକୁ ଯାଇଛନ୍ତି ସିଏ ଅକୁଣ୍ଠ ଚିତ୍ତରେ ସମସ୍ତଙ୍କୁ ସାହାଯ୍ୟ କରିଛନ୍ତି । କେତେ ପତ୍ରପତ୍ରିକା ସଂପାଦନା କରିଛନ୍ତି, କେତେ ଲେଖକଙ୍କ ସଂସ୍ପର୍ଶରେ ଆସିଛନ୍ତି । ସର୍ବତ୍ର ଫୁଟି ଉଠିଛି ତାଙ୍କର ପ୍ରଚଣ୍ଡ ସ୍ୱାଭିମାନବୋଧ । ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରତି ତାଙ୍କର ଶ୍ରଦ୍ଧା ଓ ନିଷ୍ଠା ବାସ୍ତବିକ ପ୍ରଶଂସନୀୟ । କେବଳ ସାହିତ୍ୟ ନୁହେଁ; ଦୈନିକ ଖବରକାଗଜ ଓ ପତ୍ରପତ୍ରିକାର ସଂପାଦନାରେ ମଧ ତାଙ୍କର ଦକ୍ଷତା ପରିଲକ୍ଷିତ । ତାଙ୍କର ଆତ୍ମଜୀବନୀ 'ଆଖି ଦେଖା ପ୍ରାଣର କଥା' । ବାସ୍ତବିକ ଓଡ଼ିଆ ଆତ୍ମଜୀବନୀ କ୍ଷେତ୍ରରେ ଏକ ତଥ୍ୟନିଷ୍ଠ ପ୍ରାଣର ବାଣୀ । ସେ ଜୀବନସାରା ଅନୁଭବିଛନ୍ତି ତାରୁଣ୍ୟର ତୃଷ୍ଣା ଓ ବାର୍ଦ୍ଧକ୍ୟର ବନ୍ଧନ ତଥା ଯନ୍ତ୍ରଣା ।

୧୯୩୨ ମସିହାରୁ ୨୦୧୭- ଦୀର୍ଘ ୮୫ ବର୍ଷର ଯାତ୍ରା । ଏଇ ଯୁବସୁଲଭ ମଣିଷଟି ବହୁ ଲୋକଙ୍କୁ ଅନୁପ୍ରାଣିତ କରିଚାଲିଥିଲେ, ମାତ୍ର ସେ ଆଜି ଆମ ଗହଣରୁ ଅନ୍ତର୍ଦ୍ଧ୍ୟାନ ହୋଇଗଲେ । ସେହି ଆଜୀବନ ଜ୍ଞାନ ତପସ୍ୱୀଙ୍କୁ ମୋର ବିନମ୍ର ଶ୍ରଦ୍ଧାଞ୍ଜଳି ଜଣାଉଅଛି ଏବଂ ତାଙ୍କର ଶୋକାକୁଳ ପରିବାରବର୍ଗଙ୍କୁ ମୋର ସମବେଦନା ଜଣାଉଛି ।



ଚାଉଳିଆଗଞ୍ଜ, କଟକ

# ସ୍ମୃତି ଫଳକରେ

## ପଞ୍ଚାନନ ମହାନ୍ତି

ଆଗରୁ ଡକ୍ଟର କୃଷ୍ଣଚରଣ ବେହେରାଙ୍କ ନାଁ କେବଳ ଶୁଣିଥିଲି । ଭଦ୍ରକ କଲେଜ ଓଡ଼ିଆ(ସମ୍ମାନ) ଶ୍ରେଣୀରେ ଯୋଗ ଦେବାପରେ ହିଁ ତାଙ୍କ ସାହିତ୍ୟିକ ଓ ସାଙ୍ଗଠନିକ ପ୍ରତିଭାର ପରୋକ୍ଷ ପରିଚୟ ଲାଭ କଲି । ସେ ଦୀର୍ଘଦିନ ଧରି ଭଦ୍ରକ କଲେଜ ଓଡ଼ିଆ ବିଭାଗର ମୁଖ୍ୟ ଥିଲେ ଓ ସେଇ କାର୍ଯ୍ୟକାଳ ଭିତରେ ଓଡ଼ିଆ ବିଭାଗରେ ଏକ ସ୍ୱତନ୍ତ୍ର ସେମିନାର ଲାଇବ୍ରେରୀ ପ୍ରତିଷ୍ଠା କରିଥିଲେ । ମୁଖ୍ୟତଃ ସେଇ ଲାଇବ୍ରେରୀ ଜରିଆରେ ଆମର ପଢ଼ାପଢ଼ିର ଗୁଜୁରାଣ ମେଣ୍ଟି ଯାଉଥିଲା ।

ସେତେବେଳେ ଭଦ୍ରକର ଅସ୍ତଳରେ ଡକ୍ଟର ବେହେରାଙ୍କର ଛୋଟ ଘରଟିଏ ଥିଲା- ନାଁ 'କୋଣାର୍କ' । ସେଥିରେ ତାଙ୍କ ଭାଇ ଓ ଭଦ୍ରକ କଲେଜର ଛାତ୍ର ଅଶୋକ ରହୁଥିଲା । ତା' ସହିତ ପରିଚୟ ହେତୁ ମୁଁ ବେଳେବେଳେ ସେଠିକି ଯାଉଥିଲି । ସେଇଠି ଡକ୍ଟର ବେହେରାଙ୍କୁ ପ୍ରଥମେ ଥରେ ଦେଖିଥିଲି । ତାଙ୍କ ସହିତ ଘନିଷ୍ଠ ସଂପର୍କ ସ୍ଥାପିତ ହେଲା ମୁଁ ସରକାରୀ ଅଧ୍ୟାପକ ହୋଇ ଯୋଗ ଦେଲା ପରେ । ଏହାର ମାଧ୍ୟମଟି ଥିଲା 'ଓଡ଼ିଆ ଗବେଷଣା ପରିଷଦ' ଓ ଆମ ସଂପର୍କର ସୂତ୍ରଧର ଥିଲେ ଡକ୍ଟର କ୍ଷେତ୍ରବାସୀ ନାୟକ । 'ଏଷଣା'ରେ ମୋର କେତୋଟି ପ୍ରବନ୍ଧ ଓ ଭାଷା ବିଷୟକ ପୁସ୍ତକ ସମୀକ୍ଷା ଛପା ହେବା ପଛରେ ଥିଲା ଏଇ ଦୁଇ ଗୁରୁଶିଷ୍ୟଙ୍କର ପ୍ରୋତ୍ସାହନ ।

ଅପରିପକ୍ୱ ବୟସରେ କ୍ଷେତ୍ରବାସୀବାବୁ ଚାଲିଯିବା ପରେ ତାଙ୍କ ଘରକୁ ମୋର ଯିବାଆସିବା ବନ୍ଦ ହୋଇଗଲା ଓ ଡକ୍ଟର ବେହେରାଙ୍କ ସହିତ ସଂପର୍କ ଘନିଷ୍ଠତର ହବାକୁ ଲାଗିଲା । ତାଙ୍କର ସ୍ନେହପୂର୍ଣ୍ଣ ବ୍ୟବହାର ଓ ବୌଦ୍ଧିକ ମାନ ପ୍ରତି ନିଷ୍ଠା ମତେ ବିଶେଷ ଭାବେ ଆକୃଷ୍ଟ କରିଥିଲା । ଏଇଥିପାଇଁ ମୁଁ ତାଙ୍କର ଛାତ୍ର ହୋଇ ନଥିଲେ ବି ତାଙ୍କୁ ଗୁରୁତୁଲ୍ୟ ସମ୍ମାନ କରୁଥିଲି । ହାଇଦ୍ରାବାଦ ବିଶ୍ୱବିଦ୍ୟାଳୟରେ ଯୋଗ ଦେଲା

ପରେ ମୁଁ ଯେତେବେଳେ ଓଡ଼ିଶା ଯାଉଥିଲି, ତାଙ୍କୁ ପ୍ରାୟ ଦେଖା କରୁଥିଲି । ଆମେ ମୁଖ୍ୟତଃ 'ଏଷଣା' ତଥା ଓଡ଼ିଶାର ସାହିତ୍ୟିକ ପାଣିପାଗ ବିଷୟରେ ଚର୍ଚ୍ଚା କରୁଥିଲୁ । ପ୍ରତିଟି ସାକ୍ଷାତରେ ସେ କିଛି ନା କିଛି ଖାଇବାକୁ ଓ ଚା' ବା ସର୍ବତ ପିଇବାକୁ ବାଧ କରୁଥିଲେ ଏବଂ ମୁଁ କ'ଣ ସବୁ ଗବେଷଣା କରୁଛି ଜାଣିବାକୁ ଚାହୁଁଥିଲେ ।

ତାଙ୍କର ନିଷ୍ଠାପର ଓ ଐକାନ୍ତିକ ଉଦ୍ୟମ ହେତୁ 'ଏଷଣା' ଓଡ଼ିଶାର ଏକ ଅଗ୍ରଗଣ୍ୟ ଗବେଷଣାଧର୍ମୀ ପତ୍ରିକା ଭାବେ ପ୍ରତିଷ୍ଠା ଲାଭ କରିପାରିଚି । ଏଇ ପତ୍ରିକାର ମହତ୍ତ୍ୱ ଉପଲବ୍ଧି କରି ଗୋପୀନାଥ ମହାନ୍ତିଙ୍କ ପରି ଭାରତର ଅନ୍ୟତମ ମୂର୍ଦ୍ଧଣ୍ୟ ସାହିତ୍ୟିକ ସ୍ୱତଃପ୍ରବୃତ୍ତ ଭାବେ 'ଓଡ଼ିଆ ଗବେଷଣା ପରିଷଦ'ର ସଦସ୍ୟତା ଗ୍ରହଣ କରିଥିବା କଥା ମୁଁ ଜାଣେ । କିନ୍ତୁ ଏ ସବୁ ସତ୍ତ୍ୱେ ଅସୁବିଧା ସମୟରେ ଡକ୍ଟର ବେହେରା ନିଜ ଅର୍ଥ 'ଏଷଣା'ର ପ୍ରକାଶ ପାଇଁ ଖର୍ଚ୍ଚ କରୁଥିଲେ ବୋଲି ମୁଁ ବହୁଥର ବନ୍ଧୁମାନଙ୍କଠାରୁ ଶୁଣିଛି । 'ଓଡ଼ିଆ ଗବେଷଣା ପରିଷଦ' ଭଳି ଏକ ଗୁରୁତ୍ୱପୂର୍ଣ୍ଣ ସାହିତ୍ୟିକ ଅନୁଷ୍ଠାନ ଓ 'ଏଷଣା' ପରି ଏକ ନିରୋଳା ଗବେଷଣାଧର୍ମୀ ପତ୍ରିକାକୁ ଓଡ଼ିଶାରେ ପ୍ରତିଷ୍ଠିତ କରି ବର୍ଷ ବର୍ଷ ଧରି ଚଳେଇବା ଯେ କେତେ ଶ୍ରମ ସାପେକ୍ଷ ତା' ଆମେ ସମସ୍ତେ ଜାଣୁ ।

ଡକ୍ଟର ବେହେରାଙ୍କର ଆଉ ଏକ ଗୁରୁତ୍ୱପୂର୍ଣ୍ଣ ଦିଗ ହେଲା, ପାଶ୍ଚାତ୍ୟ ସାହିତ୍ୟ ଓ ସାହିତ୍ୟ ସଂପର୍କୀୟ ଅଗ୍ରଗତି ବିଷୟରେ ଅବହିତ ରହିବା ସଙ୍ଗେ ସଙ୍ଗେ ଓଡ଼ିଆ ସାହିତ୍ୟରେ ତା'ର ପ୍ରୟୋଗ କରୁଥିଲେ । ଏଠି ମୁଁ କେବଳ ତାଙ୍କର 'ବେଦୀ' ଗପ ଓ ସାହିତ୍ୟରେ ଅଶ୍ଳୀଳତା ସମ୍ବନ୍ଧୀୟ ଆଲୋଚନା କଥା ହିଁ ଉଲ୍ଲେଖ କରିବି । ସାହିତ୍ୟରେ କ'ଣ ଶ୍ଳୀଳ ଓ କ'ଣ ଅଶ୍ଳୀଳ, ଏହାକୁ ନେଇ ତାଙ୍କର ମତାମତ ଏତେ ଦଶନ୍ଧି ପରେ ଆଜି ଯେ ପ୍ରାସଙ୍ଗିକ, ତା' ସହୃଦୟ ପାଠକମାନେ ସହଜରେ ଉପଲବ୍ଧି କରିପାରିବେ । ତାଙ୍କରି ଆଦର୍ଶରେ ଅନୁପ୍ରାଣିତ ହେଇ ଏ ସବୁ ବୌଦ୍ଧିକ କାର୍ଯ୍ୟକଳାପକୁ ଉଜ୍ଜୀବିତ କରି ରଖିବାର ଉତ୍ତରଦାୟିତ୍ୱ ଏବେ ଆମ ସମସ୍ତଙ୍କର । ଈଶ୍ୱର ତାଙ୍କ ଆତ୍ମାକୁ ସଦ୍‌ଗତି ପ୍ରଦାନ କରନ୍ତୁ ।



# ଏମିତି ମଣିଷ ନାହିଁରେ ନାହିଁ

## ବିଜୟ କୁମାର ଶତପଥୀ

ସାହିତ୍ୟ ଓ ସଂସ୍କୃତିର ଏକନିଷ୍ଠ ସେବକ ଜ୍ଞାନ ତପସ୍ୱୀ ଡକ୍ଟର କୃଷ୍ଣଚରଣ ବେହେରାଙ୍କର ତିରୋଧାନ ଏକ ଅପୂରଣୀୟ କ୍ଷତି ପହଞ୍ଚାଇଲା ଆମର ସାରସ୍ୱତ ଜଗତରେ । ତାଙ୍କର ସୃଷ୍ଟି ସମ୍ଭାର ବିପୁଳ ଓ ବୈଚିତ୍ର୍ୟ ପୂର୍ଣ୍ଣ । ଉପାଦେୟ ସୃଜନଧର୍ମୀ ରଚନା ସାଙ୍ଗକୁ ସାହିତ୍ୟ ସମାଲୋଚନା, ସଂପାଦନା କଳା ପୁଣି ନୂତନ ଦିଗନ୍ତ ଉନ୍ମୋଚନ କରୁଥିବା ଗବେଷଣାଗୁଡ଼ିକର ମାର୍ଗପ୍ରଦର୍ଶକ ଭାବରେ ସେ ଛାତ୍ର । ଶିକ୍ଷକ, ଗବେଷକମାନଙ୍କ ନିକଟରେ ନିଜର ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିଥିଲେ । କେବଳ ସେତିକି ନୁହେଁ 'ଓଡ଼ିଆ ଗବେଷଣା ପରିଷଦ' ନାମକ ଏକ ଅନୁଷ୍ଠାନ ଗଠନ କରି ଓ ତା'ର ମୁଖପତ୍ର 'ଏଷଣା' ପ୍ରକାଶ କରି ସେ ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିର ଗବେଷଣା କ୍ଷେତ୍ରରେ ଆପଣାକୁ ନିୟୋଜିତ କରିଥିଲେ ତାଙ୍କର ସମଧର୍ମା ବିଦ୍ୱାନ ବନ୍ଧୁ ଓ ଛାତ୍ରଛାତ୍ରୀମାନଙ୍କୁ ନେଇ । ଏ କ୍ଷେତ୍ରରେ ତାଙ୍କର ଶ୍ରଦ୍ଧେୟ ଛାତ୍ର ଡକ୍ଟର କ୍ଷେତ୍ରବାସୀ ନାୟକ ତାଙ୍କୁ ସବୁଠାରୁ ଅଧିକ ସହଯୋଗ କରୁଥିଲେ । ଡକ୍ଟର ନାୟକଙ୍କର ଅକାଳ ଦେହାନ୍ତ ପରେ ସୁଦ୍ଧା ଏହି 'ଗବେଷଣା ପରିଷଦ' ଓ 'ଏଷଣା' ପତ୍ରିକାକୁ ଡକ୍ଟର କୃଷ୍ଣଚରଣ ବେହେରା ତାଙ୍କର ତ୍ୟାଗପୂତ ସାଧନା ବଳରେ ଓ ପ୍ରତ୍ୟଶା ବିହୀନ ସଦୁଦ୍ୟମ ବଳରେ ଚଳେଇ ରଖିଥିଲେ । ଏପରିକି ତାଙ୍କ ତିରୋଧାନ ପୂର୍ବର 'ଏଷଣା' ସଂଖ୍ୟାଟିର ପ୍ରୁଫ୍ ସଂଶୋଧନ ଓ ସେଥିରେ ସ୍ଥାନିତ ଲେଖାଗୁଡ଼ିକର ବିନ୍ୟାସ ସେ ହିଁ କରିଥିଲେ ଘୋର ଅସୁସ୍ଥତା ମଧ୍ୟରେ ଥାଇ ।

ସାହିତ୍ୟ କରିବା ଓ ସାହିତ୍ୟ ପ୍ରାଣ ହୋଇ ତା' ସହିତ ନିମଜ୍ଜିତ ହୋଇ ରହିବା- ଏ ଦୁଇଟି ଭିନ୍ନ କଥା । ଡକ୍ଟର ବେହେରା କେବଳ ସାହିତ୍ୟିକ ଦୃଷ୍ଟିରୁ ସାହିତ୍ୟ କରୁ ନଥିଲେ । ତାଙ୍କର ବ୍ୟକ୍ତିସତ୍ତା ଏହି ସାହିତ୍ୟ ପ୍ରାଣ ହୋଇ ଉଠିଥିଲା ଓ ସେ ଏହା ସହିତ ନିମଜ୍ଜିତ ହୋଇ ରହିଥିଲେ ଦୀର୍ଘ ସତୁରୀ ବର୍ଷ ଧରି । ସବୁଠାରୁ ବଡ଼ ଯେଉଁ ଗୁଣଟି ଜଣେ ସଚ୍ଚା ସାହିତ୍ୟିକ ଭାବରେ ତାଙ୍କଠାରେ ନିହିତ ଥିଲା ତାହା

ହେଉଛି ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ କୌଣସି ମୂଲ୍ୟବୋଧର ଅବକ୍ଷୟକୁ ସେ ଆଦୌ ପ୍ରଶୟ ଦେଉ ନଥିଲେ ।

ଡକ୍ଟର ବେହେରା ଥିଲେ ମୋର ଶିକ୍ଷକ ଯେତେବେଳେ ମୁଁ ଭଦ୍ରକ କଲେଜରେ (୧୯୭୦-୭୨) ଓଡ଼ିଆ ଅନର୍ସ ନେଇ ପାଠ ପଢୁଥିଲି । ଅନ୍ୟ ବିଷୟରେ ମତେ ଅନର୍ସ ମିଳିଥିଲେ ସୁଦ୍ଧା ସେ ମତେ ଆକୃଷ୍ଟ କରିଥିଲେ ଏଇ ବିଭାଗରେ ସ୍ନାତକ ଶ୍ରେଣୀରେ ଅନର୍ସ ନେଇ ପଢ଼ିବା ପାଇଁ । ମୁଁ ଘଟଣାଚକ୍ରରେ ରେଭେନ୍ସା ମହାବିଦ୍ୟାଳୟରେ ଅଧ୍ୟାପକ ଭାବରେ ଯୋଗ ଦେଲାବେଳକୁ ସାର୍ ଥାଆନ୍ତି ସ୍ନାତକୋତ୍ତର ଓଡ଼ିଆ ବିଭାଗର ମୁଖ୍ୟ । ତାଙ୍କ ସହିତ କେତେ ବର୍ଷ ସେଠାରେ କାମ କରିବାର ସୁଯୋଗ ମିଳିଲା । ପୁଣି କ୍ୟାମ୍ପସରେ ମୁଁ ଯେଉଁ କ୍ୱାର୍ଟରରେ ରହୁଥିଲି ତା'ର ଅନତିଦୂରରେ ରହୁଥିଲେ ଡକ୍ଟର ବେହେରା । କଲ୍ୟାଣୀନଗରଠାରେ ସ୍ଥାୟୀଘର କିଣିଲାବେଳକୁ ମୁଁ ସେଇଠି ଜାଗା କିଣିସାରିଥିଲି ଓ ପରେ ଘର କରି ସେଠାରେ ବସବାସ କରି ରହୁଛି ।

ଏହିପରି ତାଙ୍କର ନିକଟତର ହେବାର ସୁଯୋଗ ମତେ ମିଳିଥିଲା । ସାରଙ୍କ ପରିବାର ନିବିଡ଼ ଓ ଅନ୍ତରଙ୍ଗ ସୂତ୍ରରେ ଆବଦ୍ଧ ହୋଇଥିଲା ମୋର ପରିବାର ସହିତ । ସାର୍, ମାଉସୀ (ଜୟନ୍ତୀ ବେହେରା) ବାପୁ, ଟୁଟୁ, ଚୁନି ଏମାନଙ୍କ ଶୈଶବରୁ ମୁଁ ଜାଣିଛି ଯେତେବେଳେ ସାର ଭଦ୍ରକ କଲେଜରେ କ୍ୱାର୍ଟରରେ ରହୁଥିଲେ । ଆଜି ଆଖି ଆଗରେ ଭାସି ଉଠୁଛି ସେଇ ସ୍ମୃତି ସବୁ । ଭଦ୍ରକ କଲେଜର ୱେଷ୍ଟ ହଷ୍ଟେଲ ଥିଲା ସାଳନ୍ଦୀ କୂଳରେ ।

ସ୍କୁଲବେଳ ହୋଇଗଲେ ବାପୁ, ଟୁଟୁ, ଚୁନି, ସ୍କୁଲକୁ କେମିତି ବାହାରନ୍ତି । ମାଉସୀ କେମିତି ବାରଣ୍ଡାକୁ ଆସି ସେମାନଙ୍କ ଯିବା ରାସ୍ତାକୁ ଚାହିଁଥାନ୍ତି । ସାର୍ ଠିକ୍ ତା'ପରେ ଗୋଟେ ଚମଡ଼ା ହ୍ୟାଣ୍ଡ ବ୍ୟାଗ ଭର୍ତ୍ତି ବହି, ଖାତାପତ୍ର ଧରି କ୍ୱାର୍ଟରରୁ ବାହାରି ଡିପାର୍ଟମେଣ୍ଟକୁ ଯାଆନ୍ତି କ୍ଲାସନେବା ପାଇଁ । ଥିଲେ ସେ ବିଶ୍ୱଭାରତୀ ଶାନ୍ତିନିକେତନର ଛାତ୍ର ଓ ତାଙ୍କ କର୍ମମୟ ଜୀବନର ଯେଉଁଠି ଆରମ୍ଭ ହେଲା, ପୁଣି ବହୁବର୍ଷ କଟିଲା, ସେଇ ଭଦ୍ରକ ମଧ୍ୟ ହେଉଛି ଆଉ ଏକ ଶାନ୍ତିନିକେତନ ।

ତାଙ୍କ ଅଧୀନରେ ମାର୍କ୍ସବାଦୀ ସାହିତ୍ୟ ସଂପର୍କରେ ଗବେଷଣା ମୁଁ କରିଛି ଓ ଗ୍ରନ୍ଥଟିର ଏକାଧିକ ସଂସ୍କରଣ ମଧ୍ୟ ପ୍ରକାଶ ପାଇଛି । ସେ ସମୟରେ ମୁଁ ଅନୁଭବ କରିଛି ଗୋଟିଏ ନିର୍ଦ୍ଦିଷ୍ଟ ଗବେଷଣାକୁ କିପରି ଶାଣିତ ଓ ସିରିଅସ୍ ଦୃଷ୍ଟିଭଙ୍ଗୀ ଦେଇ ଗବେଷଣା କରାଯାଏ । ଏପରି ଜଣେ ଦିଗପ୍ରଦର୍ଶକ ଆଜି ବିରଳ । ସେଥିପାଇଁ ଏବର

ଭାଷା ସାହିତ୍ୟ ସଂପର୍କରେ ଗବେଷଣା ରସାତଳଗାମୀ ହେବାକୁ ବସିଛି ।

ସାର ମୋର ଥିଲେ ଦୀକ୍ଷାଗୁରୁ, ଶିକ୍ଷା ଗୁରୁ । ତାଙ୍କ ପାଖରେ ବସିଲେ ମତେ ଲାଗେ ମୁଁ ଭଦ୍ରକ କଲେଜରେ ପଢୁଥିବା ସେଇ କିଶୋର ଯିଏ ପ୍ରତିକୂଳ ଭାଗ୍ୟ ସହ ଲଢ଼ି ଜୀବନ ପାଇଁ ଉପଯୁକ୍ତ ମାର୍ଗଟିଏ ଖୋଜୁଥିଲା । ମନେ ହେଉଥିଲା କିଏ ଯେପରି ସେଇ ଅବୋଧ କିଶୋରର ହାତଧରି ସେଦିନ ସଂସାର ରୂପ ବିପଦସଂକୁଳ, ଅନ୍ଧାରୁଆ କଣ୍ଟକିତ ବନପଥରେ ସେ ବାଟ କଢ଼େଇ ନେଉଥିଲେ ଓ କହୁଥିଲେ ବୁଝେଇ ଶୁଝେଇ- "ଆସ ବିଜୟ ଏଇଟା ଠିକ୍ ରାସ୍ତା... ଆସ.... ସକାଳ ହବ ନିଶ୍ଚୟ... ତା' ପରେ ସ୍ୱଚ୍ଛ ହୋଇଯିବ ରାସ୍ତାଘାଟ । ଏଇ ହେଉଛନ୍ତି ମୋର ସେଇ ଗୁରୁ ଯାହାକୁ ମୁଁ ଅନୁଭବ କରିଛି ମର୍ମେମର୍ମେ ଓ ଦେଖିଛି ଓ ଜୀବନ ଥିଲାଯାଏ ଦେଖୁଥିବି- ସେ ଚାହିଛନ୍ତି ଆଗରେ ଯାବତୀୟ ପ୍ରତିବନ୍ଧକ, ଅରମା କଣ୍ଟାଝଟା ପଥର ସବୁକୁ ଏଡ଼େଇ ଆଉ ବାଟ କଢ଼େଇ ନେଉଛନ୍ତି ମତେ । ମତେ ନାଟକ ଲେଖିବା ପାଇଁ ସେ ପ୍ରେରଣା ଦେଇଛନ୍ତି ମୋର ପ୍ରଥମ ପ୍ରକାଶିତ ନାଟକର ମୁଖବନ୍ଧ ଲେଖି, ମୋ ମନରେ ସେ ଜାଗ୍ରତ କରିଛନ୍ତି ପ୍ରଚୁର ଅଧ୍ୟୟନ ପିପାସା ।

କେବେ ଦେଖାହେଲା ମାତ୍ରେ ପଚାରନ୍ତି ଆଗେ- କ'ଣ ଲେଖିଲ ନୂଆ ନାଟକ ? କବିତା କେମିତି ଅଛି ? ଏମିତି ଅନେକ ପ୍ରଶ୍ନ । ପରିବାରଠାରୁ ସାହିତ୍ୟିକ ପାଣିପାଗ ପର୍ଯ୍ୟନ୍ତ । ଗଭୀର ଆନ୍ତରିକତା ଓ ସ୍ନେହ ଓ ମମତାରେ ଅନ୍ୟକୁ ବାନ୍ଧି ପାରୁଥିବା ତାଙ୍କ ପରି ମଣିଷ ଆଜି ବିରଳ । ଗବେଷଣା ପରିଷଦ ପାଇଁ ସେ ଘଣ୍ଟା ଘଣ୍ଟା ପରିଶ୍ରମ କରନ୍ତି ରାତି ଅନିଦ୍ରା ହୋଇ । ବିପୁଳ ତାଙ୍କର ସାରସ୍ୱତ କୀର୍ତ୍ତି । ଏଇ କ୍ଷୁଦ୍ର ସ୍ମୃତିଚାରଣଟିରେ ତା'ର ଚିତ୍ର ଦେବା ଅସମ୍ଭବ । କବିତା, ଗଳ୍ପ, ନାଟକ ପ୍ରଭୃତିର ରଚନା ସାଙ୍ଗକୁ ସଂପାଦନା ଓ ଉନ୍ନତମାନର ଗବେଷଣା- ଏସବୁ କ୍ଷେତ୍ରରେ କୀର୍ତ୍ତିମାନ ସ୍ରଷ୍ଟା ହେଉଛନ୍ତି ଡକ୍ଟର ବେହେରା । ସେ ଯେଉଁ ଶୂନ୍ୟସ୍ଥାନ ସୃଷ୍ଟି କରି ଦେଇଗଲେ ତାହା ଆଦୌ ପୂରଣ ହୋଇପାରିବ ନାହିଁ ।

ଛାତ୍ରଛାତ୍ରୀମାନଙ୍କୁ ନିଜର ସନ୍ତାନସନ୍ତତି ପରି ସ୍ନେହ ଶ୍ରଦ୍ଧା ବାଣ୍ଟୁଥିବା ଏପରି ମଣିଷଟିଏ କାହିଁ ଏବେ ? ପୁଣି ସାହିତ୍ୟ ଓ ସଂସ୍କୃତି ପ୍ରାଣ ଏପରି ମଣିଷ ବି କାହିଁ ସତରେ ? ଏପରି ଅସଦ୍‌ଭାବ, ଏପରି ଶୂନ୍ୟତା ଭିତରେ ଡକ୍ଟର ବେହେରାଙ୍କ ସ୍ମୃତିଚାରଣ ଆମକୁ ସାନ୍ତ୍ୱନା ଆଣିଦେଉ ଓ ପ୍ରେରଣା ଦେଉଥାଉ କାଳେ କାଳେ । ଯେମିତି ମତେ ଓ ମୋ' ପରି ଅନେକ ଛାତ୍ରଛାତ୍ରୀଙ୍କୁ ସେ ଆଗେ ଆଗେ ଯାଇ ବାଟ କଢ଼େଇ ନେଉଥିଲେ । ●

# ସାର୍‌ଙ୍କ ବିୟୋଗରେ

## ଡା. ସରସ୍ୱତୀ ସ୍ୱାଇଁ

କୃଷ୍ଣଚରଣ ବେହେରା– ଶିକ୍ଷା ଓ ଗବେଷଣା ପାଇଁ ଏକ ଉତ୍ସର୍ଗୀକୃତ ବ୍ୟକ୍ତିତ୍ୱ । ମାତୃଭାଷା (ଓଡ଼ିଆ)ର ଉନ୍ନତି ପାଇଁ ସର୍ବଦା ଗବେଷଣାରତ କୃଷ୍ଣବାବୁ ନିଜକୁ ନିୟୋଜିତ କରି ରଖିଥିଲେ । ଶାରୀରିକ ଅସୁସ୍ଥତା ତାଙ୍କୁ ଅବଦମିତ କରିପାରି ନଥିଲା । ଗବେଷଣା ପରିଷଦର ପ୍ରତ୍ୟେକ ଅଧିବେଶନ ପାଇଁ ନିଜେ ନିମନ୍ତ୍ରଣପତ୍ର ବାଣ୍ଟିବା ମୁଁ ଦେଖିଛି । ପରିଷଦର ପ୍ରତ୍ୟେକ ଅଧିବେଶନରେ ସେ ଅତ୍ୟନ୍ତ ନିପୁଣତାର ସହ ସଭାପତିତ୍ୱ କାର୍ଯ୍ୟ କରୁଥିଲେ । ମାତୃଭାଷା ପ୍ରତି ତାଙ୍କର ନିଷ୍ଠା ଥିଲା ଅପରିସୀମ । ହୃଦ୍‌ରୋଗ ଏବଂ ବୟସର ଚାପ ତାଙ୍କୁ ଦୁର୍ବଳ କରିଥିଲେ ମଧ୍ୟ ମାନସିକ ଶକ୍ତି ଥିଲା ପ୍ରଚୁର । ସେଥିପାଇଁ ସେ ସବୁ ପ୍ରତିକୂଳ ପରିସ୍ଥିତିରେ ନିଜକୁ କାର୍ଯ୍ୟକ୍ଷମ କରି ରଖିପାରିଥିଲେ । ସେ କେବେହେଲେ କ୍ଳାନ୍ତି ଅନୁଭବ କରିବାର ମୁଁ ଉପଲବ୍ଧି କରିପାରି ନାହିଁ । ସବୁଠାରୁ ଆଶ୍ଚର୍ଯ୍ୟଜନକ ଥିଲା ତାଙ୍କର ସ୍ମରଣ ଶକ୍ତି । ଅଧିବେଶନରେ ଅତିଥି ପରିଚୟ ସେ ନିଜେ ଦେଉଥିଲେ । ଅତିଥିମାନଙ୍କର ପରିଚୟ ଅତି ନିଷ୍ଠା ଏବଂ ଶ୍ରଦ୍ଧା ଦେଉଥିଲେ । ପ୍ରତି ଅତିଥିଙ୍କର ଶିକ୍ଷା, ପରିବାର ଏବଂ ସନ୍ତାନସନ୍ତତିମାନଙ୍କର ପରିଚୟ ଅତି ନିଖୁଣ ଭାବରେ ସେ ବର୍ଣ୍ଣନା କରୁଥିଲେ ! ଅଦ୍ଭୁତ ସ୍ମରଣ ଶକ୍ତି ।

ଗବେଷଣା ପରିଷଦର ଗତ ପୁରୀ ଅଧିବେଶନ ବେଳକୁ ସେ ଯାଉଥିବା ଗାଡ଼ିରେ ହଠାତ ଅସୁସ୍ଥ ହୋଇପଡ଼ିଥିଲେ । ପୁରୀ ଡାକ୍ତରଖାନାରେ ରୋଗଶଯ୍ୟାରେ ପଡ଼ି ଅଧିବେଶନରେ ନିଜର ଅନୁପସ୍ଥିତି ପାଇଁ ବିବ୍ରତ ହୋଇ ତା'ର ଶୁଭକାମନା ଡାକ୍ତରମାନଙ୍କୁ ଆଶ୍ଚର୍ଯ୍ୟ କରି ଦେଇଥିଲା । ନିଜ ଦାୟିତ୍ୱ (ଯାହା ସେ ନିଜେ ନେଇଥିଲେ) ଉତ୍ତମ ରୂପେ ପାଳନ କରିପାରି ନଥିବାରୁ ତାଙ୍କର ମାନସିକ ଯନ୍ତ୍ରଣା ମୁଁ ଅନୁଭବ କରିପାରିଛି । ସେ ରୋଗଶଯ୍ୟାରେ ପଡ଼ି ଅଧିବେଶନରେ ଅଗ୍ରଗତି ପୁଙ୍ଖାନୁପୁଙ୍ଖ ଭାବରେ ପଚାରି ବୁଝି ଦିଗ୍‌ଦର୍ଶନ ଦେଉଥିଲେ । ମୁଁ ନିଜେ ଦେଖି ଅଭିଭୂତ

ହୋଇଯାଇଥିଲି । ଏଭଳି କର୍ତ୍ତବ୍ୟ ପରାୟଣତାର ଉଦାହରଣ କୃଷ୍ଣବାବୁ କେବଳ ନିଜେ । ଅନ୍ୟମାନଙ୍କ ପାଖରେ ଏହା ସମ୍ଭବ ନୁହେଁ । ପରେ ତାଙ୍କୁ ଆମ୍ବୁଲାନ୍ସରେ କଟକ ପଠାଗଲା- ନିଜର ଅନୁପସ୍ଥିତି ପାଇଁ ସେ ଅଧିବେଶନର ଅନ୍ୟମାନଙ୍କୁ ଧନ୍ୟବାଦ ଜଣାଇ କ୍ଷମା ମାଗିଥିଲେ ।

କୃଷ୍ଣବାବୁ ଥିଲେ ଏକ ଆଦର୍ଶ ଶିକ୍ଷକ । ତାଙ୍କର ଛାତ୍ର ସଂଖ୍ୟା ଶତାଧିକ । ସମସ୍ତଙ୍କର ସେ ଥିଲେ ଶ୍ରଦ୍ଧା ଏବଂ ଭକ୍ତିର ପାତ୍ର ଯାହା ସାଧାରଣତଃ ଦେଖାଯାଏ ନାହିଁ । ସେଥିପାଇଁ ଗବେଷଣା ପରିଷଦର ପ୍ରତ୍ୟେକ ଅଧିବେଶନ ଶିକ୍ଷକ ଓ ଛାତ୍ରପୂର୍ଣ୍ଣ ରହୁଥିଲା । କୃଷ୍ଣବାବୁ ପ୍ରାବନ୍ଧିକଙ୍କର ଅଭିଭାଷଣ ଶୁଣି, ପ୍ରଶ୍ନ ପଚାରି ଆବଶ୍ୟକସ୍ଥଳେ ସଂଶୋଧନ କରି ଦେଉଥିଲେ ।

'ଏଷଣା' ତାଙ୍କର ମାନସ ସନ୍ତାନ । ଏଷଣାର ପ୍ରତିଟି ସଂଖ୍ୟା ସେ ନିଜେ ସଂଶୋଧନ କରି ପ୍ରକାଶିତ ହେବା ପୂର୍ବରୁ ସଂଶୋଧନ କରୁଥିଲେ । ଲେଖା ନିର୍ଭୁଲ ହେବା ଆବଶ୍ୟକ । ଏଷଣାର ଉତ୍ତମ ବଣ୍ଟନ ଉପରେ ତାଙ୍କର ଧ୍ୟାନ ଥିଲା ପ୍ରଚୁର । ଅତ୍ୟନ୍ତ ଆନନ୍ଦର ସହ କାର୍ଯ୍ୟ ସଂପନ୍ନ କରୁଥିଲେ । ଏଷଣା ଏବଂ ଗବେଷଣା ପରିଷଦର ଉତ୍ତରୋତ୍ତର ଉନ୍ନତି ଥିଲା ତାଙ୍କର ଧ୍ୟେୟ ଏବଂ ଲକ୍ଷ୍ୟ । ପରିବାରରେ ପୁତ୍ର ଏବଂ ପୁତ୍ରବଧୂ ତାଙ୍କ ସ୍ୱାସ୍ଥ୍ୟ ସଂପର୍କରେ ଚିନ୍ତିତ ରହି ତାଙ୍କୁ କର୍ମତତ୍ପରତାରୁ ନିବୃତ୍ତ କରିପାରୁ ନଥିଲେ । ସେମାନଙ୍କର ସେବାଯତ୍ନ କୃଷ୍ଣବାବୁଙ୍କୁ ଅଧିକ କର୍ମଠ କରିପାରିଥିଲା । ଏଭଳି ପରିବାର ବିରଳ ।

ଆଜି କୃଷ୍ଣବାବୁ ନାହାନ୍ତି- ତାଙ୍କର ପ୍ରିୟ 'ଏଷଣା' ଏବଂ 'ଗବେଷଣା ପରିଷଦ'କୁ ଛାଡ଼ି ସେ ଚାଲିଗଲେ, ସେଠାକୁ ଯେଉଁଠାରୁ କେହି କେବେ ଫେରେନା । ତାଙ୍କର ସ୍ମୃତିଚାରଣ କରାଯିବ । ବନ୍ଧୁ ଏବଂ ଛାତ୍ରମାନେ କରିବେ । ମାତ୍ର ଏଷଣା ଏବଂ ଗବେଷଣା ପରିଷଦର ବୃଦ୍ଧି ଏବଂ ଉନ୍ନତି କରିପାରିଲେ ମୋ ମତରେ ହେବ ତାଙ୍କ ପ୍ରତି ଉପଯୁକ୍ତ ଶ୍ରଦ୍ଧାଞ୍ଜଳି । ଏଷଣା ବଞ୍ଚି ରହୁ । ଆଗକୁ ବଢୁ ।

ଶିକ୍ଷା ଦେବାର କୌଣସି ସୁବିଧାକୁ ସେ ହାତଛଡ଼ା କରୁ ନଥିଲେ । ତାଙ୍କର ଛଡ଼ା ଘର ଭିତରେ ନିଜ କୋଠରିଟିରେ ନିଜ ପାଇଁ ସାମାନ୍ୟ ଖଟଟିଏ ବ୍ୟତୀତ ସମଗ୍ର କୋଠରିଟି ଥିଲା ପୁସ୍ତକରେ ପରିପୂର୍ଣ୍ଣ । ସେଗୁଡ଼ିକର ବିଭାଗ ବଣ୍ଟନ କରାଯାଇପାରି ନଥିଲା, ସମୟ ଏବଂ ସାହାଯ୍ୟକାରୀଙ୍କର ଅଭାବ । ମାତ୍ର ତାଙ୍କର ଯେଉଁ ପୁସ୍ତକ ଲୋଡ଼ା ତାହା ଅକ୍ଳେଶରେ ତାହା କାଢ଼ି ଆଣିପାରୁଥିଲେ । ବୈଠକଖାନାରେ

ବସି ମଧ୍ୟ କାହାରି ଆବଶ୍ୟକ ପୁସ୍ତକ ସେ ନିଜ ପୁତ୍ରକୁ କହି କାଢ଼ି ପାରୁଥିଲେ । କେଉଁ ପୁସ୍ତକର କିଏ ଲେଖକ ବା ଲେଖିକା ଏବଂ ତା'ର ପ୍ରକାଶନର ସମୟ ସେ ନିର୍ଭୁଲ ଭାବରେ ଜଣାଇ ପାରୁଥିଲେ । ଏହାର ସତ୍ୟାସତ୍ୟ ପ୍ରମାଣ କରିବା ପାଇଁ ଚେଷ୍ଟା କରି ମୁଁ ହାରିଯାଇଥିଲି ।

କୃଷ୍ଣବାବୁଙ୍କ ସ୍ମୃତିଚାରଣ ଛାତ୍ରମାନେ କରିବେ । 'ଏଷଣା' ଏବଂ ଗବେଷଣାକ ପରିଷଦର ଉତ୍ତରୋତ୍ତର ଉନ୍ନତି ତାଙ୍କର ସ୍ମୃତିରକ୍ଷା ପାଇଁ ହେବ ଏକାନ୍ତ ଉପଯୋଗୀ । ଏଷଣା ବଞ୍ଚିରହୁ । ଆଗକୁ ବଢୁ । ଏହା ମୋର ଏକାନ୍ତ କାମ୍ୟ । ଏଷଣାର ଜୟଯାତ୍ରା ଆମ ସମସ୍ତଙ୍କର କାମ୍ୟ ।



# ଈଶ୍ୱରଙ୍କ ପରି ସଚ୍ଚା ଭଦ୍ରଲୋକ

## ଶୈଳଜ ରବି

ଡ. ବେହେରା ଥିଲେ ଓଡ଼ିଆ ଗବେଷଣା ପରିଷଦର ଆଜୀବନ ସଭାପତି ଏବଂ ବହୁକାଳ ଧରି ମୁଁ ଥିଲି ଉପସଭାପତି ଦୁଇଥର ସାଙ୍ଗଠନିକ ବ୍ୟାପାରକୁ ନେଇ ଏବଂ ଥରେ 'ଏଷଣା'ରେ ପ୍ରକାଶିତ ତାଙ୍କର ଏକ 'ଗ୍ରନ୍ଥ ପରିଚୟ'କୁ ନେଇ ତାଙ୍କ ସହିତ ଘମାଘୋଟ ବାକ୍ୟୁଦ୍ଧ ହୋଇଥିଲା । ମାତ୍ର ପ୍ରତିଥର ଝଡ଼ ଥମିଯିବା ପରେ ହଠାତ ମୋ ପାଖରେ ଆସି ପହଞ୍ଚେ ତାଙ୍କର ଏକ ଦୁର୍ଲ୍ଲଭ ପୁରସ୍କାର । ଥରେ ଏହିଭଳି ବାକ୍ୟୁଦ୍ଧ ପରଦିନ ଫୋନ୍ କରି ପଚାରିଲେ, " ତୁମକୁ ମୁଁ ମୋର ଗୋଟାଏ ବହି ଉତ୍ସର୍ଗ କରିପାରେ କି ?" ଆଉଥରେ ଏହିଭଳି 'ଲଢ଼େଇ'ର କିଛିଦିନ ପରେ ଅଧରାତିରେ ଫୋନରେ ମୋର ପ୍ରୋଫାଇଲ୍ ନେଲେ । ପଚାରିଲି, "ସାର୍, ହଠାତ କାହିଁକି ଏସବୁ ପଚାରୁଛନ୍ତି ?" କହିଲେ, "ମୁଁ ତମ ନାଁ କବିତାରେ ସାହିତ୍ୟ ଏକାଡେ଼ମୀ ପୁରସ୍କାର ପାଇଁ ସୁପାରିସ କରିବାକୁ ଚାହୁଁଛି । କାଲି ଶେଷ ଦିନ ।" ଆମର ଶେଷ 'ଝଗଡ଼ା' ପରିଷଦର ଗୋଟାଏ ବାର୍ଷିକ ଉତ୍ସବର ଅପରାହ୍ନ ସାଙ୍ଗଠନିକ ଅଧିବେଶନରେ । ଗୁଡ଼ାଏ ପାଟିତୁଣ୍ଡ । ସେଦିନ ସନ୍ଧ୍ୟା ଅଧିବେଶନରେ ମୁଁ ରାମଚନ୍ଦ୍ର ଭବନ ଫାଟକ ପାଖରେ ଏକା ଛିଡ଼ା ହୋଇଥାଏ । ସେ ବୋଧେ ଭାବିଲେ ମୁଁ ଚାଲିଯିବାକୁ ଉଦ୍ୟମ କରୁଛି । ହଠାତ ହଲ୍ ବାରଣ୍ଡାରୁ ଓହ୍ଲାଇ ଆସି ମୋ କାନ୍ଧ ଉପରେ ହାତରଖି ତାଙ୍କର ସେହି ଟିପିକାଲ୍ ସ୍ମିତହାସ୍ୟ ସହିତ କହିଲେ, "ରହିବ । ଖାଇକରି ଯିବ ।" ଏବେବି ସେ ହାତର ଉଷ୍ମା, ସେ ହସ ଆଉ ଦି'ପଦ କଥା ତୁହାକୁତୁହା ମନେ ପଡ଼ିଯାଉଛି ।

ତାଙ୍କ ସମ୍ମାନରେ ଆମ୍ଭେମାନେ ପ୍ରକାଶ କରିଥିବା 'କୃଷ୍ଣଚରଣ: କୃତି ଓ କୃତିତ୍ୱ' ସଂକଳନରେ ତାଙ୍କ ଧର୍ମଧାରଣା ସଂପର୍କରେ ମୁଁ ଗୋଟିଏ ପ୍ରବନ୍ଧ ଲେଖିଥିଲି । ଉପସଂହାରରେ, ସୋମରସେଟ୍ ମମ୍‌ଙ୍କୁ ତାଙ୍କର ବନ୍ଧୁ ଅଗଷ୍ଟ ହାରେ ଈଶ୍ୱରଙ୍କ

ବସି ମଧ୍ୟ କାହାରି ଆବଶ୍ୟକ ପୁସ୍ତକ ସେ ନିଜ ପୁତ୍ରକୁ କହି କାଢ଼ି ପାରୁଥିଲେ । କେଉଁ ପୁସ୍ତକର କିଏ ଲେଖକ ବା ଲେଖିକା ଏବଂ ତା'ର ପ୍ରକାଶନର ସମୟ ସେ ନିର୍ଭୁଲ ଭାବରେ ଜଣାଇ ପାରୁଥିଲେ । ଏହାର ସତ୍ୟାସତ୍ୟ ପ୍ରମାଣ କରିବା ପାଇଁ ଚେଷ୍ଟା କରି ମୁଁ ହାରିଯାଇଥିଲି ।

କୃଷ୍ଣବାବୁଙ୍କ ସ୍ମୃତିଚାରଣ ଛାତ୍ରମାନେ କରିବେ । 'ଏଷଣା' ଏବଂ ଗବେଷଣାକ ପରିଷଦର ଉତ୍ତରୋତ୍ତର ଉନ୍ନତି ତାଙ୍କର ସ୍ମୃତିରକ୍ଷା ପାଇଁ ହେବ ଏକାନ୍ତ ଉପଯୋଗୀ । ଏଷଣା ବଞ୍ଚିରହୁ । ଆଗକୁ ବଢୁ । ଏହା ମୋର ଏକାନ୍ତ କାମ୍ୟ । ଏଷଣାର ଜୟଯାତ୍ରା ଆମ ସମସ୍ତଙ୍କର କାମ୍ୟ ।



# ଈଶ୍ୱରଙ୍କ ପରି ସଚ୍ଚା ଭଦ୍ରଲୋକ

## ଶୈଳଜ ରବି

ଡ. ବେହେରା ଥିଲେ ଓଡ଼ିଆ ଗବେଷଣା ପରିଷଦର ଆଜୀବନ ସଭାପତି ଏବଂ ବହୁକାଳ ଧରି ମୁଁ ଥିଲି ଉପସଭାପତି ଦୁଇଥର ସାଙ୍ଗଠନିକ ବ୍ୟାପାରକୁ ନେଇ ଏବଂ ଥରେ 'ଏଷଣା'ରେ ପ୍ରକାଶିତ ତାଙ୍କର ଏକ 'ଗ୍ରନ୍ଥ ପରିଚୟ'କୁ ନେଇ ତାଙ୍କ ସହିତ ଘମାଘୋଟ ବାକ୍ୟୁଦ୍ଧ ହୋଇଥିଲା । ମାତ୍ର ପ୍ରତିଥର ଝଡ଼ ଥମିଯିବା ପରେ ହଠାତ ମୋ ପାଖରେ ଆସି ପହଞ୍ଚେ ତାଙ୍କର ଏକ ଦୁର୍ଲ୍ଲଭ ପୁରସ୍କାର । ଥରେ ଏହିଭଳି ବାକ୍ୟୁଦ୍ଧ ପରଦିନ ଫୋନ୍ କରି ପଚାରିଲେ, " ତୁମକୁ ମୁଁ ମୋର ଗୋଟାଏ ବହି ଉତ୍ସର୍ଗ କରିପାରେ କି ?" ଆଉଥରେ ଏହିଭଳି 'ଲଢ଼େଇ'ର କିଛିଦିନ ପରେ ଅଧରାତିରେ ଫୋନରେ ମୋର ପ୍ରୋଫାଇଲ୍ ନେଲେ । ପଚାରିଲି, "ସାର୍, ହଠାତ କାହିଁକି ଏସବୁ ପଚାରୁଛନ୍ତି ?" କହିଲେ, "ମୁଁ ତମ ନାଁ କବିତାରେ ସାହିତ୍ୟ ଏକାଡ଼େମୀ ପୁରସ୍କାର ପାଇଁ ସୁପାରିସ କରିବାକୁ ଚାହୁଁଛି । କାଲି ଶେଷ ଦିନ ।" ଆମର ଶେଷ 'ଝଗଡ଼ା' ପରିଷଦର ଗୋଟାଏ ବାର୍ଷିକ ଉତ୍ସବର ଅପରାହ୍ଣ ସାଙ୍ଗଠନିକ ଅଧିବେଶନରେ । ଗୁଡ଼ାଏ ପାଟିତୁଣ୍ଡ । ସେଦିନ ସନ୍ଧ୍ୟା ଅଧିବେଶନରେ ମୁଁ ରାମଚନ୍ଦ୍ର ଭବନ ଫାଟକ ପାଖରେ ଏକା ଛିଡ଼ା ହୋଇଥାଏ । ସେ ବୋଧେ ଭାବିଲେ ମୁଁ ଚାଲିଯିବାକୁ ଉଦ୍ୟମ କରୁଛି । ହଠାତ ହଲ୍ ବାରଣ୍ଡାରୁ ଓହ୍ଲାଇ ଆସି ମୋ କାନ୍ଧ ଉପରେ ହାତରଖି ତାଙ୍କର ସେହି ଟିପିକାଲ୍ ସ୍ମିତହାସ୍ୟ ସହିତ କହିଲେ, "ରହିବ । ଖାଇକରି ଯିବ ।" ଏବେବି ସେ ହାତର ଉଷ୍ମା, ସେ ହସ ଆଉ ଦି'ପଦ କଥା ତୁହାକୁତୁହା ମନେ ପଡ଼ିଯାଉଛି ।

ତାଙ୍କ ସମ୍ମାନରେ ଆମ୍ଭେମାନେ ପ୍ରକାଶ କରିଥିବା 'କୃଷ୍ଣଚରଣ: କୃତି ଓ କୃତିତ୍ୱ' ସଂକଳନରେ ତାଙ୍କ ଧର୍ମଧାରଣା ସଂପର୍କରେ ମୁଁ ଗୋଟିଏ ପ୍ରବନ୍ଧ ଲେଖିଥିଲି । ଉପସଂହାରରେ, ସୋମରସେଟ୍ ମମ୍‌ଙ୍କୁ ତାଙ୍କର ବନ୍ଧୁ ଅଗଷ୍ଟ ହାରେ ଈଶ୍ୱରଙ୍କ

ସଂପର୍କରେ ଦେଇଥିବା ମତଟି ଉଦ୍ଧାର କରିଥିଲି । ହାରେ ପ୍ରାର୍ଥନା ପୁସ୍ତକ ପଢ଼ିବାବେଳେ ସେଥିରେ ଈଶ୍ୱରଙ୍କ ଟେକାଟେକି କରି ଯେଉଁସବୁ ବିଶେଷଣ ଦିଆଯାଇଥାଏ ସେଗୁଡ଼ିକୁ ଜାଣି ଶୁଣି ଉହ୍ୟ ରଖନ୍ତି । ମୋମ୍ ତା'ର କାରଣ ପଚାରନ୍ତେ ହାରେ କହିଲେ, "ଈଶ୍ୱର ଜଣେ ଅତ୍ୟନ୍ତ ଭଦ୍ରଲୋକ । ନିଜ ସମ୍ମୁଖରେ ସେ ନିଜ ପ୍ରଶଂସା ଶୁଣିବାକୁ ଭଲ ପାଆନ୍ତି ନାହିଁ ।" କୃଷ୍ଣଚରଣ ଥିଲେ ଏହିଭଳି ଜଣେ ଭଦ୍ରଲୋକ । ନିଜର କନିଷ୍ଠମାନଙ୍କୁ ସୁଦ୍ଧା ସେ ପ୍ରଶଂସାରେ ପୋତି ପକାନ୍ତି । ମାତ୍ର ତାଙ୍କ ମୁହଁରେ ତାଙ୍କୁ କେହି ପ୍ରଶଂସା କଲେ ସେ ଅଶ୍ୱସ୍ତି ଅନୁଭବ କରନ୍ତି । ତାଙ୍କୁ ବହୁବାର ଆଘାତ ଦେଇଛି । ପ୍ରତିବଦଳରେ ତାଙ୍କଠାରୁ ପାଇଥିବା 'ଅହିଂସକ ମାଡ଼'ର ତିକ୍ତ ମଧୁର ସ୍ୱାଦ ମନେପଡ଼ିଯାଉଛି । ଈଶ୍ୱରୀୟ ପ୍ରଶସ୍ତ ହୃଦୟରେ ଅଧିକାରୀ, ସେହି ବିରଳ ସଚ୍ଚା ଭଦ୍ରଲୋକ, 'ସାର' ତାଙ୍କ ଅବର୍ତ୍ତମାନରେ ଭାରି ମନେପଡୁଛନ୍ତି ।



ବନମାଳୀ ଭବନ,
ଖାନନଗର, କଟକ-୧୨

# ସାରସ୍ୱତ ସାଧକ କୃଷ୍ଣଚରଣ

## ଲାବଣ୍ୟ ନାୟକ

ସବୁ ପଥର କ'ଣ କୋଣାର୍କର ଶିଳା ହେବାର ଗୌରବ ଲାଭ କରିପାରନ୍ତି ନା ସବୁ କାରିଗର ଧର୍ମପଦ ହୋଇପାରନ୍ତି । ସେମିତି ସବୁ ବୃଷ୍ଟିଜଳ ଶାମୁକା ଗର୍ଭରେ ମୁକ୍ତା ସୃଷ୍ଟି କରିପାରନ୍ତି ନାହିଁ । ସୃଷ୍ଟିରେ ବୈଚିତ୍ର୍ୟ ଅନିବାର୍ଯ୍ୟ । ସେମିତି ଏକ ନିଆରା ମଣିଷ ହେଉଛନ୍ତି ଡକ୍ଟର କୃଷ୍ଣଚରଣ ବେହେରା । ସେ କେବଳ ଲେଖକ ବା ପାଠକ ନୁହନ୍ତି । ସେ ଜଣେ ଗବେଷକ, ସଂଗଠକ, ଛାତ୍ରବତ୍ସଳ, ଭଲ ଶିକ୍ଷକ ଓ ଉପକାରୀ ବ୍ୟକ୍ତିତ୍ୱ । କିଏ ଜୀବିକା ନିର୍ବାହ ପାଇଁ ଚାକିରି ଖଣ୍ଡେ ପାଉନି, କେଉଁ ଝିଅ ପାଇଁ ବରପାତ୍ରଟି ମିଳୁନି, କେଉଁ ମେଧାବୀ ଛାତ୍ର ପାଇଁ ଅର୍ଥ ପ୍ରତିବନ୍ଧକ ହେଉଛି ସେମାନଙ୍କ ପାଇଁ ସେ ସାହାଯ୍ୟର ହସ୍ତ ପ୍ରସାରିତ କରି ଦେଉଥିଲେ । ଯେଉଁମାନେ ତାଙ୍କ ନିର୍ଦ୍ଦେଶନାରେ ଗବେଷଣା କରୁଥିଲେ ସେମାନଙ୍କ ପାଇଁ ସେ ଥିଲେ ସାହିତ୍ୟର ଏନ୍‌ସାଇକ୍ଲୋପେଡିଆ ।

ଡ. କ୍ଷେତ୍ରବାସୀ ନାୟକ ଥିଲେ ତାଙ୍କର ପ୍ରଥମ ଗବେଷଣାର ଛାତ୍ର । ସେ କେତେ ନିଷ୍ଠାପର ମୁଁ ସେଇ ଦିନରୁ ତାଙ୍କୁ ଜାଣେ । ପ୍ରତ୍ୟେକ ସପ୍ତାହରେ ଖଣ୍ଡେ ପୋଷ୍ଟକାର୍ଡ ଚିଠି ଆସେ । ସେଥିରେ ଲେଖାଥାଏ, 'ତମ ଗବେଷଣା କାର୍ଯ୍ୟ କେତେଦୂର ଗଲା ? ଆଶା କରୁଛି କାର୍ଯ୍ୟ କିଛି ଆଗେଇ ଥିବ ।" ପରେ ମଧ୍ୟ ତାଙ୍କର ଭରସା ହୁଏ ନାହିଁ । ଆମେ ସେତେବେଳେ ବ୍ରହ୍ମପୁରରେ ଥିଲୁ । ମାସେ ଦୁଇମାସ ବ୍ୟବଧାନରେ ନିଜେ ଯାଇ ଆମ ଘରେ ପହଞ୍ଚି ଯାଆନ୍ତି । କାମ ଆଗେଇଛି କି ନାହିଁ ତାହାର ସତ୍ୟତା ସ୍ୱଚକ୍ଷୁରେ ଦେଖି ଜାଣିବା ପାଇଁ ।

ଏହାର କିଛିଦିନ ପରେ ମୁଁ ଗବେଷଣା କରିବା ପାଇଁ ତାଙ୍କୁ ନିର୍ଦ୍ଦେଶକ ଭାବରେ ଗ୍ରହଣ କଲି । କେବଳ ନିର୍ଦ୍ଦେଶକ ସେ ନଥିଲେ । ଯେକୌଣସି ସାରସ୍ୱତ କାର୍ଯ୍ୟ କଲାବେଳେ ଟିକିଏ କେଉଁଠି ଝୁଣ୍ଟି ପଡ଼ିଲେ ସଙ୍ଗେ ସଙ୍ଗେ ହାତ ଆଗେଇଯାଏ

ସାରଙ୍କ ପାଖକୁ । ସାର ଯଦି କହନ୍ତି ଏହା ଠିକ୍ ତେବେ ମନ ଆଶ୍ୱସ୍ତ ହୁଏ । ସନ୍ଦେହ ଦୂର ହୋଇଯାଏ । ଆସ୍ତେ ଆସ୍ତେ ଏଇ ଗୁରୁବାଦ ମୋର ଗୋଟାଏ ଅଭ୍ୟାସ ହେଇଗଲା ।

ଥରେ ତାଙ୍କର ଛାତ୍ରକୁ ଲକ୍ଷ୍ୟ କରି ସେ କଥା ପ୍ରସଙ୍ଗରେ କହିଲେ ଗୁରୁଙ୍କ ଉପରେ ଆସ୍ଥା ଓ ବିଶ୍ୱାସ ରଖିବା ଉଚିତ । ତା' ଅର୍ଥ ନୁହେଁ ଗୁରୁ ପ୍ରଦର୍ଶିତ ପଥର ଟ୍ରାକ୍‌କୁ ମାନି ତାରି ଭିତରେ ରହିବ । ଏହାଦ୍ୱାରା ଛାତ୍ରର ଦୃଷ୍ଟି ପ୍ରସାରିତ ହୋଇପାରିବି ନାହିଁ ଓ ନିଜର ମୌଳିକ ଚିନ୍ତାଶକ୍ତି ଜାଗ୍ରତ ହେବ ନାହିଁ । ସାର ତାଙ୍କ ମତ ଓ ମନ୍ତବ୍ୟ ପ୍ରକାଶ କରିବାରେ ସର୍ବଦା ନିର୍ଭୀକ ଓ ସ୍ପଷ୍ଟବାଦୀ । ତାଙ୍କ ମତକୁ କେହି ବିରୋଧ କଲେ ତାଙ୍କର ଦୁଃଖ ନାହିଁ କିମ୍ବା ମତ ପରିବର୍ତ୍ତନ କରିବାର ପ୍ରଶ୍ନ ନାହିଁ । ତାଙ୍କ ମତରେ ସେ ଅଟଳ । ତାଙ୍କ ରଚିତ 'ବେଦୀ' ଗଳ୍ପର ପ୍ରକାଶନ ଓ ପାଠକୀୟ ପ୍ରତିକ୍ରିୟା ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଏକ ଐତିହାସିକ ଘଟଣା । ନିଜର ମତ ପ୍ରକାଶବେଳେ ସେ କେବେ ଭାବନ୍ତି ନାହିଁ କିଏ ମନକଷ୍ଟ କରୁଛି କି ? ଯାହା ଉଚିତ ତାହା ସେ ବ୍ୟକ୍ତ କରିବେ । ମୋ ଗବେଷଣା ନିବନ୍ଧ ହାତଲେଖାରେ ୯ଶହ ପୃଷ୍ଠା ହୋଇଥିଲା । ପ୍ରାୟ ୭୫ ଭାଗ ଲେଖା ଶେଷ କରିବା ପରେ ସେ ନିବନ୍ଧର ଗୋଟିଏ ଅଂଶ ଦେଖି ମନ୍ତବ୍ୟ ଦେଲେ, "ଏମିତି କ'ଣ କଲ ? ହାତୀକୁ ହୋମିଓପାଥିକ ଔଷଧରୁ ଗୋଟିଏ ବଟିକା ଦେଲା ପରି ଲେଖିଦେଲ । ଏହାର ବିସ୍ତୃତ ଆଲୋଚନା କର । ଏପରି ଲେଖିଲେ ତମେ ଆଉ କାହାକୁ ନିର୍ଦ୍ଦେଶକ ଭାବରେ ଗ୍ରହଣ କରିପାର । ମୋର କୌଣସି ଆପତ୍ତି ନାହିଁ ।" ସେ ନିର୍ଦ୍ଦେଶକ ନ ହେବା କଥା ଶୁଣି ସେଦିନ ମୋ ଆଖିରେ ଲୁହ ଢଳଢଳ ହୋଇଯାଇଥିଲା । ଏହାର କିଛିଦିନ ପରେ ଡଃ କ୍ଷେତ୍ରବାସୀ ନାୟକଙ୍କୁ କହିଲେ ଲାବଣ୍ୟର ପିଏଚ.ଡି ଥେସିସ୍‌କୁ ଡିଲିଟ୍ ପାଇଁ ଦାଖଲ କଲେ ଭଲ ହୁଅନ୍ତା, ତାହାହିଁ ହେଲା । ଏଇ ହେଉଛନ୍ତି ସମସ୍ତଙ୍କ ସାର ଡକ୍ଟର କୃଷ୍ଣଚରଣ ବେହେରା । ସେ ରାଗି ପାରନ୍ତି, ଆକ୍ଷେପ କରି କହି ପାରନ୍ତି କିନ୍ତୁ ସେସବୁ ଭିତରେ ଥାଏ ଶିକ୍ଷା ଦେବାର ମନୋଭାବ, ସ୍ନେହର ସ୍ପର୍ଶ ।

ସେ ଆଜି ନାହାନ୍ତି । ତାଙ୍କ ସହିତ ମୋର ୫୩ ବର୍ଷ ସଂପର୍କର ଅବସାନ ଘଟିଛି । କିନ୍ତୁ ସେ ମୋ ସହିତ ଓଡ଼ିଶାର ଅସଂଖ୍ୟ ଲେଖକ, ପାଠକ ତଥା ସାହିତ୍ୟିକମାନଙ୍କ ମଧ୍ୟରେ ଚିର ଜୀବିତ ରହିବେ । ●

ସାରସ୍ୱତ ନିଳୟ,
ଶ୍ରୀଅରବିନ୍ଦ ନଗର, ମଧୁପାଟଣା, କଟକ-୧୦

# ଅନନ୍ୟ ଅସାଧାରଣ

ବାସୁଦେବ ବାରିକ୍

ଡ. କୃଷ୍ଣଚରଣ ବେହେରା ଥିଲେ ଜଣେ ବିରଳ ବ୍ୟକ୍ତିତ୍ୱ; ଏତେ ବିରଳ ଯେ ସରଳତା, ସୌହାର୍ଦ୍ଦ୍ୟ, ଆତିଥ୍ୟ ଓ ସୃଜନଶୀଳତା ଆଦି ଶବ୍ଦ ତା' ସହ ସାମିଲ ହେଇ ଏକ ଅଭିନବ ପ୍ରକ୍ରିୟା ସୃଷ୍ଟି କରିଛନ୍ତି । ତାଙ୍କ ଦେଖାରେ ଥାଏ ବନ୍ଧୁପଣ, ତାଙ୍କ କଥାରେ ଥାଏ ପ୍ରେରଣା ଓ ତାଙ୍କ ଆଲୋଚନାରେ ଥାଏ ଦିଗ୍‌ଦର୍ଶନ । ସାହିତ୍ୟ ଚାଷ ଭିତରେ ନିଜ ବଳିଷ୍ଠ ନେତୃତ୍ୱ ହିଁ ଅନେକଙ୍କୁ ଲେଖକ କରିଛି ଓ ତାଙ୍କ ଗବେଷଣା ମନ ଅନେକଙ୍କୁ ଗବେଷକ କରିବାରେ ସମର୍ଥ ହୋଇଛି । ସାହିତ୍ୟ ସେବା ପାଇଁ ସେ କେବଳ ଜନ୍ମ ନେଇଥିଲେ । କୃଷ୍ଣ ସାର୍‌ଙ୍କ ସହ ମୋ' ସମ୍ପର୍କ ଦୀର୍ଘ ପଚାଶ ବର୍ଷରୁ ଉର୍ଦ୍ଧ୍ୱ ହେବ । ଜଣେ ଅନୁଗତ ଛାତ୍ର ହିସାବରେ ମୋ' ସୃଜନ ଧାରାକୁ ସେ ତନ୍ନ ତନ୍ନ କରି ନିରୀକ୍ଷଣ କରିଛନ୍ତି ଏବଂ ମୋ' ସାହିତ୍ୟ-ଉତ୍ତରଣରେ ତାଙ୍କ ଅବଦାନ ଚିର ସ୍ମରଣୀୟ ହୋଇରହିବ ।

ଯେଉଁ ପ୍ରସଙ୍ଗଟି ଉତ୍‌ଥାପନ ନ କଲେ ମୋ' ସଂକ୍ଷିପ୍ତ ଆଲୋଚନା ଅସମ୍ପୂର୍ଣ୍ଣ ହେବ, ତା' ହେଲା ନିରପେକ୍ଷ ବିଚାର ପ୍ରତି ତାଙ୍କର ଅକୁଣ୍ଠ ସମର୍ଥନ । ତାଙ୍କ ଗଳ୍ପ ପୁସ୍ତକ 'ଆଦିକଳ୍ପ'ର ସମୀକ୍ଷା ଦାୟିତ୍ୱ ମୋ' ଉପରେ ନ୍ୟସ୍ତ କରାଯାଇଥିଲା । ମୁଁ ଏହାର ସମୀକ୍ଷା ଅବସରରେ ଗଳ୍ପଗୁଡ଼ିକର ବଳିଷ୍ଠ ଦିଗ ଉଲ୍ଲେଖ କରିବା ସଂଗେ ସଂଗେ କିଛି ଦୁର୍ବଳ ଦିଗ ସମ୍ବନ୍ଧରେ ସୂଚନା ଦେଇଥିଲି । ମୋର ଆଶଙ୍କାଥିଲା ସାର୍‌ଙ୍କୁ ଏହା ଅସନ୍ତୁଷ୍ଟ କରିପାରେ । କିନ୍ତୁ ଆଶ୍ଚର୍ଯ୍ୟର କଥା, ସାର୍ ଏଭଳି ସମୀକ୍ଷା ନିମିତ୍ତ ମୋତେ ଧନ୍ୟବାଦ ଜଣାଇଲେ ଫୋନ୍‌ରେ ଓ ଏହା ଅବିକଳ ଭାବେ 'ସାହିତ୍ୟପ୍ରାଣ କୃଷ୍ଣଚରଣ' ପୁସ୍ତକରେ ପ୍ରକାଶିତ ହେଲା । ଏଥିରେ ମୁଁ ଅଭିଭୂତ ହୋଇଛି । ସେ ଥିଲେ ଅନନ୍ୟ ଓ ଅସାଧାରଣ ।

ସାର୍‌ଙ୍କ ଅବର୍ତ୍ତମାନରେ ଅନେକ କଥା ଓ ବ୍ୟଥାରେ ମୁଁ ଏବେ ମର୍ମାହତ ।

ସେହି ମହାନ୍ ଆତ୍ମାଙ୍କ ପ୍ରତି ମୋ'ର ଗଭୀର ଶ୍ରଦ୍ଧାଞ୍ଜଳି । ●

ପ୍ରଗତିମାର୍ଗ, ପ୍ରାଚୀନଗର, ଭଦ୍ରକ

# ସ୍ମୃତିରେ ସଦା ସ୍ମରଣୀୟ

## ଅଧ୍ୟାପକ ବିଶ୍ୱରଂଜନ

ମୋର ଲେଖକ-ଜୀବନର ଉଷାକାଳରେ ହିଁ ତାଙ୍କ ସହିତ ସାକ୍ଷାତ୍-ସମ୍ବନ୍ଧ ଜଣେ କନିଷ୍ଠ ସହକର୍ମୀ ଭାବରେ । କ୍ଷେତ୍ର ଥିଲା ଓଡ଼ିଶାର ଶାନ୍ତିନିକେତନ ରୂପେ ବିବେଚିତ ସାଳନ୍ଦୀର ତଟଦେଶରେ ଅବସ୍ଥିତ ଭଦ୍ରକ ମହାବିଦ୍ୟାଳୟ । ମୁଁ ଥିଲି ରାଜନୀତି ବିଜ୍ଞାନର ତରୁଣ ଅଧ୍ୟାପକ, ଆଉ ସେ ଓଡ଼ିଆ ଭାଷା ସାହିତ୍ୟର ବିଭାଗୀୟ ମୁଖ୍ୟ, ପ୍ରବୀଣ ପ୍ରାଧ୍ୟପକ ତଥା ବିଶିଷ୍ଟ ସାରସ୍ୱତ ସାଧକ । ବହୁ ପୂର୍ବରୁ, କଲେଜରେ ପଢ଼ିବା ବେଳୁ ମୁଁ ତାଙ୍କୁ ଜାଣିଥିଲି ବହୁ ଚର୍ଚ୍ଚିତ ତଥା ଅଶ୍ଳୀଳତାର ଅଭିଯୋଗରେ ଅଭିଯୁକ୍ତ 'ବେଦୀ' ଗଳ୍ପର ସ୍ରଷ୍ଟା ଭାବରେ । ପଢ଼ିଥିଲି ମଧ୍ୟ । ମାତ୍ର ୧୯୭୦ର ଶେଷ ଭାଗରେ ଭଦ୍ରକ କଲେଜରେ ଯୋଗ ଦେବା ଫଳରେ ତାଙ୍କର ନିକଟ-ସାନ୍ନିଧ୍ୟ, ସ୍ନେହ-ସଦ୍‌ଭାବ ତଥା ସାରସ୍ୱତ ସହଯୋଗ ଓ ପ୍ରେରଣା ଲାଭ କରିବାର ସୌଭାଗ୍ୟ ଅର୍ଜନ କଲି ।

ହଁ, ପ୍ରଫେସର କୃଷ୍ଣଚରଣ ବେହେରା । ଧୀର, ନମ୍ର, ଅହଙ୍କାର ଶୂନ୍ୟ, ଉଦାର ତଥା ସଂବେଦନଶୀଳ । ନୂତନ ପ୍ରତିଭାକୁ ପ୍ରେରଣା ଦେବାରେ ସବୁବେଳେ ଆଗଭର । ଭଦ୍ରକ କଲେଜ ସେତେବେଳେ ଥିଲା ବହୁ ପ୍ରତିଷ୍ଠିତ କବି, କଥାକାର, ପ୍ରାବନ୍ଧିକ, ସମାଲୋଚକଙ୍କର ବିହାରସ୍ଥଳ । ସେମାନଙ୍କ ମଧ୍ୟରେ ଛାତ୍ରଛାତ୍ରୀମାନଙ୍କର ଅତ୍ୟନ୍ତ ପ୍ରିୟ, ପରମ ଆତ୍ମୀୟ ଭଳି ପ୍ରତିଭାତ ହେଉଥିଲେ ପ୍ରଫେସର କୃଷ୍ଣଚରଣ ବେହେରା । ସେତେବେଳେ ଅଧ୍ୟାପକମାନଙ୍କ ମଧ୍ୟରେ ଜଣେ ଉଦୀୟମାନ ଯୁବଲେଖକ ଭାବରେ ମୁଁ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ହେବା ଫଳରେ ସ୍ୱାଭାବିକ ଭାବରେ ପ୍ରଫେସର ବେହେରାଙ୍କ ସଶ୍ରଦ୍ଧ ଦୃଷ୍ଟି ଆକର୍ଷଣ କରି ପାରିଥିଲି । ଏବେ ସ୍ମୃତିର ସରଣୀରେ ଯାତ୍ରା କଲାବେଳେ ତାଙ୍କ ସହିତ ମୋର ବହୁ ଅନ୍ତରଙ୍ଗ ଅନୁଭୂତି ମୋତେ ସ୍ପନ୍ଦିତ କରୁଛି ।

ଭଦ୍ରକରେ ମୁଁ ସେତେବେଳେ ରହୁଥିବା ବାସଭବନରେ ମଝିରେ ମଝିରେ ଗଳ୍ପକବିତା ଆସର ଅନୁଷ୍ଠିତ ହେଉଥିଲା । ଏଭଳି ଆସରର ପ୍ରେରଣାଦାତା ଥିଲେ ଏବଂ ପ୍ରାୟ ପ୍ରତ୍ୟେକ ଆସରରେ ପୌରୋହିତ୍ୟ କରୁଥିଲେ ପ୍ରଫେସର ବେହେରା । ସବୁବେଳେ ଲକ୍ଷ୍ୟ କରିଛି, ସେ ସ୍ନେହଭାବରେ ଛଳଛଳ ଏବଂ ସର୍ଜନଶୀଳ । ନିଜର ପ୍ରିୟଛାତ୍ରମାନଙ୍କ ଜୀବନର ସୁଖଦୁଃଖ ସହ ନିଜକୁ ସାମିଲ୍ କରି ସେମାନଙ୍କୁ ସାହିତ୍ୟର ଯାତ୍ରାପଥରେ ହାତଧରି ବାଟ କଢ଼େଇବାରେ ସେ ଥିଲେ ଜଣେ ନିଷ୍ଠାପର ମାର୍ଗଦର୍ଶକ । ଅଧ୍ୟାପକ ଜୀବନରୁ ଅବସର ନେବାପରେ ମଧ୍ୟ ଜୀବନର ଅନ୍ତିମ ମୁହୂର୍ତ୍ତ ଯାଏ ଅନେକ ଛାତ୍ରଙ୍କ ସହିତ ତାଙ୍କର ନିବିଡ଼ ସଂପର୍କ ଅତୁଟ ରହିଥିଲା । ଭଦ୍ରକରୁ ମୁଁ ବିଦାୟ ନେବା ପରେ ପୁରୀରେ ଥିଲାବେଳେ ଅନେକଥର ସେ ପୁରୀ ଆସି ମୋର ଆତିଥେୟତା ଗ୍ରହଣ କରିଛନ୍ତି । ବାପାଙ୍କ ସହିତ ସଂପର୍କ ଯୋଡ଼ିଛନ୍ତି । ୧୯୬୭ ଡିସେମ୍ବରରେ ମୋ ବିବାହ ଉତ୍ସବରେ ଯୋଗଦେଇ ପାରି ନଥିଲେ ବି ଯେଉଁ ସ୍ନେହସିକ୍ତ ଚିଠିଟିଏ ଲେଖିଥିଲେ, ତାହା ଏବେ ମଧ୍ୟ ମୋ ଚିଠି ବାକ୍ସରେ ଅମୂଲ୍ୟ ସଂପତ୍ତି ଭାବରେ ସାଇତା ହୋଇରହିଛି । ଲେଖିଥିଲେ-

"ପ୍ରିୟତମ ବିଶ୍ୱରଂଜନ ବାବୁ, ପ୍ରଣତି ! ସେ 'ସୌଭାଗିନୀ' ଧନ୍ୟା, ଯେ ଆପଣଙ୍କ ସୌଭାଗ୍ୟ ସହିତ ଜଡ଼ିତ ହେବା ପାଇଁ ଆସୁଛନ୍ତି । ଜଣେ ଶିଳ୍ପୀର ସୌଭାଗ୍ୟ ତ ବିଶ୍ୱସମ୍ରାଟ୍‌ଙ୍କ ସୌଭାଗ୍ୟ ଭଳି । ତାଙ୍କର ସହଧର୍ମିଣୀ ହେବାପାଇଁ ଜଗତର ସବୁ ନାରୀଏ  କି ଭାଜନ ? ସ୍ଥୂଳ, ସାଧାରଣକୁ ସାଙ୍ଗରେ ଘେନି ବାଟଚାଲିବା ସହଜ । ଅଧିକାଂଶ ନାରୀଏ ତାହା ହିଁ କରିଥାଆନ୍ତି । କିନ୍ତୁ ସୂକ୍ଷ୍ମ ଅସାଧାରଣ ସହିତ ସଂସାର କରିବା ଯେ କାଠିକର ପାଠ ! ସେପରି ଦୁଃସାହସ କରିଥାଏ କେବଳ ସେହି ନାରୀ, ଯେ ପର୍ବତକନ୍ୟା ହୋଇ ଜନ୍ମିଥାଏ କିମ୍ବା ସାଗର ଜଳ ମଧ୍ୟରେ ଅଗ୍ନିଶିଖା ପରି ଝଟକୁ ଥାଏ । ଆମେ ସୌଭାଗିନୀଙ୍କୁ ସ୍ୱାଗତ କରୁଛୁ- ଅଭିନନ୍ଦିତ କରୁଛୁ ଆପଣଙ୍କର ଶିଳ୍ପୀ ଜୀବନର ଐହିକ ପରିପୂର୍ଣ୍ଣତାକୁ-

। ଇତି ।

ସ୍ନେହାନୁଗତ କୃଷ୍ଣଚରଣ ବେହେରା ।

ଜଣେ ତରୁଣ ଲେଖକ ପ୍ରତି ପ୍ରବୀଣର ଏଭଳି ସ୍ନେହ-ଶ୍ରଦ୍ଧା ଏବଂ ତାକୁ ସମାନ ମର୍ଯ୍ୟାଦା ଦେଇ ନିଜ ସହ ସମାନ ଆସନରେ ଆସୀନ କରେଇବାର

ମନୋଭାବ- ସତରେ, ବିରଳ ହୋଇପଡୁଛି ଏଭଳି ସଂପର୍କର ଧାରା । ମନେପଡୁଛି, କିଛି ବର୍ଷ ତଳେ ଭଦ୍ରକରେ ତାଙ୍କର ନେତୃତ୍ୱରେ ଆୟୋଜିତ ଏକ ସଭାକୁ ସେ ମୋତେ ମୁଖ୍ୟଅତିଥି ଭାବରେ ନିମନ୍ତ୍ରଣ କରିଥିଲେ ଏବଂ ମୋ ସହିତ ଯିବା ପାଇଁ ପତ୍ନୀ ସୌଭାଗିନୀଙ୍କୁ ସ୍ୱତନ୍ତ୍ର ଅନୁରୋଧ ପତ୍ର ଲେଖିଥିଲେ । ଫଳରେ ସାହିତ୍ୟ ସଭା ପ୍ରତି ବିଶେଷ ଆଗ୍ରହ ରଖୁ ନଥିବା ମୋର ପତ୍ନୀ ମଧ ମୋ ସହିତ ଯାଇଥିଲେ, ଯାହା କୃଷ୍ଣସାର୍‌ଙ୍କୁ ବିଶେଷ ଆନନ୍ଦ ଦେଇଥିଲା ।

ମୋର ସୌଭାଗ୍ୟ, ମୋର ପ୍ରଥମ ଗଳ୍ପ ପୁସ୍ତକ 'କାଚକଣ୍ଢେଇ'ର ଏକ ସ୍ୱତନ୍ତ୍ର ଆଲୋଚନା ଲେଖି ସେତେବେଳେ କଲିକତାରୁ ପ୍ରକାଶିତ 'ନବରବି'ରେ ତାହା ପ୍ରକାଶ କରିଥିଲେ । "ଲେଖକର ବ୍ୟକ୍ତିସତ୍ତା ଓ ସୃଷ୍ଟିସମ୍ଭାର' ଶୀର୍ଷକ ତାଙ୍କର ଏହି ଆଲୋଚନାଟି ଥିଲା ମୋର ଗାଳ୍ପିକ ଜୀବନ ପ୍ରତି ପ୍ରେରଣା ବର୍ତ୍ତିକା । ଲେଖିଥିଲେ- "ଶ୍ରୀ ବିଶ୍ୱରଂଜନ ଉଭୟେ କବି ଓ ଗାଳ୍ପିକ । ତେଣୁ ତାଙ୍କର ରଚନା ମଧ୍ୟରେ ଗଳ୍ପ ଓ କବିତାର ଗତି ଓ ଛନ୍ଦର ଚମତ୍କାର ସମବାୟ ସ୍ଥାପିତ ହୋଇପାରିଛି । ଏହି ପରୀକ୍ଷାକୁ ନିଷ୍ଠାପର ଭାବରେ ଚଳାଇଗଲେ ଭବିଷ୍ୟତରେ ସେ ଆହୁରି ସିଦ୍ଧି ଲାଭ କରିବେ ଏବଂ ଆମ ସାହିତ୍ୟ କ୍ଷେତ୍ରରେ ଏକ ନୂତନ ବିଭାବ ପ୍ରତିଷ୍ଠିତ କରିପାରିବେ ।"

ମୋ ସାରସ୍ୱତ ଜୀବନର ସ୍ମୃତି-କଥାରେ ପ୍ରଣମ୍ୟ ପ୍ରେରଣା-ପୁରୁଷ ଭାବରେ ପ୍ରଫେସର କୃଷ୍ଣଚରଣ ସଦା ସ୍ମରଣୀୟ ହୋଇ ରହିଛନ୍ତି ଓ ରହିଥିବେ । ଜୀବନ ସାୟାହ୍ନରେ ଶୁଭକାନ୍ତ ଭଳି ପ୍ରଚଣ୍ଡ ପ୍ରତିଭାଧର ପୁତ୍ରର( ଯିଏ କେବଳ ବିଦେଶ ସେବାରେ ନୁହେଁ, ସାହିତ୍ୟ ସେବାରେ ମଧ ନିଜକୁ ସମର୍ଥ କରି ଗଢ଼ି ତୋଳିଥିଲା) ବିୟୋଗଜନିତ ଅବ୍ୟକ୍ତ ବେଦନାକୁ ଅସୀମ ଧୈର୍ଯ୍ୟର ସହ ସହ୍ୟ କରି ଶେଷ ମୁହୂର୍ତ୍ତଯାଏଁ ସେ ଯେଭଳି ଉଭୟ ସର୍ଜନା ଏବଂ 'ଏଷଣା'ରେ ନିଜକୁ କ୍ରିୟାଶୀଳ କରି ରଖିଥିଲେ, ତାହା କମ୍ ସାଧନାର କଥା ନୁହେଁ । ଏହିଭଳି ଜଣେ ନୀରବ, ନିରଳସ, ନିଷ୍ଠାପର ସାରସ୍ୱତ ସାଧକଙ୍କ ସ୍ମୃତିରେ ମୋର ଶତକୋଟି ପ୍ରଣାମ ।



ନେତାଜୀ ନିବାସ, ୧୯୯, କଂସାରିଝର
ୟୁନିଟ୍-୬, ଭୁବନେଶ୍ୱର-୧

# କୃଷ୍ଣଚରଣ : ଅସରନ୍ତି ବର୍ତ୍ତମାନ

## ଗୋବିନ୍ଦ ଭୂୟାଁ

ଡକ୍ଟର କୃଷ୍ଣଚରଣ ବେହେରା ଚାଲିଗଲେ; ତାଙ୍କୁ ୮୬ ଚାଲିଥିଲା । ଓଡ଼ିଶାର ସାହିତ୍ୟ, ସଂସ୍କୃତି ଓ ଶିକ୍ଷାଜଗତରେ ସେ ଥିଲେ ଏକ ଉଚ୍ଚା ଉଚ୍ଚାରଣ; ଅନ୍ୟମାନଙ୍କ ଭିତରେ ଉଜ୍ଜ୍ୱଳ ଉଦାହରଣ । ଭଦ୍ରକ ଜିଲ୍ଲାର ଅର୍ଜୁନବିନ୍ଧା ଗ୍ରାମରେ ଏକ ଅତି ସାଧାରଣ ପରିବାରରେ ସେ ଜନ୍ମଗ୍ରହଣ କରିଥିଲେ । ବାଲ୍ୟକାଳରୁ ନାନା ପ୍ରତିକୂଳ ପରିସ୍ଥିତିକୁ ଅତିକ୍ରମ କରି ଅଦମ୍ୟ ଇଚ୍ଛାଶକ୍ତି ଓ ନିରବଚ୍ଛିନ୍ନ ନିଷ୍ଠାବଳରେ ସେ ନିଜ ବାଗରେ ନିଜକୁ ଗଢ଼ିଥିଲେ । ଶିକ୍ଷକ ଭାବରେ, ସାହିତ୍ୟିକ ଭାବରେ, ଜଣେ ମୂଲ୍ୟବୋଧର ମଣିଷ ଭାବରେ ସେ ଶୀର୍ଷକୁ ସ୍ପର୍ଶ କରିଥିଲେ । ଅନ୍ୟ ସମସ୍ତଙ୍କ ପରି ତାଙ୍କ ମରଶରୀର ଏବେ ମାଟିରେ ମିଶିଗଲା, ହେଲେ ନିଜର ସମୃଦ୍ଧ ସାରସ୍ୱତ କୀର୍ତ୍ତି-ସଂପଦ ନିମନ୍ତେ ସେ ଜାତି ପାଖରେ ଖୁବ୍ ଲମ୍ବାକାଳଯାଏ ଅସରନ୍ତି-ବର୍ତ୍ତମାନ ରୂପରେ ପ୍ରଭାଦୀପ୍ତ ହୋଇରହିବେ; ଅତୀତ ମନେହୁଏ ତାଙ୍କପାଇଁ କେବେ ବି ଆସିବ ନାହିଁ ।

ସେ ଓଡ଼ିଆ ଭାଷା-ସାହିତ୍ୟରେ ଜଣେ ଉଚ୍ଚକୋଟିର ଅଧ୍ୟାପକ ଥିଲେ । ଶିକ୍ଷାଦାନକୁ ବୃତ୍ତି ନୁହେଁ, ସେ ବ୍ରତଭାବରେ ବିଚାର କରୁଥିଲେ । ଜଣେ ସଫଳ ଅଧ୍ୟାପକ ହେବାପାଇଁ ନିରନ୍ତର ନିଘଞ୍ଚ ଅଧ୍ୟୟନର ଉପଯୋଗିତା ସେ ମର୍ମେମର୍ମେ ବୁଝିଥିଲେ ଏବଂ ତମାମ ଜୀବନ ଜ୍ଞାନ-ଅନ୍ୱେଷାରେ ନିବିଷ୍ଟ ଥିଲେ । ଉଭୟ ପ୍ରାଚୀନ ଓ ଆଧୁନିକ ସାହିତ୍ୟରେ ତାଙ୍କର ରୁଚି ଓ ବ୍ୟୁତ୍ପତ୍ତି ଥିଲା ଏବଂ ସେ ପ୍ରଚୁର ଭାବରେ ଇଂରାଜୀ, ବଙ୍ଗଳା ସମେତ ଅନ୍ୟାନ୍ୟ ପ୍ରାନ୍ତୀୟ ସାହିତ୍ୟ ଅଧ୍ୟୟନ କରୁଥିଲେ । ଭାରତବର୍ଷର ସେତେବେଳର ପ୍ରମୁଖ ବିଶ୍ୱବିଦ୍ୟାଳୟ ବିଶ୍ୱଭାରତୀରେ ସେ ଏମ୍.ଏ. ପଢ଼ିଥିଲେ । ସେଠାରେ ୧୯୫୨ ଓ ୫୩ ଦି'ବର୍ଷର ରହିଣି ଭିତରେ ସେ ବିଷୟଗତ ପାଠ୍ୟ ଆହରଣ ସହିତ, ସେଠାକାର ସୁବିସ୍ତୃତ ଶୈକ୍ଷିକ ପରିବେଶରୁ ଭରପୂର ସୁଯୋଗ

ନେବାରେ ପ୍ରତ୍ୟେକଟି ମୁହୂର୍ତ୍ତକୁ ଉପଯୋଗ କରୁଥିଲେ । ସେଠାରେ ଆଧୁନିକ ବିଶ୍ୱର ଜ୍ଞାନ-ବିଜ୍ଞାନର ବିକାଶ ଓ ବିସ୍ଫୋରଣ ସହିତ ତାଙ୍କର ମିତ୍ରତା ଘଟିଥିଲା ଏବଂ ସମାଜ-ସାହିତ୍ୟ-ସଂସ୍କୃତି ଓ ଜୀବନକୁ ନେଇ ତାଙ୍କର ଦୃଷ୍ଟି ଓ ଦର୍ଶନ ସଂପ୍ରସାରିତ ହୋଇଥିଲା । ପରବର୍ତ୍ତୀ କାଳରେ ତାଙ୍କ ବ୍ୟକ୍ତି ଜୀବନରେ ଓ ସାରସ୍ୱତ ଜୀବନରେ ସେଗୁଡ଼ିକର ସଫଳ ପ୍ରତିଫଳନ ଘଟିଛି । ମୁକ୍ତିର ସ୍ୱର, ମାନବବାଦର ଜୟଗାନ ଓ ମହାଜାତୀୟତାର ଭାବ ତାଙ୍କ ଗଳ୍ପ ଓ କବିତା ଆଦି ସର୍ଜନ କର୍ମର ମୁଖ୍ୟ ଆଧାର ପାଲଟିଛି । ତାଙ୍କ ବିଚାରରେ ମାନବବାଦ ହେଉଛି ଆଧ୍ୟାତ୍ମିକତା । ଜଗନ୍ନାଥ ସଂସ୍କୃତିରେ ସେ ଅବଗାହୀ; ମାତ୍ର ମନ୍ଦିରରେ ଅଣହିନ୍ଦୁ ପ୍ରବେଶ ବାରଣକୁ ସେ ନାପସନ୍ଦ କରୁଥିଲେ ।

ସେ ଭାରି ଖୋଲାଲୋକ ଥିଲେ, କୌଣସି ଆଳ ବା ଛଳ ତାଙ୍କୁ ଜଣା ନଥିଲା । ସ୍ନେହୀ, ସରଳ, ସ୍ପଷ୍ଟବାଦୀ ମନ ଓ ପ୍ରଶସ୍ତ ଚିନ୍ତନ ଭିତରେ ସେ ବଂଚୁଥିଲେ । ସେ ଖୁବ୍ ସ୍ୱାଭିମାନୀ ଥିଲେ । ସାହିତ୍ୟ ସର୍ଜନା ଓ ସାହିତ୍ୟ ସଂଗଠନ ଥିଲା ତାଙ୍କର ପ୍ରାଣ, ତାଙ୍କର ସମଗ୍ର ସଂସାର । ତା'ରି ଭିତରେ ସେ ମଗ୍ନ ରହୁଥିଲେ, ମୁଗ୍ଧ ହେଉଥିଲେ । ଓଡ଼ିଆ ସାହିତ୍ୟର ବିକାଶ ଓ ବିସ୍ତାରପାଇଁ ଗବେଷଣାକର୍ମ ଉପରେ ସେ ଗୁରୁତ୍ୱ ଦେଉଥିଲେ ଏବଂ ସେହି ଲକ୍ଷ୍ୟରେ ସେ ପ୍ରତିଷ୍ଠା କରିଥିଲେ 'ଓଡ଼ିଆ ଗବେଷଣା ପରିଷଦ' । ଏବଂ ଅନୁଷ୍ଠାନର ମୁଖପତ୍ର ଭାବରେ ତାଙ୍କ ସଂପାଦନାରେ ପ୍ରକାଶ ପାଉଥିଲା 'ଏଷଣା' ପତ୍ରିକା । ଓଡ଼ିଆ ଭାଷାରେ ଗବେଷଣାଧର୍ମୀ ସାହିତ୍ୟ ପତ୍ରିକା ଭାବରେ 'ଏଷଣା'ର ସ୍ଥାନ ସ୍ୱତନ୍ତ୍ର ।

ପୂର୍ବରୁ ତାଙ୍କର ପତ୍ନୀ ବିୟୋଗ ଘଟିଥିଲା ଓ ତାହା ସେ ସହି ନେଇଥିଲେ । ହେଲେ ଭାରତୀୟ ବିଦେଶ ସେବାରେ ବରିଷ୍ଠ ଅଧିକାରୀ ଭାବରେ କାର୍ଯ୍ୟ କରୁଥିବା କନିଷ୍ଠପୁତ୍ର ସୁସାହିତ୍ୟିକ ଶୁଭକାନ୍ତର ଅକାଳ ଦେହାନ୍ତପରେ ୪ବର୍ଷ ହେଲାଣି ଉପରକୁ ଠିକ୍‌ଠାକ୍ ରହିବାକୁ ସର୍ବଦା ସେ ଯୁଝୁଥିଲେ ହେଁ ଭିତରର କୃଷ୍ଣଚରଣ ନିଥର, ନିସ୍ତରଙ୍ଗ ଶିଥିଳ ହୋଇଯାଇଥିଲେ । ଭିତରୁ ସବୁ ସରାଗ ଶୁଖି ଯାଇଥିଲା, ସବୁ ଆବେଗ ମରିଯାଇଥିଲା । ମନେହୁଏ ତାଙ୍କର ସୃଜନସାମର୍ଥ୍ୟ ପଡ଼ିଯାଇଥିଲା । ୨୦୧୬ ଏପ୍ରିଲରେ ଜାନକୀବଲ୍ଲଭ ପଟ୍ଟନାୟକଙ୍କର ପ୍ରଥମବାର୍ଷିକ ଶ୍ରାଦ୍ଧପାଇଁ ପ୍ରକାଶପାଉଥିବା ସ୍ମୃତିଗ୍ରନ୍ଥରେ ଲେଖାଟିଏ ଦେବେ ବୋଲି ନିଜଆଡୁ ଇଚ୍ଛା ପ୍ରକାଶ କରିଥିଲେ । ଶେଷରେ କହିଲେ ନା, ଗୋବିନ୍ଦ; ମୁଁ ଚେଷ୍ଟା କରୁଛି, ପାରୁନାହିଁ ।

ଜୁଲାଇ ୨୯ ତାରିଖରେ, ମୁହଁ ସଂଜବେଳେ, ସତୀଚଉରା ଶ୍ମଶାନଘାଟରେ ଓଡ଼ିଶାର ବହୁ ଜଣାଶୁଣା ସାହିତ୍ୟିକ ଓ ସଜ୍ଜନଙ୍କ ଗହଣରେ ମୁଁ ତାଙ୍କୁ ପାଦଛୁଆଁ ଶେଷ ପ୍ରଣାମ ଜଣାଇଲି । ଠିକ୍ ଚାଳିଶବର୍ଷ ତଳେ, ଏଇ ଜୁଲାଇରେ, ୧୯୭୭ ମସିହାରେ, ତାଙ୍କ ସହ ମୋର ସଂପର୍କ ଯୋଡ଼ି ହୋଇଥିଲା ରେଭେନ୍‌ସା କଲେଜରେ; ମୁଁ ଏମ୍.ଏ. ଶ୍ରେଣୀର ଛାତ୍ର ଓ ସେ ମୋର ଅନ୍ୟତମ ସ୍ମରଣୀୟ ଗୁରୁ । ୧୯୯୦ ମସିହାରେ ପ୍ରବନ୍ଧ ସାହିତ୍ୟରେ ଡକ୍ଟରେଟ୍ କଲାବେଳେ ସେ ଥିଲେ ମୋର ଗାଇଡ୍ । ବର୍ଷବର୍ଷ ଧରି ଖୁବ୍ ନିକଟରୁ ତାଙ୍କୁ ଦେଖିଛି, ପଢ଼ିଛି । ତାଙ୍କ ବ୍ୟକ୍ତିତ୍ୱର ଉଚ୍ଚତାରେ, ପ୍ରଶସ୍ତତାରେ, ଗଭୀରତାରେ ମୁଗ୍ଧ ଓ ଅଭିଭୂତ ହୋଇଛି । ତାଙ୍କ ପରି ଭଲ ମଣିଷ ଓ ନିଦା ଅଧ୍ୟାପକ ମନେହୁଏ ଏବେ ଆଉ ନାହାନ୍ତି ।



'ଶକୁନ୍ତଳା', ମହାନଦୀବିହାର, କଟକ

# କୃଷ୍ଣଚରଣ-ତର୍ପଣ

## ଗିରିବାଳା ମହାନ୍ତି

୧୯୬୮ ମସିହା । ଏପ୍ରିଲ ମାସ । ଭଦ୍ରକ କଲେଜ । ମୋର ବିଏ ପରୀକ୍ଷା ଚାଲିଥାଏ; କେତେଟା ପେପର ସରିଛି, ଆଗକୁ କେତେଟା ପେପର ବାକି ଅଛି । କୃଷ୍ଣ ସାର୍ ତାଙ୍କ ସରକାରୀ ବସା ଘରକୁ ମୋତେ ଡକାଇ ପଠାଇଲେ । ପଚାରିଲେ, 'ଏ ବର୍ଷ ପ୍ରଜାତନ୍ତ୍ର ପୁରସ୍କାର ତୁମକୁ ମିଳିବ । ବିଷୁବକୁ ଯାଉଛ ତ ?' 'ମୋର ପରୀକ୍ଷା ଚାଲିଛ; ଯିବି କିମିତି ?'

'ଯିମିତି ହଉ ଯାଅ ।' ସାରଙ୍କ ସ୍ୱରରେ ଅନୁଜ୍ଞା । 'ଆରେ ମୋତେ ମହତାବ ବାବୁ ଟ୍ରଙ୍କକଲ କରିଥିଲେ । ପ୍ରସଙ୍ଗ କ୍ରମେ ପଚାରିଲେ ଏଥର ଭଦ୍ରକ କଲେଜର ଦି'ଜଣ ଝିଅ ପ୍ରଜାତନ୍ତ୍ର ପୁରସ୍କାର ପାଉଛନ୍ତି । ଆସୁଛନ୍ତି କି ନାହିଁ ତାଙ୍କୁ ପଠାଅ । ସୁନନ୍ଦା ଯାଉଛିକି ନାହିଁ ?'

ସୁନନ୍ଦା ପାଣିଗ୍ରାହୀ, ସୁନାମଧନ୍ୟ । ଶ୍ରୀ ନୀଳମାଧବ ପାଣୀଗ୍ରାହୀଙ୍କ ଝିଅ, ଇଂରାଜୀ ଅନର୍ସରେ ପଢୁଥିବା ମୋର ଘନିଷ୍ଠ ବାନ୍ଧବୀ 'ସୁନ୍‌ନାନୀ' – 'ଆମେ ଦିହେଁ ଯିବୁ ନାହିଁ । କାରଣ ତା ବାପା ବି ମନା କରିଛନ୍ତି ପରୀକ୍ଷା ମଝିରେ ନ ଯିବା ପାଇଁ ।' ସାରଙ୍କୁ କିହିଲି । ସାର୍ ଉତ୍ତର ଦେଲେ 'ମୁଁ ତା ବାପାଙ୍କ ସହ କଥା ହେବି ।'

ଯଥା ସମୟରେ ସାର୍ ବ୍ୟବସ୍ଥା କରିଦେଲେ । ସୁନନ୍ଦା ଓ ମୁଁ, ଆମେ ଦିହେଁ ବିଷୁବ ମିଳନକୁ ଗଲୁ । ପୁରସ୍କାର ସଭା ପରେ ଅବସର ଦେଖି ପ୍ରଣମ୍ୟ ମହତାବ ବାବୁଙ୍କ ପାଦ ଛୁଇଁଲି । କୃଷ୍ଣ ସାର ଯାହା ଦବାକୁ ଦେଇଥିଲେ ଦେଲି । ମୋର ପୂର୍ବକୃତ ପରମ ସୌଭାଗ୍ୟ ହେତୁ ବା କୃଷ୍ଣ ସାରଙ୍କ ଆଶୀର୍ବାଦରୁ ମହତାବ ବାବୁ ବଡ଼ ଖୁସି ହୋଇ ମୋ ମୁଣ୍ଡରେ ହାତ ରଖିଲେ ଓ କହିଲେ, 'ତୁହି ଗିରିବାଳା ମହାନ୍ତି ! ବଡ଼ ହ !'

ଆଶୀର୍ବାଦରେ ଅବଗାହନ କଲାପରି ସେ ଦିନ ବୋଧ କରିଥିଲି – କିନ୍ତୁ ସବୁ

କୃଷ୍ଣ ସାର୍‌ଙ୍କ ମହାନତା ହେତୁ । ନଚେତ ସେହି ସମୟ, ସେହିଦିନ ଓ ସେହି ବୟସରେ ମୋର ପ୍ରଜାତନ୍ତ୍ର-ପୁରସ୍କାର, ବିଷୁବ ମଞ୍ଚରେ ହାତେ ହାତେ ଗ୍ରହଣ, ଶ୍ରୀହର୍ଷ ମିଶ୍ରଙ୍କ ଦର୍ଶନ, ବିଷୁବ ମିଳନ ଦେଖା, ସର୍ବୋପରି ମହତାବ ବାବୁଙ୍କ ପରି ମହାପୁରୁଷଙ୍କର, ମୁହୂର୍ତ୍ତକର ହଉ ପଛେ, ସାନିଧ ଲାଭ ହୁଏତ ୧୯୭୧ ମସିହା ଯାଏ ପ୍ରତୀକ୍ଷା କରିଥାନ୍ତା (୧୯୭୧ ମସିହାରେ ଦ୍ୱିତୀୟ ଥର ପାଇଁ ପ୍ରଜାତନ୍ତ୍ର-ପୁରସ୍କାର ଲାଭ କରିଥିଲି, ବଲାଙ୍ଗୀର ଅଧିବେସନରେ) ।

ଏଇ ହେଲେ କୃଷ୍ଣ ସାର, ମୋର ଓ ମୋ ବଡ଼ ଭାଇ ଶ୍ରୀ ବାଞ୍ଛାନିଧି ମହାନ୍ତି, ଉଭୟଙ୍କର ଆଦର୍ଶ ସାର । ନମ୍ର, ମିତଭାଷୀ, ଶିକ୍ଷାବିତ୍, ଶିକ୍ଷାପ୍ରିୟ, ମୁହଁରେ ଆକଟ, ଭିତରେ ନରମ, ଅଧ୍ୟବସାୟୀ, ନିରଳସ ପଠନ - ପାଠନ - ଲେଖନରତ କୃଷ୍ଣ ସାର; ଯାହାଙ୍କ କଥା ଭାବିବା ମାତ୍ରେ ଆକୃତିଗତ କାରଣରୁ ସମ୍ଭବତଃ ଆବାଲ୍ୟ ଦେଖି ଆସୁଥିବା ଗୋଟିଏ ମୂର୍ତ୍ତି ମନେପଡ଼େ - ବାଲେଶ୍ୱରର ଶାନ୍ତି କାନନରେ ଫକୀରମୋହନଙ୍କ ସ୍ୱନିର୍ମିତ ମୂର୍ତ୍ତି - ଢିଲା ପ୍ୟାଣ୍ଟ, ଅବିନ୍ୟସ୍ତ କେଶ, ଜାନୁ-ପ୍ରଲମ୍ବ ହାତରେ ସଯତ୍ନ ବିଧୃତ ଖଣ୍ଡେ ଦିଖଣ୍ଡ ପୁସ୍ତକ । ମନେପଡ଼େ ବାଁ ଡାହାଣ ନଅନାଇ ଏକଲୟରେ ଭଦ୍ରକ କଲେଜର 'ଗ୍ୟାସ ଚାମ୍ବର' ପାଖ ସରୁ ରାସ୍ତାରେ ଆମ୍ବ ଗଛ ତଳ ଦେଇ ବସା ଘର ଆଡ଼କୁ ବା କଲେଜମୁଖ ମଟ୍ଟରେ ଗତିଶୀଳ ମୂର୍ତ୍ତି । ଅଚାନକ ମୁହାଁମୁହିଁ ହୋଇ ପ୍ରଣାମ କଲା ମାତ୍ରେ, ଧ୍ୟାନରୁ ଉଠି ଚାହିଁବା ପରି ଚକିତ ଭାବ ଓ ପରେ ଓଠରେ ଧାରେ ସହଜ ସ୍ମିତ । ଯେଉଁ ଶାନ୍ତିନିକେତନରେ ମୁଁ ଦିନେ ଆସି ପାଠ ପଢ଼ିଲି, କର୍ମ ରତ ହେଲି ଆଜିବି ଯେଉଁଠି ଅବସର ଜୀବନ ବିତାଉଛି, ସେଇଠି ଏକଦା କୃଷ୍ଣ ସାର ଛାତ୍ର ଥିଲେ । ଛପା କାମ ପାଇଁ କଲିକତା ଯାଇଯାଇ ପ୍ରଥମ ଓଡ଼ିଆ କବିତା ପତ୍ରିକାର 'କବିତା'ର ସଂପାଦନା କରୁଥିଲେ । '୫୪-ଭାନୁବାଈ ଲେନ୍', କି 'ଚା କପ୍ ରେ ଝଡ଼', କି 'କଥାସାହିତ୍ୟ'ର ଖସଡ଼ା ମନେମନେ କରୁଥିଲେ । ଭଦ୍ରକ କଲେଜରେ ମୁଁ ଏନ୍‌ସିସି ନେଇଥିବାରୁ, ଅଗଷ୍ଟ ମାସରେ ଗଣତନ୍ତ୍ର ଦିବସରେ ଦିଲ୍ଲୀ ଯାଇ ସ୍ୱାଧୀନତା ଦିବସ ପ୍ୟାରେଡ଼ରେ ଭାଗ ନେଇ ଅନର୍ସ କ୍ଲାସ 'ମିସ୍' କରିଥିବାରୁ ଛାତ୍ର ଫେଡ଼େରେସନ୍‌ରେ ସକ୍ରିୟ ଅଂଶ ଗ୍ରହଣ କରିଥିବାରୁ, ସ୍ୱଳ୍ପ ବାକ୍ୟରେ କଠୋର ଭାବେ ଏକାଧିକବାର ବିରକ୍ତ ହୋଇ ପାଠରେ ମନଯୋଗୀ ହେବା ପାଇଁ ତାଗିଦା କରୁଥିବା ସାର୍; ପୁଣି ଚାଲଥିବା ପରୀକ୍ଷା ମଝିରୁ ଯାଇ ପ୍ରଜାତନ୍ତ୍ର-ପୁରସ୍କାର ଆଣି ଯିବାର ବ୍ୟବସ୍ଥା କରି ଦଉଥିବା, ଆଉ ଅଗ୍ରଜ କି ପିତା ତୁଲ୍ୟ ତାଡ଼ନ ସହ ଲାଳନ

କରିବାର କୌଶଳ ଜାଣିଥିବା ସାର୍ ! ସଂସ୍କୃତ ସାହିତ୍ୟ, ପାଲି ସାହିତ୍ୟ, ପ୍ରାଚୀନ-ମଧ୍ୟ-ଆଧୁନିକ ଯୁଗର ସାହିତ୍ୟ ସଂପର୍କରେ ମୋର ଛାତ୍ର ଜୀବନର ଆଦ୍ୟ-ଆଗ୍ରହକୁ ଶାଣିତ କରିପାରିଥିବା, ଓଡ଼ିଆ ବିଭାଗର ବାର୍ଷିକ ସେମିନାରକୁ ମହାନ ସାହିତ୍ୟିକମାନଙ୍କୁ ଅମନ୍ତ୍ରଣ କରିଆଣି ଆମର ଜ୍ଞାନର ପରିସରକୁ ପରିବ୍ୟାପ୍ତ କରିଥିବା ସାର୍ ! ମୋର ଅନ୍ୟତମ ଶିକ୍ଷାଗୁରୁ !

ଶେଷଥର ଶାନ୍ତିନିକେତନ ଆସିଥାନ୍ତି । ଆମ ଘରକୁ ଡାକି ଆଣିଥାଉଁ । ନାନା ସାହିତ୍ୟ ବିଷୟକ କଥା ଭିତରେ କହିଲେ, 'ବହିଖଣ୍ଡେ ବାହାରିବ । ସୁଧୀର ତୁମ ଦିହିଁଙ୍କୁ ଚିଠି ଦେଇଚି କହୁଥିଲା ।' ସାରଙ୍କ ସାମଗ୍ରିକ ସାହିତ୍ୟ କୃତି ଉପରେ ପୁସ୍ତକଟିଏ ହବାକୁ ଯାଉଚି । ଚିଠି ଆମେ ପାଇ ଥିଲୁଁ । କବିତା ସଂପର୍କରେ ମୋର ଲେଖିବା ଦାୟୀତ୍ୱ । କହିଲି ଯେ ତାଙ୍କ କବିତା ବହି ସବୁ ଅମିଳ । କହିଲେ ଜେରକ୍ସ କରି ପଠାଇଦେବେ, ପଠାଇ ଦେଲେବି । ତାକୁ କ୍ରେନ୍ଦକରି ଲେଖିଥିଲି 'ଏଇ କବିଟିକୁ ଜାଣିଚ କି ?' ପଢ଼ି ଖୁସିହୋଇ ଫୋନ କରିଥିଲେ ।

ଗତ ୨୦-୨୨ ବର୍ଷଧରି ମାସେ ଦିମାସରେ ସାରଙ୍କ ସହ କଇଳାଶଙ୍କର ବା ମୋର ଫୋନ-କଥାବାର୍ତ୍ତା ହୁଏ । ଗତ ୨ ବର୍ଷ ଭିତରେ କିଛି କାରଣ ହେତୁ, କେବେ ବିନା କାରଣରେ, ଅସୁସ୍ଥ ସାରଙ୍କୁ ଭେଟିବାକୁ ପ୍ରାୟ ୪/୫ ଥର ଆମେ ଯାଇଚୁ । ଶେଷ ଭେଟ ସମ୍ଭବତଃ ଗତ ମେ'ମାସ, ଦେଖିଯାଇଥିଲୁ ତାଙ୍କୁ; ଅସୁସ୍ଥ ଥାଇବି ଉଠିଆସି ଡ୍ରଇଂରୁମରେ ବସି ଘଣ୍ଟେଗପକଲେ - ସବୁ ଗପ, ସବୁ କଥା ସାହିତ୍ୟ, ଏଷଣା, ଲେଖାଲେଖି ବିଷୟକ । ଦେହକଥା ନୁହଁ । ଶେଷଥର ସମ୍ଭବତଃ ସେଇ ମେ' ବା ଜୁନ୍ ରେ ଫୋନ୍ କରିଥିଲେ । ଦେହକଥା ପଚାରିଲା ମାତ୍ରକେ ଉତ୍ତର ଆସିଲା, 'ଦେହକଥା ଛାଡ଼ ତ ! ବା ନିଧି ମୋ ଅସୁସ୍ଥତା କଥା ଶୁଣି ଆସିଥିଲା । ବହୁତ ବର୍ଷପରେ । କୁହ, କ'ଣ ଲେଖିଲ ଏ ଭିତରେ ? କ'ଣ କରୁଚି କଇଳାଶ ? ଏଷଣା ପାଇଁ ଲେଖା ପଠାଉନ କାହିଁକି ?' ଢେର ସମୟ ଢେର କଥାହେଲା; ମାତ୍ର ଅସୁସ୍ଥତା କଥା ନାହିଁ । ସତେକି କାଳର କର୍ମକୁ ବା କଷଣକୁ ଉପେକ୍ଷାକରି ଆତ୍ମବିଶ୍ୱାସୀ ମଣିଷଟିଏ ଆତ୍ମବିଶ୍ୱାସର ଦମ୍ଭରେ ହିଁ ଜିଇଯାଉଚି ! ଆଶ୍ଚର୍ଯ୍ୟ ହେଇଥିଲୁ ମୁଁ ଓ କଇଳାଶ ।

ସାର୍ ଥିଲେ ସଂସାର-ଅଚତୁର, ପାଠ-ପାଗଳ, ପୁଣି ଛାତ୍ର-ଲାଳକ । ଭଦ୍ରକ କଲେଜର ଛାତ୍ରାବସ୍ଥାରୁ ଆଜିପର୍ଯ୍ୟନ୍ତ - ଦୀର୍ଘକାଳ ଭିତରେ ଏ ଧାରଣା ବଳବତ୍ତର

ହୋଇଛି ସିନା ,କମି ନାହିଁ! ଆମେ କେଇଜଣ ଅନର୍ସ ଛାତ୍ର ସାରଙ୍କ ଗବେଷଣା ନିବନ୍ଧକୁ ହାତରେ ଉତାରିବା ଅବସରରେ ସାର ଓ ମାଉସୀଙ୍କର ଘନିଷ୍ଠ ସାନିଧ୍ୟରେ ଆସିବାର ସୁଯୋଗ ମୁଁ ପାଇଥିଲି । ପାଇଥିଲି ବାହାର ଗମ୍ଭୀର ଭିତର ନରମ 'ନାରୀକେଳ ପାକ" ସାର ଙ୍କୁ ଚିହ୍ନିବାର ଅବକାଶ । ସମ୍ଭବତଃ ତାଙ୍କର ନାଟକ ପଢ଼ାଇବାର କଳା-କୌଶଳରେ ମୁଗ୍ଧ ମୋର ଅବଚେତନ ମୋତେ ନାଟକକୁ ସ୍ନାତକତ୍ତୋର ପାଠ୍ୟ କ୍ରମରେ ସ୍ୱତନ୍ତ୍ରପତ୍ର ଭାବରେ ପଢ଼ିବା ପାଇଁ ପ୍ରବର୍ତ୍ତାଇଥିଲା । ଥରେ ଫୋନ୍ ବାର୍ତ୍ତାଳାପରେ ଅଲକ୍ଷରେ ତାଙ୍କର ଏକା' ନିଭୃତ ମନ-କୋଠରୀର ଦୁଇଟି ଝଲକ ଦିଶିଯାଇ ଆମକୁ ମ୍ରିୟମାଣ କରିଦେଇଥିଲା - ଗୋଟିଏ ତାଙ୍କର ସାନ ପୁଅ ଯିବାର କିଛିକାଳ ପରର ଓ ଅପରଟି ସାରଙ୍କ ଦେହାନ୍ତର କେଇମାସ ପୂର୍ବର । ଏ ଝଲକ, ଏ ଅନୁଭୂତି ଏକାନ୍ତ ବ୍ୟକ୍ତିଗତ, ଏକାନ୍ତ ବିଷାଦକର ।

ମୋର ଭଦ୍ରକରେ ପାଠପଢ଼ା ଜୀବନରେ ଶାନ୍ତିନିକେତନ କୋଳ-ଲାଳିତ ଚାରିଜଣ ଶିକ୍ଷକଙ୍କୁ ପାଇଥିଲି । ଶ୍ରୀ ନରେନ୍ଦ୍ରମୋହନ ବେହେରା - ଶାନ୍ତିନିକେତନ ଓଡ଼ିଆ ବିଭାଗର ପ୍ରଥମ ବ୍ୟାଚର ଛାତ୍ର, ଶ୍ରୀମତୀ ବେଲାରାଣୀ ଚାନ୍ଦ - ଯାହାଙ୍କ ଠାରେ ବାଲେଶ୍ୱରର ସରକାରୀ ମହିଳା ମହାବିଦ୍ୟାଳୟରେ ମୁଁ ପାଠ ପଢ଼ିଥିଲି, କବି କମଳାକାନ୍ତ ଲେଙ୍କା ଓ କୃଷ୍ଣଚରଣ ବେହେରା । ପ୍ରଥମ ତିନିଜଣ ପୂର୍ବରୁ ମରଧାମ ଛାଡ଼ିଥିଲେ । ପୁଣି ଗତ ବର୍ଷକ ଭିତରେ ଶାନ୍ତିନିକେତନର ତିନିଜଣ ମହାପୁରୁଷଙ୍କର ମହାପ୍ରୟାଣ ଘଟିଲା - ନରେନ୍ଦ୍ର ନାଥ ମିଶ୍ର, ଖଗେସ୍ୱର ମହାପାତ୍ର ଓ ଏବେ ସାର୍ ଚାଲିଗଲେ - କୃଷ୍ଣଚରଣ ବେହେରା । ଏ ତିନି ମହା ପୁରୁଷଙ୍କର ଅନୁପସ୍ଥିତିରେ ଓଡ଼ିଆ ସାହିତ୍ୟରେ ତିନୋଟି ଅପୂରଣୀୟ ସ୍ଥାନ ସୃଷ୍ଟି ହୋଇଗଲା !

ଏଇ ଅବସରରେ ପରଲୋକଗତ ମୋର ସକଳ ଗୁରୁଙ୍କ ଆତ୍ମାକୁ ପ୍ରଣାମ ଜଣାଉଛି !

କୃଷ୍ଣ ସାର୍ ସ୍ୱର୍ଗରେ ଥାଇ ଆମକୁ ପଥ ପ୍ରଦର୍ଶନ କରିବେ ଏହା କଇଳାଶଙ୍କର ଓ ମୋର ବିଶ୍ୱାସ ଏବଂ ଦୟାମୟ ପରମେଶ୍ୱରଙ୍କଠାରେ ଆମର ପ୍ରାର୍ଥନା ସାରଙ୍କ ଅମର ଆତ୍ମା ଈଶ୍ୱର-ଲୋକରେ ଶାନ୍ତିରେ ଥାଉ !



ଡିଅାର ପାର୍କ, ଶାନ୍ତିନିକେତନ - ୭୩୧୨୩୫
(ପ.ବଙ୍ଗ)

# ମାନବୀୟ ଚେତନାର ସତ୍ତା

## ଉପେନ୍ଦ୍ର ପ୍ରସାଦ ନାୟକ

ଆମ ଚାରିପଟରେ ଖୁବ୍ ଅଳ୍ପଲୋକ ପରିଦୃଷ୍ଟ ହୁଅନ୍ତି, ଯେଉଁମାନେ ମାନବୀୟ ଚେତନାରେ ଉଦ୍‌ବୁଦ୍ଧ ହୋଇ ମଣିଷକୁ ଭଲପାଆନ୍ତି, ମାନବ ବନ୍ଦନା ପରିପ୍ରେକ୍ଷୀରେ ଯଥାର୍ଥ ମୂଲ୍ୟବୋଧ ଉପରେ ବିଶ୍ୱାସ ରଖି ସତ୍ୟ, ନ୍ୟାୟ, ଧର୍ମ ଉପରେ ଆସ୍ଥା ସ୍ଥାପନ କରି ଉଚିତ୍ ମାର୍ଗରେ ନିଜକୁ ଯଥାସମ୍ଭବ ଗତିଶୀଳ କରି ରଖିପାରନ୍ତି । ଏହିପରି ଜଣେ ବ୍ୟକ୍ତି ଥିଲେ ଡକ୍ଟର କୃଷ୍ଣଚରଣ ବେହେରା ।

ଡକ୍ଟର କୃଷ୍ଣ ଚରଣ ବେହେରା ଭଦ୍ରକ ଜିଲ୍ଲାର ତିହିଡ଼ିସ୍ଥ ଅର୍ଜୁନବିନ୍ଧା ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ପିତା- ପୀତାମ୍ବର ବେହେରା ଓ ମାତା- ପବିତ୍ରା ଦେବୀ । ମେଧାବୀ ଛାତ୍ର କୃଷ୍ଣଚରଣ ସ୍ନାତକ ଶିକ୍ଷା ଶେଷକରି ରବୀନ୍ଦ୍ରନାଥଙ୍କ ପ୍ରତିଷ୍ଠିତ ଶାନ୍ତିନିକେତନସ୍ଥ ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟରୁ ୧୯୫୨ ମସିହାରେ ଓଡ଼ିଆରେ ସ୍ନାତକୋତ୍ତର ଶିକ୍ଷା ଶେଷକରି ଆସି ଅଧ୍ୟାପନା ଜୀବନ ଆରମ୍ଭ କରିଥିଲେ । ସେତେବେଳେ ଭଦ୍ରକ ମହାବିଦ୍ୟାଳୟ ବେସରକାରୀ ମହାବିଦ୍ୟାଳୟ ହେଲେ ବି ଓଡ଼ିଶାର ଦ୍ୱିତୀୟ ବୃହତ୍ତମ କଲେଜ ଭାବେ ପ୍ରସିଦ୍ଧି ଲାଭ କରିଥିଲା । ଏହି କଲେଜର ଶିକ୍ଷା ପଦ୍ଧତି ଯେପରି ଉନ୍ନତ ଥିଲା, ଅଧ୍ୟାପକ ଅଧ୍ୟାପିକାମାନଙ୍କର ଶିକ୍ଷାଦାନ କ୍ଷେତ୍ରରେ ଯଥେଷ୍ଟ ଏକନିଷ୍ଠତା ଥିଲା । କୃଷ୍ଣଚରଣ ବେହେରା ସେହି ଭଦ୍ରକ କଲେଜରେ ଅଧ୍ୟାପକ ଭାବେ ଯୋଗଦାନ କଲେ । ସେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଓଡ଼ିଆ ଉପନ୍ୟାସ ଉପରେ ସନ୍ଦର୍ଭ ରଚନା କରି ପିଏଚ.ଡି. ଡିଗ୍ରୀ ହାସଲ କରିଥିଲେ । ଡକ୍ଟର ବେହେରା ହିଁ ଭଦ୍ରକ କଲେଜରେ ସେତେବେଳେ ପ୍ରଥମେ ପିଏଚ.ଡି. ଡିଗ୍ରୀ ଲାଭ କରିଥିଲେ ।

ଡକ୍ଟର ବେହେରାଙ୍କ ଶିକ୍ଷାଦାନ ପ୍ରଣାଳୀ ଯେପରି ଉନ୍ନତ ଥିଲା, ତାଙ୍କର ଛାତ୍ରବତ୍ସଳତା ମଧ୍ୟ ସେହିପରି ବେଶ୍ ସୁଦୂରପ୍ରସାରୀ ଥିଲା । ଛାତ୍ରଛାତ୍ରୀମାନଙ୍କୁ ସେ ନିଜର ପୁତ୍ରକନ୍ୟା ପରି ମନେକରୁଥିଲେ । ସେ ତା'ପରେ ଭଦ୍ରକ ମହାବିଦ୍ୟାଳୟରେ

ଓଡ଼ିଆ ବିଭାଗର ବିଭାଗୀୟ ମୁଖ୍ୟଭାବେ ଦାୟିତ୍ୱ ତୁଲାଇଲେ । ସେ ଓଡ଼ିଆରେ ବିଭାଗୀୟ ମୁଖ୍ୟ ଥିଲାବେଳେ ସେତେବେଳେ ସର୍ବଶ୍ରୀ ପିତାମ୍ବର ସ୍ୱାଇଁ, କବି କମଳାକାନ୍ତ ଲେଙ୍କା, ବେଲାରାଣୀ ଚାନ୍ଦ, ବୈଷ୍ଣବ ବଳ, ବ୍ରଜ କିଶୋର ଶତପଥୀ ଓ ନରେନ୍ଦ୍ର ସ୍ୱାଇଁ ପ୍ରମୁଖ ଅନ୍ୟାନ୍ୟ ଅଧ୍ୟାପକଅଧ୍ୟାପିକା ଥିଲେ । ସେତେବେଳେ ଭଦ୍ରକ କଲେଜରେ ବିଜ୍ଞାନ, କଳା ଓ ବାଣିଜ୍ୟ ଶ୍ରେଣୀ ଖୋଲା ଯାଇଥିଲା ଏବଂ ଖୁବ୍ ଭଲ ପଢ଼ାପଢ଼ି ବି ହେଉଥିଲା । ତେଣୁ ବିଶ୍ୱବିଦ୍ୟାଳୟ ପରୀକ୍ଷାରେ ମଧ୍ୟ ଭଦ୍ରକ କଲେଜର ଛାତ୍ରଛାତ୍ରୀମାନେ ଖୁବ୍ ଭଲ କରୁଥିଲେ । ସବୁବର୍ଷ ପ୍ରଥମ ୧୦ଜଣଙ୍କ ମଧ୍ୟରେ ଭଦ୍ରକ କଲେଜର ଛାତ୍ରଛାତ୍ରୀମାନେ ସ୍ଥାନ ଅଧିକାର କରୁଥିଲେ, ତେଣୁ ଓଡ଼ିଶାର ବିଭିନ୍ନ ଅଂଚଳରୁ ଛାତ୍ରଛାତ୍ରୀମାନେ ଆସି ନାମ ଲେଖାଉଥିଲେ । ସେହି ସମୟରେ ଡକ୍ଟର କୃଷ୍ଣ ଚରଣ ବେହେରା ବେଶ୍ ଏକ ସମ୍ମାନଜନକ ସ୍ଥାନରେ ଥିଲେ । ଏପରି ଏକ ସମୟ ଆସିଥିଲା ଯେଉଁ ସମୟରେ କଲେଜରେ ତତ୍କାଳୀନ ଅଧ୍ୟକ୍ଷ ବଳରାମ ସାହୁଙ୍କୁ କେନ୍ଦ୍ରକରି ଏକ ଗଣ୍ଡଗୋଳିଆ ପରିସ୍ଥିତି ଉପୁଜିଥିଲା । ତେଣୁ କଲେଜର ପରିଚାଳନା କମିଟିର କର୍ତ୍ତୃପକ୍ଷ ବଳରାମ ସାହୁଙ୍କୁ ଅଧ୍ୟକ୍ଷ ପଦରୁ ବିଦାୟ ଦେଇ ଡକ୍ଟର କୃଷ୍ଣଚରଣ ବେହେରାଙ୍କୁ ଅଧ୍ୟକ୍ଷ ଭାବେ ଅଧିଷ୍ଠିତ କରାଇଥିଲେ । କିନ୍ତୁ ଦୁଃଖର କଥା ବଳରାମ ସାହୁ ଅଧ୍ୟକ୍ଷ ପଦରୁ ନଯାଇ ମକଦ୍ଦମା କରି ନିଜର ଦଳବଳ ନେଇ ରହିବାକୁ ଚେଷ୍ଟା କଲେ । ଏଭଳି ଏକ ଅସ୍ୱାଭାବିକ ପରିସ୍ଥିତିରେ ଶାନ୍ତିପ୍ରିୟ, ସ୍ୱଚ୍ଛନ୍ଦମୟ ଜୀବନ ବିତାଉଥିବା ଡକ୍ଟର କୃଷ୍ଣଚରଣ ସେ ବିବାଦରେ ନ ପଶି ସ୍ୱତଃ ଅଧ୍ୟକ୍ଷ ପଦରୁ ଓହରି ଆସିଥିଲେ । ଏହି ଗଣ୍ଡଗୋଳକୁ ଭିତ୍ତି କରି କଲେଜଟି ସରକାରଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନକୁ ଗଲା ଏବଂ ତାହା ଏକ ସରକାରୀ କଲେଜ ଭାବେ ଘୋଷିତ ହେଲା । ଫଳରେ କଲେଜର ସମସ୍ତ ଅଧ୍ୟାପକ ଅଧ୍ୟାପିକା ଓ ଅନ୍ୟାନ୍ୟ କର୍ମଚାରୀମାନେ ସରକାରୀ କର୍ମଚାରୀଭାବେ ପରିଗଣିତ ହୋଇଗଲେ । ତେଣୁ ସରକାରୀ କର୍ମଚାରୀଭାବେ ଡକ୍ଟର ବେହେରାଙ୍କୁ ପରବର୍ତ୍ତୀ ସମୟରେ ଭଦ୍ରକ କଲେଜରୁ ଅନ୍ୟାନ୍ୟ କଲେଜକୁ ବଦଳି ହୋଇ ଯିବାକୁ ପଡ଼ିଲା । ସେ ବାରିପଦା ଓ ଫୁଲବାଣୀ ଆଦି କଲେଜରେ ଯାଇ ଶିକ୍ଷାଦାନ କରି ଯଥେଷ୍ଟ ଲୋକପ୍ରିୟତା ଅର୍ଜନ କରିଥିଲେ ମଧ୍ୟ ସେ ରେଭେନ୍ସା କଲେଜରେ ଦୀର୍ଘକାଳ ଅଧ୍ୟାପନା କରିଥିଲେ ଏବଂ ଏହିଠାରେ ସେ ସ୍ନାତକୋତ୍ତର ଓ ଅନର୍ସ ଶ୍ରେଣୀରେ ଶିକ୍ଷାଦାନ କରିବା ସଙ୍ଗେ ସଙ୍ଗେ ସେ ବହୁ ଗବେଷକଙ୍କର ମାର୍ଗଦର୍ଶକ ଭାବେ ଖ୍ୟାତି ଅର୍ଜନ କରିଥିଲେ ।

ଗବେଷଣା ବ୍ୟତୀତ ସାରସ୍ୱତ ସାଧନା କ୍ଷେତ୍ରରେ ସେ ବହୁ ଉଲ୍ଲେଖନୀୟ ରଚନାମାନ ସୃଷ୍ଟି କରିଯାଇଛନ୍ତି । ସମଗ୍ର ଜୀବନକାଳ ସାଧନାର ଫଳ ସ୍ୱରୂପ ସେ ସମୁଦାୟ ୧୧ଟି ଗଳ୍ପ ସଂକଳନ, ୫ଟି କବିତା ସଂକଳନ, ୨୦ଟି ପ୍ରବନ୍ଧ ଓ ଆଲୋଚନା ଗ୍ରନ୍ଥ ସହିତ ୨୦ରୁ ଉର୍ଦ୍ଧ୍ୱ ଗ୍ରନ୍ଥର ସୁସଂପାଦନା କରିଥିଲେ । ତାଙ୍କର ଗୋଟିଏ ମଧ ଏକାଙ୍କିକା ପୁସ୍ତକ ଓ କେତୋଟି ଶିଶୁସାହିତ୍ୟ ପୁସ୍ତକ ପ୍ରକାଶଲାଭ କରିଥିଲା ।

ସାହିତ୍ୟ ସଂଗଠନ କ୍ଷେତ୍ରରେ ମଧ ତାଙ୍କର ଯଥେଷ୍ଟ ଅବଦାନ ଥିଲା । ଓଡ଼ିଶାର ଏକ ପ୍ରାଚୀନ ରାଜ୍ୟସ୍ତରୀୟ ଅନୁଷ୍ଠାନ 'ଓଡ଼ିଆ ଯୁବଲେଖକ ସମ୍ମେଳନ'ର ସେ ସଭାପତି ଥିଲେ । ଏବଂ ତାଙ୍କ ସମୟରେ ପୂର୍ବାଞ୍ଚଳ ଲେଖକ ସମ୍ମେଳନ ଓଡ଼ିଆ ଯୁବଲେଖକ ସମ୍ମେଳନ ପକ୍ଷରୁ କଲିକତାଠାରେ ମହାସମାରୋହରେ ଅନୁଷ୍ଠିତ ହୋଇଥିଲା । ସେ କଟକଠାରେ 'ଓଡ଼ିଆ ସାହିତ୍ୟ ପରିଷଦ' ଗଠନ କରି ମୃତ୍ୟୁପର୍ଯ୍ୟନ୍ତ ତା'ର ପ୍ରତିଷ୍ଠାତା ସଭାପତି ଥିଲେ ଏବଂ ନିରବଚ୍ଛିନ୍ନ ଭାବେ ସେ ସେହି ଗବେଷଣା ଧର୍ମୀ ପତ୍ରିକା 'ଏଷଣା'ର ସଂପାଦନା କରୁଥିଲେ ।

ଡକ୍ଟର ବେହେରାଙ୍କ ସହିତ ମୋ ସଂପର୍କର ପରିସୀମା ଅକଳନ । ମୁଁ ଭଦ୍ରକ କଲେଜରେ ତାଙ୍କର ଅନ୍ୟତମ ପ୍ରିୟ ଛାତ୍ର ଥିଲି । ମୁଁ ବିଜ୍ଞାନ ଶ୍ରେଣୀରେ ପାଠପଢୁଥିଲେ ମଧ ମୋର ସାହିତ୍ୟ ପ୍ରୀତି ସେ ଅନୁଭବ କରି ମୋତେ ପ୍ରିୟଛାତ୍ର ଥିଲି । ମୁଁ ବିଜ୍ଞାନଶ୍ରେଣୀରେ ପାଠପଢୁଥିଲେ ମଧ ମୋର ସାହିତ୍ୟ ପ୍ରୀତି ସେ ଅନୁଭବ କରି ମୋତେ ଖୁବ୍ ଆଦର କରୁଥିଲେ । ମୋ ଅଗ୍ରଜ କବି ଅଚ୍ୟୁତାନନ୍ଦ ନାୟକଙ୍କ ପ୍ରତିଷ୍ଠିତ ସାହିତ୍ୟ ପତ୍ରିକା 'ନବରାଗ'ର ସେ ଉପଦେଷ୍ଟା ଥିଲେ । 'ନବରାଗ' ମୋ ସଂପାଦନାରେ ପରବର୍ତ୍ତୀ ସମୟରେ ପ୍ରକାଶ ପାଇଥିବାବେଳେ ସେ ଖୁବ୍ ଆନନ୍ଦିତ ହେବା ସଙ୍ଗେ ସଙ୍ଗେ କ୍ରମାଗତ ଲେଖା ଦେଉଥିଲେ । ପରବର୍ତ୍ତୀ ସମୟରେ ମୋ ଦ୍ୱାରା ସଂପାଦିତ 'ଶତଦ୍ରୁ'କୁ ସେ ନିୟମିତ ଲେଖା ଦେଉଥିଲେ । ଏଇ ମାସକ ତଳେ ମୁଁ ତାଙ୍କ କଟକ କଲ୍ୟାଣନଗରସ୍ଥ ବାସଭବନକୁ ଯାଇ ଲେଖା ମାଗିବାବେଳେ ସେ ବ୍ୟସ୍ତ ହୋଇ କହିଲେ, ଏବେ ମୋ ଦେହ ଭଲନାହିଁ ହର୍‌ପିସ୍ ହୋଇଛି । ତୁମେ ବୋହୂଙ୍କ ପାଖରେ ଠିକଣାଟା ଲେଖି ଦେଇଯାଅ ମୁଁ ପଠାଇଦେବି । କିନ୍ତୁ ତାହା ସମ୍ଭବ ହୋଇପାରିଲା ନାହିଁ । ତା'ପରେ ସେ ଅଧିକ ଅସୁସ୍ଥ ହୋଇ ପ୍ରଥମେ କଟକର ଏକ ନର୍ସିଂହୋମ୍ ଏବଂ ତା'ପରେ ଆପୋଲୋ ହସ୍‌ପିଟାଲରେ ଭର୍ତ୍ତି ହୋଇଥିଲେ, ସେ ଆପୋଲୋରେ

କେତେଦିନ ଆଇ.ସି.ୟୁରେ ରହିବାପରେ ତାଙ୍କ ଅସୁସ୍ଥତା ଖବର ତାଙ୍କର ଅନ୍ୟତମା ଛାତ୍ରୀ କବି ମନୋରମା ବିଶ୍ୱାଳ ମହାପାତ୍ରଙ୍କଠାରୁ ଜାଣି ମୁଁ ଯାଇ ତାଙ୍କୁ ଆପୋଲୋରେ ଦେଖାକରି ଆସିଥିଲି । ସେତେବେଳେ ତାଙ୍କର ଅବସ୍ଥାର ସାମାନ୍ୟ ଉନ୍ନତି ଘଟିଥିଲା । ସେ ମୋତେ ଚିହ୍ନିଲେ ଏବଂ ଅସ୍ପଷ୍ଟ ଭାବରେ ଅଳ୍ପ କଥାବାର୍ତ୍ତା ବି କରିଥିଲେ । ମୁଁ ତାଙ୍କ ବଡ଼ପୁଅ ପୁଣ୍ୟଶ୍ଳୋକ ଓ ପୁତ୍ରବଧୂଙ୍କ ସହିତ ତାଙ୍କ ବିଷୟରେ କଥାବାର୍ତ୍ତା ହୋଇ ଫେରିଥିଲି । ଦୁଃଖର କଥା ତାର ଅଳ୍ପ କେତେଦିନ ପରେ ତାଙ୍କର ଦେହାନ୍ତ ହୋଇଗଲା । ସେଦିନ ମୁଁ ଜାଣିପାରିଲି ନାହିଁ କିମ୍ବା ଶେଷଦର୍ଶନ କରିବାର ସୁଯୋଗ ପାଇପାରିଲି ନାହିଁ ।

ସାର୍‌ଙ୍କ ସ୍ନେହ ଓ ସଂପର୍କ ଜୀବନରେ କେବେ ବି ଭୁଲିପାରିବି ନାହିଁ । ସାରଙ୍କ ସହିତ ଆଉ ଗୋଟିଏ ମାତ୍ର ସ୍ମୃତିର ପାଖୁଡ଼ା ଉପସ୍ଥାପନା କରିବାର ଲୋଭ ସମ୍ବରଣ କରିପାରୁନାହିଁ । ୧୯୯୯ କିମ୍ବା ୨୦୦୦ ମସିହା ହେବ ବୋଧହୁଏ । ମୁଁ ଅସୀମବସୁ ଓ ସାର୍ (ଡକ୍ଟର କୃଷ୍ଣ ଚରଣ ବେହେରା) ଆମେ ତିନିଜଣ ବିଚାରକ ଭାବେ ଦାମନଯୋଡ଼ିର ଏକ ନାଟ୍ୟପ୍ରତିଯୋଗିତାକୁ ଯାଇଥିଲୁ । ସେଠାରେ ନାଲ୍‌କୋ ଗେଷ୍ଟ ହାଉସ୍‌ରେ ଆମେ ରହିଲୁ । ଏକାଠି ପ୍ରତିଦିନ ଆମେ ଡାଇନିଂରେ ଖାଇବା ସମୟରେ ମୋର ଅଣ୍ଡା, ମାଂସ ଆଦି ଖାଇବାକୁ ବାରଣ କରି ମୋତେ ସତର୍କ କରି କହିଲେ, ଆରେ ସେ ଆମିଷଗୁଡ଼ା ତୁମେ ଏତେ ପରିମାଣରେ ଖାଅନାହିଁ । ପରବର୍ତ୍ତୀ ଅବସ୍ଥାରେ ସେସବୁ ବହୁ ଜଟିଳ ଅବସ୍ଥା ସୃଷ୍ଟି କରିବ । ସାର୍‌ଙ୍କ କଥାରେ ମୁଁ ଟିକିଏ ସାବଧାନ୍ ହୋଇଥିଲି । ତା'ପରେ ନାଟ୍ୟ ପ୍ରତିଯୋଗିତା ସରିଲା- ଶେଷଦିନ ଆମେ ସବୁ ଆମର ରାୟ ଦେବାକଥା । ସେଦିନ ମୁଁ ଦିନ ୩ଟା ପର୍ଯ୍ୟନ୍ତ ନଖାଇ ଅସୀମବସୁଙ୍କ ସହିତ କାର୍ଯ୍ୟ କଲି । ସାର୍ କହିଲେ, ତୁମେ ୨ଜଣ ଯାକ ନାଚୁଥା । ତୁମ ରାୟରେ ମୋର ଅସମ୍ମତି ନାହିଁ । ତା'ପରେ ଆମେ ପ୍ରତିଯୋଗିତା ଶେଷକରି ଖୁସିରେ ଫେରିଥିଲୁ । ସାର୍‌ଙ୍କ ବିୟୋଗ ଓଡ଼ିଆ ସାହିତ୍ୟ ନିମନ୍ତେ ଯେ ଏକ ଅପୂରଣୀୟ କ୍ଷତି, ଏଥିରେ ସନ୍ଦେହ ନାହିଁ ।



ବରମୁଣ୍ଡା, ଭୁବନେଶ୍ୱର

# ବହୁମୁଖୀ ସାରସ୍ୱତ ପ୍ରତିଭା

ପଞ୍ଚାନନ ମିଶ୍ର

ଡକ୍ଟର କୃଷ୍ଣଚରଣ ବେହେରାଙ୍କ ପରି ଜଣେ କୃତବିଦ୍ୟ ସାହିତ୍ୟିକ ଓ ଗବେଷକ ଇହଲୀଳା ସମ୍ବରଣ କରିବା ଓଡ଼ିଆ ସାହିତ୍ୟର ଗବେଷଣା କ୍ଷେତ୍ରରେ ଏକ ଅପୂରଣୀୟ କ୍ଷତି । ବ୍ୟକ୍ତିଗତ ସ୍ତରରେ ସେ ଯେଉଁ ଉଦ୍ୟମ କରି ଗବେଷଣା-ସଂସ୍କୃତିକୁ ବଞ୍ଚାଇ ରଖିବା ସହ ତାହାର ପରିପୁଷ୍ଟିରେ ଦାୟିତ୍ୱପୂର୍ଣ୍ଣ ଭୂମିକା ନିର୍ବାହ କଲେ, ତାହା ଅବିସ୍ମରଣୀୟ ହୋଇ ରହିବ । ୧୯୩୨ ମସିହାରେ ଜନ୍ମିତ ଡ. ବେହେରା ଆଜୀବନ ସାରସ୍ୱତ ସାଧନାରେ ନିମଗ୍ନ ଥିଲେ ଓ ସାହିତ୍ୟର ବହୁ ପ୍ରାରୂପରେ ହାତ ଦେଇ ସେଥିରେ ଉଲ୍ଲେଖନୀୟ ସଫଳତା ହାସଲ କରିଥିଲେ । ଏକାଧାରରେ ସେ ଥିଲେ ଜଣେ କବି, ଗାଳ୍ପିକ, ଏକାଙ୍କିକାକାର, ଶିଶୁ ସାହିତ୍ୟିକ, ଗ୍ରନ୍ଥ ସମୀକ୍ଷକ, ସମାଲୋଚକ, ସଂପାଦକ ଓ ସଂକଳକ । ବହୁ ପୁରସ୍କାର ସମ୍ମାନ ଓ ସମ୍ବର୍ଦ୍ଧନାରେ ଭୂଷିତ ହୋଇ ସେ ଜଣେ ଉଚ୍ଚକୋଟୀର ସାହିତ୍ୟିକ ଭାବରେ ଗୌରବ ଅର୍ଜନ କରିଥିଲେ । ଉଚ୍ଚମାନର ଲୋକନାଟକ ସେ ରଚନା କରି ଭାରତ ସରକାରଙ୍କ ଦ୍ୱାରା ପୁରସ୍କୃତ ହେବାର ସୌଭାଗ୍ୟ ପ୍ରାପ୍ତ ହୋଇଥିଲେ । କାବ୍ୟ-କବିତା ରଚନାରୁ ସେ ଆରମ୍ଭ କରିଥିଲେ ତାଙ୍କ ସାହିତ୍ୟିକ ଜୀବନ ଓ ଏ ଦୃଷ୍ଟିରୁ 'ଚା'କପରେ ଝଡ଼' ତାଙ୍କର ଏକ ଅନବଦ୍ୟ କୃତି । 'ଦଳିତ ଆନ୍ଦୋଳନ ଓ ଦଳିତ ସାହିତ୍ୟ' ଏକ ନିଆରା ସମାଲୋଚନାତ୍ମକ କୃତି । ସର୍ବୋପରି ତାଙ୍କର ଏକ ଉଲ୍ଲେଖନୀୟ ଅବଦାନ ଥିଲା ୧୯୬୬ ମସିହାରେ 'ମୋଗଲ ତାମସା'ର ପୂର୍ଣ୍ଣାଙ୍ଗ ପାଣ୍ଡୁଲିପି ସଂଗ୍ରହ, ସଂପାଦନ ଓ ପ୍ରକାଶନ । ଏହା ମାଧ୍ୟମରେ ସେ ଯୋଡ଼ି ହୋଇଗଲେ ଭଦ୍ରକ ସାଂସ୍କୃତିକ ପୁନର୍ଜୀବନର ଗାଥା ସହ । ତାଙ୍କ ଦ୍ୱାରା ରଚିତ ହୋଇଥିବା ସମାଲୋଚନାଧର୍ମୀ ପ୍ରବନ୍ଧଗୁଡ଼ିକର ଏକ ନିଷକ୍ଷ ଆଲୋଚନା ହେବା ଖୁବ୍ ଜରୁରୀ, ଯାହା ତାଙ୍କ ସମାଲୋଚକୀୟ ପଦ୍ଧତି ଓ ଦୃଷ୍ଟିଭଙ୍ଗୀକୁ ଉନ୍ମୋଚନ କରିପାରିବ । ତାଙ୍କ ପ୍ରବନ୍ଧମାନ ଖୁବ୍ ଅନୁଶୀଳନାତ୍ମକ, ଅନ୍ତର୍ଦୃଷ୍ଟିପ୍ରସୂତ,

ବିଶ୍ଳେଷଣ ଆଧାରିତ ଓ ସ୍ଥଳେ ସ୍ଥଳେ ବ୍ୟଞ୍ଜନାତ୍ମକ । ଏ ପ୍ରକାର ରଚନା ତାଙ୍କର ସମକାଳୀନ ସମାଜ ସଚେତନତା ଓ ଗବେଷଣାତ୍ମକ ଦୃଷ୍ଟିଭଙ୍ଗୀରେ ପରିପୁଷ୍ଟ ଓ ଏହା ଆଗାମୀ ପିଢ଼ି ପାଇଁ ଗବେଷଣା କ୍ଷେତ୍ରରେ ନୂତନ ଦିଗନ୍ତର ପରିଚୟ ଦେଇପାରିବ ବୋଲି ହୃଦବୋଧ ହୁଏ । ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଚିନ୍ତାନାୟକ, ସାହିତ୍ୟିକ ଓ ଦାର୍ଶନିକଙ୍କ ଦ୍ୱାରା ସେ ପ୍ରଭାବିତ ହୋଇଥିଲେ ହେଁ ଏକ ନିଜସ୍ୱ ଚିନ୍ତା, ସମୀକ୍ଷାତ୍ମକ ଦୃଷ୍ଟିଭଙ୍ଗୀ ଉପସ୍ଥାପନା କରିବାରେ ସେ ଉଲ୍ଲେଖନୀୟ ସଫଳତା ହାସଲ କରିଛନ୍ତି । ଜଣେ ବ୍ୟକ୍ତି ତାଙ୍କ ଜୀବନ କାଳରେ ଏତେ ବହୁମୁଖୀ ସାରସ୍ୱତ ପ୍ରତିଭାକୁ ବିକଶିତ ଓ ପରିସ୍ଫୁଟ କରି ସମାଜରେ ଚିରକାଳ ପାଇଁ ଆଦୃତ ହୋଇ ରହିବା କିଛି କମ୍ କୃତିତ୍ୱର କଥା ନୁହେଁ । ଜନ୍ମ ଦେଇଥିବା ଗବେଷଣା ପତ୍ରିକା 'ଏଷଣା' ତାଙ୍କର ସ୍ମୃତିର ସ୍ମାରକୀ ହୋଇ ରହିବ କାଳ କାଳ ପାଇଁ ।



ଦେହେରିପାଲି, ବୁଢ଼ାରଜା, ସମ୍ବଲପୁର

# ହଜି ନାହାନ୍ତି କୃଷ୍ଣଚରଣ

## ସୁଧାଂଶୁ ଶେଖର ପ୍ରଧାନ

ଏଇ ଜୁଲାଇ ୨୯ ତାରିଖ ଶନିବାର ସକାଳ ଓଳି ଓଡ଼ିଆ ସାହିତ୍ୟ ଆକାଶ ଉପରେ ଶନିର ଛାୟା ଘୋଟିଗଲା, ଯେତେବେଳେ ପ୍ରଖ୍ୟାତ ସାହିତ୍ୟ ଗବେଷକ ଡକ୍ଟର କୃଷ୍ଣଚରଣ ବେହେରା ଆଉ ଇହଜଗତରେ ନାହାନ୍ତି ବୋଲି ଚାରିଆଡ଼େ ପ୍ରଚାର ହୋଇଗଲା । ଆଃ ! କି, ଦୁଃସମ୍ବାଦ ! ମୋରି ଭଳି କୃଷ୍ଣଚରଣଙ୍କୁ ଭଜି ହେଉଥିବା ଛାତ୍ରମାନଙ୍କ ହୃଦସ୍ପନ୍ଦନ କିଛି ମୁହୂର୍ତ୍ତ ପାଇଁ ହୁଏତ ଅଟକି ରହି ସ୍ଥାଣୁତ୍ୱ ଭଜିଥିବ, ନିର୍ବାକ କରି ଦେଇଥିବ । ଆଖିପଲକ ହୀନ ହୋଇ ଉଠିଥିବ ! ଏପରି ଅବସ୍ଥାରେ କିଏ ଯେମିତି ଆଶ୍ୱାସନା ଦେଇ କହି ଯାଉଥିବ, "ବୟସ ହୋଇଥିଲା, ଯିବାର ସମୟ ହେଲା, ଚାଲିଗଲେ ।" ଏ କଥାରେ ଆମେ କେବେ ଆଶ୍ୱାସିତ ହୋଇପାରିବୁ ନାହିଁ । ଶେଷ ନିଃଶ୍ୱାସ ଛାଡ଼ିବା ଯାଏ ସେ ଥିଲେ ଓଡ଼ିଆ ଗବେଷଣା ପରିଷଦର ସଭାପତି । ଓଡ଼ିଆ ଭାଷା ସାହିତ୍ୟର ଗବେଷଣା ଜଗତରେ ଭୀଷ୍ମ ପିତାମହ ।

ତାଙ୍କ ପ୍ରତିଷ୍ଠିତ ଓଡ଼ିଆ ଗବେଷଣା ପରିଷଦ ସମଗ୍ର ରାଜ୍ୟରେ ଓଡ଼ିଆ ସାହିତ୍ୟର ଏକକ ଗବେଷଣା କେନ୍ଦ୍ର କହିଲେ କେହି ବି ଅସ୍ୱୀକାର କରି ନ ପାରନ୍ତି । ୧୯୮୦ ମସିହାରୁ କଟକର ଶ୍ରୀଅରବିନ୍ଦ ନଗରସ୍ଥିତ ସାରସ୍ୱତ ନିଳୟଠାରେ ଏହା ପ୍ରତିଷ୍ଠିତ କରାଇ ଦୀର୍ଘ ଚାଳିଶ ବର୍ଷ ଅବଧି ନିରବଚ୍ଛିନ୍ନ ଭାବେ ଓଡ଼ିଆ ଭାଷା ସାହିତ୍ୟର ଅନାଲୋଚିତ ଦିଗର ତଥ୍ୟ ଓ ତତ୍ତ୍ୱକୁ ଶତାଧିକ ଗବେଷଣାତ୍ମକ ପ୍ରବନ୍ଧ ଓ ଉଚ୍ଚମାନର ସମୀକ୍ଷାତ୍ମକ ଆଲୋଚନାଦ୍ୱାରା ଉପସ୍ଥାପିତ କରି ଆସିଥିଲେ । 'ଏଷଣା' ପତ୍ରିକା ସଂପାଦନା କରି, ୧୯୮୦ ମସିହାରୁ 'ଏଷଣା' ପତ୍ରିକା ବର୍ଷକୁ ଦୁଇଥର ପ୍ରକାଶିତ ହୋଇ ଅବଲୁପ୍ତ ପ୍ରାୟ ଶତାଧିକ ପ୍ରାଚୀନ ପାଣ୍ଡୁଲିପି ଉଦ୍ଧାର କରି ଡ. ବେହେରାଙ୍କ ପରାମର୍ଶରେ ବିଜ୍ଞ ଗବେଷକ ବୃନ୍ଦ ପ୍ରକାଶ କରି ଆସି ଅଛନ୍ତି । ବର୍ଷକ ମଧ୍ୟରେ ଏକାଧିକ ବାର ଓଡ଼ିଶାର ପ୍ରାନ୍ତ ଉପାନ୍ତରେ ତଥା ବିଭିନ୍ନ ସାଂସ୍କୃତିକ କେନ୍ଦ୍ରରେ,

ପରିଷଦର ବାର୍ଷିକ ସମାରୋହରେ ଗବେଷଣାତ୍ମକ ପ୍ରବନ୍ଧ ପାଠ ବା ସଂପାନ ଅନୁଷ୍ଠିତ କରି ପରିଷଦକୁ ସାହିତ୍ୟ ଆଲୋଚନାର ଏକ ମର୍ଯ୍ୟାଦାବନ୍ତ ସୋପାନରେ ପହଞ୍ଚାଇ ଦେଇଥିଲେ ଡ. ବେହେରା । ଦୀର୍ଘ ଚାଳିଶ ବର୍ଷ ଧରି ପ୍ରାୟତଃ ଶତାଧିକ ପ୍ରବନ୍ଧ ପାଠଚକ୍ର ଡ. ବେହେରାଙ୍କ ସଭାପତିତ୍ୱରେ ସମାହିତ ହେଉଥିଲା, ଏପରିକି ଅନ୍ତିମ ମୁହୂର୍ତ୍ତ ପର୍ଯ୍ୟନ୍ତ ଏହି ଧାରାବାହିକ ପାଠଚକ୍ର କାର୍ଯ୍ୟକ୍ରମର ପୁରୋଭାଗରେ ସେ ହିଁ ରହି ଆସୁଥିଲେ । ଜଣେ ଦକ୍ଷ, ବିଜ୍ଞ-ବିଶେଷଜ୍ଞ ସାହିତ୍ୟ ସଂଗଠକ ସେ ଥିଲେ ଅନନ୍ୟ । ଓଡ଼ିଶାର କୋଣ ଅନୁକୋଣରୁ ଏବଂ ଭାରତର ବୌଦ୍ଧିକ ଜଗତର ବିଶିଷ୍ଟ, ଗୁଣୀ, ଜ୍ଞାନୀ, ବିଶେଷଜ୍ଞ ଗବେଷକମାନେ ଏହି ଗବେଷଣା ପରିଷଦକୁ ଆପଣାଛାଏଁ ଆକର୍ଷିତ ହୋଇ ଆସୁଥିଲେ ।

ଗବେଷଣାର ପୃଷ୍ଠଭୂମି ଓ ମୌଳିକତାକୁ ଅଗ୍ରାଧିକାର ଦେଇ ଡ. ବେହେରା ତାଙ୍କ ସମଗ୍ର ଜୀବନ କାଳ ବିତାଇ ଆସିଥିଲେ; ସଦାକାଳେ ନୂତନତ୍ୱର ସନ୍ଧାନୀ ସେ ଥିଲେ । ଗବେଷଣା ପରିଷଦର ସାଙ୍ଗଠନିକ ପ୍ରକ୍ରିୟାଠୁଁ ଆରମ୍ଭ କରି ଗବେଷକଙ୍କ କ୍ରିୟାକଳାପ ଉପରେ ଅନ୍ତର୍ଦୃଷ୍ଟି ତାଙ୍କର ତୀକ୍ଷ୍ଣ ଓ ତୀବ୍ରତର ଥିଲା । ଓଡ଼ିଆ ଭାଷା ସାହିତ୍ୟ, ସଂସ୍କୃତିର ବାସ୍ତବତା ଉପରେ ଅଧିକ ଗୁରୁତ୍ୱ ଦେବା ସହିତ ଆନ୍ତର୍ଜାତିକ-ଭାଷା-ସାହିତ୍ୟ ସମୂହର ବୈଶିଷ୍ଟ୍ୟକୁ ଓଡ଼ିଆ ଗବେଷଣା ସାହିତ୍ୟର ତୁଳନାତ୍ମକ ଭାବେ ଗ୍ରହଣ କରିବାକୁ ପରାମର୍ଶ ଦେଇ ଆସୁଥିଲେ ।

ଓଡ଼ିଆ ଗବେଷଣା ପରିଷଦର ଏକତ୍ରିଂଶତମ ବାର୍ଷିକ ଉତ୍ସବରେ ଯେଉଁ 'ସଭାପତି ଅଭିଭାଷଣ'ର ମୁଦ୍ରିତ ପୃଷ୍ଠାରେ ଗବେଷଣା ସଂକ୍ରାନ୍ତୀୟ ଅଭାବନୀୟ ଦୃଷ୍ଟାନ୍ତ ଦର୍ଶାଇ ଆଲୋଚନା କରିଥିଲେ- ତାହା ଯେତିକି ଶାଣିତ ଥିଲା ସେତିକି ହୃଦ୍ୟ ମଧ୍ୟ ଥିଲା । ୦୬/୦୩/୧୧ ତାରିଖରେ ସେ ଶୁଣାଇଥିଲେ- 'ସୁଧୀବୃନ୍ଦ ! ମୋଟାମୋଟି ମୋର ବକ୍ତବ୍ୟ ହେଉଛି, ସାହିତ୍ୟ ସଂସ୍କୃତିର ଅଧ୍ୟୟନ ଓ ଗବେଷଣା କ୍ଷେତ୍ରରେ ଆମେ ସୀମିତ ଓ ସଂକୀର୍ଣ୍ଣ ଦୃଷ୍ଟିକୋଣ ଘେନି କାର୍ଯ୍ୟ କଲେ, ଆମର ସାଂସ୍କୃତିକ ଦିଗ୍‌ବଳୟ ବରାବର ସଙ୍କୁଚିତ ହୋଇ ରହିବ । ଆମର ବୌଦ୍ଧିକ ସଂପତ୍ତି ବା Intellectual property ସମୃଦ୍ଧି ସାଧିତ ହୋଇପାରିବ ନାହିଁ ।

ଓଡ଼ିଆ ସାହିତ୍ୟର ଜଣେ ବିଦଗ୍ଧ ସମାଲୋଚକ ଏବଂ ବିପୁଳ କାବ୍ୟକବିତା, ନାଟକ, ଗଳ୍ପ, ସମୀକ୍ଷା ଗ୍ରନ୍ଥ, ଆଲୋଚନା ଗ୍ରନ୍ଥର ପ୍ରବୀଣ ସ୍ରଷ୍ଟା ଭାବେ ସେ ସର୍ବତ୍ର ଖ୍ୟାତି ଅର୍ଜିଥିଲେ । ଓଡ଼ିଶାର ବିଶ୍ୱବିଦ୍ୟାଳୟ, ମହାବିଦ୍ୟାଳୟର ଛାତ୍ରଛାତ୍ରୀଙ୍କଠାରେ

ତାଙ୍କ ସୃଷ୍ଟି ସଂପଦ ପୁସ୍ତକରାଜି ଦ୍ୱାରା ସେ ସୁପରିଚିତ ଥିଲେ। ଛାତ୍ର ବତ୍ସଳତା ଗୁଣରେ ସେ ଥିଲେ ଗରୀୟାନ। ଆନ୍ତରିକତାପୂର୍ଣ୍ଣ ଅକୃତ୍ରିମ ସ୍ନେହ ଶ୍ରଦ୍ଧା ରଜ୍ଜୁରେ ସମସ୍ତଙ୍କୁ ବାନ୍ଧି ରଖିଥିଲେ ସେ। ଦୟା ଓ ଦେବତ୍ୱ ଗୁଣରେ ସେ ପ୍ରକୃତି ପକ୍ଷେ ଶୀର୍ଷ ସ୍ଥାନରେ। ଅତିଥି ଅଭ୍ୟାଗତଙ୍କୁ ମାନ୍ୟତା ଦେବା ଥିଲା ତାଙ୍କ ସହଜାତ।

ତାଙ୍କ ବାର୍ଦ୍ଧକ୍ୟ ବେଳାର ପତ୍ନୀ ବିୟୋଗ ଓ ଯଶସ୍ୱୀପୁତ୍ର ଭାରତର ବୈଦେଶିକ ବିଭାଗର ରାଷ୍ଟ୍ରଦୂତ ଡ. ଶୁଭକାନ୍ତ ବେହେରାଙ୍କ ଅକାଳ ବିୟୋଗ ତାଙ୍କ ଜୀବନରେ ଥିଲା ବିରାଟ ଧକ୍କା। ତଥାପି ହିମାଳୟର ଧୈର୍ଯ୍ୟକୁ ଆବୋରି ନେଇ ଓଡ଼ିଆ ଗବେଷଣା ପରିଷଦର ମଙ୍ଗୁଆଳ ହୋଇ ନିରବଚ୍ଛିନ୍ନ କାର୍ଯ୍ୟ କରି ଚାଲିଥିବା ଡ. ବେହେରାଙ୍କୁ ଆମେ କେବେ ହରାଇ ପାରୁନା କି ଆମ ଓଡ଼ିଆ ସାହିତ୍ୟ ଆକାଶର ଦୀପ୍ତିମାନ ସେହି- ଆଲୋକସ୍ତମ୍ଭ କେବେ ଅନ୍ଧାର ହୋଇପାରେନା ।

ଯେତେ ଦିନ ଯାଏ ଓଡ଼ିଆ ସାହିତ୍ୟ ଗବେଷଣାଗାରେ ଖୋଲା ରହିଥିବ ଡ. ବେହେରାଙ୍କୁ ସମସ୍ତେ ଖୋଜି ହେଉଥିବେ, ମନେ ପକାଉଥିବେ, ପ୍ରଣାମ ଜଣାଉଥିବେ। ୮୬ ବର୍ଷର ଜୀବଦ୍ଦଶା ବିତାଇ ବିପୁଳ ବୌଦ୍ଧିକ ସଂପତ୍ତି ଓଡ଼ିଶାବାସୀଙ୍କ ପାଇଁ ସାଇତି ଯାଇଛନ୍ତି ତାହା କେବେ ହଜି ଯିବାର ନୁହେଁ ବରଂ ଖୋଜି ହେଉଥିବୁ ଚିରଦିନ।

●

ପୂର୍ବତନ ପ୍ରାଧ୍ୟାପକ, ଅବସରପ୍ରାପ୍ତ ଅଧ୍ୟକ୍ଷ,
ଶାଳିକୋଠା, ଜଳେଶ୍ୱର, ବାଲେଶ୍ୱର

# ଗାହିତେ ଗାହିତେ ପାଲା ଯଖନ ଥାମିବୋ

## ସୁଧୀରଚନ୍ଦ୍ର ବେହୁରା

ଗଲା ଶନିବାରେ ୨୯/୦୭/୨୦୧୭ରେ ସାର୍ ଚାଲିଗଲେ । ଡ. କୃଷ୍ଣଚରଣ ବେହେରାଙ୍କ ଏ ପାର୍ଥିବ ଯାତ୍ରା ୧୯୩୦ରେ ଭଦ୍ରକ ଅର୍ଜୁନବିନ୍ଧା ପୀତାମ୍ବର ବେହେରାଙ୍କଠାରୁ ଆରମ୍ଭ ହୋଇ ଏବେ କଟକ ସତୀଚଉରାରେ ଶେଷ ହେଲା । ପବିତ୍ରାଦେବୀଙ୍କ ଏନ୍ତୁଡ଼ିନିଆଁ କି ପୁଣ୍ୟଶ୍ଲୋକ ଜଳାଇଥିବା ଜୁଇନିଆଁ ଭିତରେ କ'ଣ କୃଷ୍ଣଚରଣଙ୍କ ଦୁନିଆଁ ସୀମିତ ? ଆମ ଆଖିକୁ ଦିଶୁଥିବା ଏଇ ସୀମିତ ସତାଅଶୀ ବର୍ଷର ଯାତ୍ରା କ'ଣ ସବୁକିଛି ? ସେ ଯାତ୍ରାପଥର ବିସ୍ତୃତି, ଅସୀମତ୍ୱ ଓ ଅମରତ୍ୱ ଆମ ସୀମିତ ଜ୍ଞାନରେ କଳନା କରି ବସିଲେ ଅର୍ଦ୍ଧସତ୍ୟର ଆବିଷ୍କାର କି ଅସତ୍ୟର ଅବତାରଣା କରାଯାଇପାରେ କେବଳ । ପ୍ରାୟ ସର୍ବଶେଷ ସତ୍ୟର ସୀମାସ୍ପର୍ଶ କରି ହୁଏ ନାହିଁ ।

ଲୋକ ଅନୁଭବରେ ମଲାବେଳେ ହନୁ ସତ କହିପାରେ, କିନ୍ତୁ ଜିଅନ୍ତା ହନୁମାନେ ତାହା ପାରନ୍ତି ନାହିଁ । ସବାଶେଷ ସତ କହିଥିବା ସାଥୀ ହନୁଟି ପାଇଁ ବଞ୍ଚି ରହିଥିବା ବଞ୍ଚିତମାନେ ବହେ ରାମ୍ପିବିଦାରି ହୁଅନ୍ତି, ପାଗଳ ଭଳି ଏଡାଳ ସେଡାଳ ଡିଅନ୍ତି, କିଛି ସମୟ ପରେ ପୁଣି ନିଜ ବାଟରେ ନିଜ କାମରେ ଚାଲିଯାନ୍ତି । ବାନରଠାରୁ ନର ଏ କ୍ଷେତ୍ରରେ କେଉଁ ଗୁଣରେ ଅଲାଗ କି !

ସଂସାରରେ ଆଉ ଦଳେ ଥାନ୍ତି, ସେମାନେ ନର ନୁହନ୍ତି ଚତୁର ନର । ଜୀବନ ଜିଇଁବାରେ ବଡ଼ ହୁସିଆର । ସାଙ୍ଗରୁ ଜଣେ ଚାଲିଗଲା ପରେ ବହୁ କାନ୍ଦଣା ଲହରିର ଘୋଷାପଦ ଗାଆନ୍ତି । ସେ ବିଦାୟୀ ବ୍ୟକ୍ତିଜଣକ ମୋର ଜୀବନଠାରୁ ପ୍ରିୟ ଥିଲେ... ମୋ ଆୟୁଷ ନେଇ ସେ ହେଲେ ବଞ୍ଚି ରହିଥାନ୍ତେ... ତାଙ୍କ ପାଇଁ ଆମ୍ଭର ଯାହା କ୍ଷତି ହେଲା ତାହା ଅପୂରଣୀୟ... ସିଏ ମୁଁ କୁହାବୋଲା ହୋଇ ଯେଉଁ ସ୍ୱପ୍ନ ଦେଖିଥିଲୁ, ସେ ଆଗରୁ ନିଦରୁ ଉଠି ପଡ଼ିବାରୁ; ତାଙ୍କ ସ୍ୱପ୍ନ ଅଧୁରା ରହିଗଲା; ମୁଁ ଶୋଇ ରହିଛି, ମୋ ସ୍ୱପ୍ନ ସରି ନାହିଁ.... ତାଙ୍କ ସ୍ୱପ୍ନ- ମୋ ସ୍ୱପ୍ନ ମିଶେଇ ଦେଖିବା ପାଇଁ, ସାର୍ଥକ କରିବା

ପାଇଁ ମୁଁ ଏକା ଭାଜନ... ତାଙ୍କ ପ୍ରିୟ ପରିଜନ ଆପଣମାନଙ୍କ ସହଯୋଗ ଚାହେଁ। ଶୋକବିହ୍ୱଳ ପ୍ରିୟ ପରିଜନେ ଭାବାବେଶରେ ହିଁ ଭରନ୍ତି। କାନ୍ଦଣା ଲହରି ସ୍ୱର ଥମିଯାଏ। ସବୁ ଶୋକ ପାଶୋରି ସୁଖର ସଂସାର ଗଢ଼ିବାରେ ଲାଗିଥାଉଁ। ସ୍ୱର୍ଗତ ଆତ୍ମାର ସଂଳାପ ଆଉ ଶୁଭେ ନାହିଁ। ସବୁ ସଂକଷ୍ଟର ବିକଷ୍ଟ ଖୋଜୁ। ତାଙ୍କ ସ୍ୱପ୍ନ, ଆମ ସ୍ୱପ୍ନ, ଆମେ ସ୍ୱପ୍ନ ହେବା ଯାଏଁ ପେଡ଼ିରେ ସାଇତି ଦେଉ।

ଆମେ କ'ଣ ଚତୁରପଣ ଛାଡ଼ି ପାରିବା ? ଏ ବିଧାନକୁ ସାମାଜିକ ଜୀବନର ସମ୍ବିଧାନରୁ ବାଦ୍ ଦେଇପାରିବ ? ପ୍ରଚଳିତ ଧାରାରେ ବ୍ୟତିକ୍ରମ ଆଣିପାରିବା ? ଆଗକୁ ଏ ଦୁନିଆରେ ଯେଉଁ କୃଷ୍ଣଚରଣମାନେ ଆସିବେ ସେମାନେ କ'ଣ 'ବେଦୀ' ପରି ଗପ ଲେଖି ହଟହଟଠ ହେବେ ନାହିଁ... ବିଶ୍ୱଭାରତୀ ମନ୍ତ୍ରରେ ଦୀକ୍ଷିତ ହୋଇ 'ପଲ୍ଲୀଭାରତୀ' ଗଢ଼ିବା ସ୍ୱପ୍ନରେ ନିଜ କ୍ୟାରିଅରକୁ ବଳି ପକାଇବେ ନାହିଁ... ସାହିତ୍ୟ ଓ ଶିକ୍ଷା ସାଧନା କ୍ଷେତ୍ରରେ ସମୁଚିତ ସ୍ୱୀକୃତିରୁ ବଞ୍ଚିତ ହେବେ ନାହିଁ... ସରାଗ ସଂଗଠନ ତାଙ୍କ ଜୀବନରେ ବିଭାଗ ବିଘଟନ ଆଣିବ ନାହିଁ ?

ବିଳାପର ବେଳ ଏ ନୁହେଁ। ଚାଲନ୍ତୁ, ସଂଳାପ କରିବା ସାର୍‌ଙ୍କ ସ୍ମୃତି ସହ ଯେତେ ପାରିବା ସେତେ ସଂଳାପ କରିବା। ସେଇଥିରେ ତାଙ୍କ ସାନ୍ନିଧ ପାଇବା।

ସେଇଭଳି ଗୋଟିଏ ସାଇତା ସ୍ମୃତିର ଏ ସାକ୍ଷାତକାର ଆଗରୁ କହିଛି ସେ ଥିଲେ ମୋ ସାର। ଶେଷ ଜୀବନରେ କିଛି ବର୍ଷ ବେଳେବେଳେ ମୁଁ ତାଙ୍କ ସାର୍ ହେବାକୁ ଧୃଷ୍ଟତା କରିଥିଲି। ଯେତେବେଳେ ସାହିତ୍ୟ-ସଂସ୍କୃତି ପାଇଁ ନିଜ ଦେହକୁ, ନିଜ ପରିବାରକୁ ଅବହେଳା କରନ୍ତି; ମୁଁ ସତର୍କ କରାଇଦେଲେ ହସି ଦିଅନ୍ତି, କିଛି କହନ୍ତି ନାହିଁ। ସମସ୍ତେ ଜାଣନ୍ତି ସାର୍ ବେହିସାବୀ ମଣିଷ। ଦିନେ ତାଙ୍କ ଟେବୁଲର ଆଳିମାଳିକା କାଗଜ ଭିତରେ ଦେଖିଲି ନିଜ ପାଇଁ ରଫ୍ ବଜେଟ୍‌ଟିଏ- ଆୟ ସ୍ତମ୍ଭରେ ପେନସନ, ବ୍ୟୟ ସ୍ତମ୍ଭରେ ଖର୍ଚ୍ଚର ଲମ୍ବାତାଲିକା କଡ଼ର ଆକଳିତ ଅଙ୍କ ଟପି ସାରିଥାଏ ପେନସନ ଅଙ୍କକୁ। ଶେଷରେ ଥାଏ ମେଡ଼ିସିନ ପାଖରେ ଗାଢ଼ ପ୍ରଶ୍ନବାଚକ ଚିହ୍ନଟିଏ। ସାରଙ୍କର ସାଧନା, ଶିକ୍ଷା, ସାହିତ୍ୟ, ସଂଗଠନ, ନିଷ୍ଠା, ଏକାଗ୍ରତା, ଉଦାରତା ସତ ନା ଏ ପ୍ରଶ୍ନବାଚକ ଚିହ୍ନ ସତ। କିଏ ଯଦି ପାରିବ ଏ ପ୍ରଶ୍ନର ଉତ୍ତର ଦିଅ। ନିଜର ପ୍ରାଣପ୍ରିୟା ପତ୍ନୀ ଯାଇଥିଲେ, ପୋଷଣାହାରୀ ପୁଅ ଅଧାଦିନରେ ବାଟ କାଟି ଚାଲିଗଲା, ଆପୋଲରେ ମୃତ୍ୟୁ ସହ ସଂଗ୍ରାମର ସାଥି ହେଲେ କେବଳ ବଡ଼ଝିଅ, ବଡ଼ପୁଅ, ବଡ଼ବୋହୂ, ବନ୍ଧୁ ପରିଜନ। ଶୁଭେଚ୍ଛୁଙ୍କ ଉଦ୍ୟମର ଉତ୍ତରରେ ଶାସନ ତନ୍ତ୍ର କହିଲା

ପେନସନଭୋଗୀ ରିଟାୟାର୍ଡ କ୍ଲାସୱାନ୍ ଅଫିସର ସାହାଯ୍ୟ ମିଳିପାରିବନି ଚିକିତ୍ସା ପାଇଁ... ମିଳିପାରନ୍ତା । ବି.ପି.ଏଲ୍. ତାଲିକାଭୁକ୍ତ ହୋଇଥିଲେ ।

ସାଧକ କୃଷ୍ଣଚରଣ ଏ ସବୁ ଦେଖି ସ୍ୱର୍ଗରେ ମୁରୁକି ହସୁଥିବେ- ଭାବୁଥିବେ ଆର ଜନ୍ମକୁ ବି.ପି.ଏଲ୍. ହେବାକୁ ସାଧନା କରିବେ ।

ଗୋଟିଏ ସଜଳ ସ୍ମୃତିରେ ସାରିବା । ସାରଙ୍କ ସେଇ କଥାପଦକ ମୋତେ ଖୁବ୍ ସାନ୍ତ୍ୱନା ଦିଏ... ଜୀବନରେ ବାକି ପଡ଼ିଲେ ମନରେ ବଳ ଭରିଦିଏ । ତାଙ୍କ ଶ୍ରାନ୍ତ ମୁହୂର୍ତ୍ତରେ ଥରେ ମୁଁ ପଚାରିଥିଲି- ସାର୍, ସାହିତ୍ୟ, ସଂସ୍କୃତି, ଗବେଷଣା, ଏଷଣା ପାଇଁ ଏ ପରିଶ୍ରମ, ଏ କଷ୍ଟ ସ୍ୱୀକାର କାହିଁକି ? ଟିକିଏ ବିଶ୍ରାମ ନିଅନ୍ତୁ । ସେ କହିଥିଲେ- ସେତେବେଳେ ବିଶ୍ରାମ ନେବି, 'ଗାହିତେ ଗାହିତେ ପାଲା ଯଖନ ଥାମିବୋ' ଆଜି ପାଲା ଥମି ଯାଇଛି... ଆର ପାଳି କେବେ ?



# ସାର୍‌ଙ୍କ ପାଇଁ ଚିଠିଟିଏ

## ସଂଘମିତ୍ରା ମିଶ୍ର

ପୂଜ୍ୟ ସାର୍,

ମୋର ଶିରଲୋଟା ପ୍ରଣାମ ନିଅନ୍ତୁ । ଆପଣ ଆମମାନଙ୍କୁ ଛାଡ଼ି ଦିବ୍ୟଧାମକୁ ଚାଲିଗଲେଣି । ସମଗ୍ର ଜୀବନ ସାହିତ୍ୟ ସର୍ଜନା ଓ ସମାଲୋଚନାରେ ବିତାଉଥିବା ଆଜୀବନ ଶିକ୍ଷକ ଆପଣ । ଟିକେ କ୍ଳାନ୍ତ ହୋଇପଡ଼ିଥିଲେ ବୋଧେ, ଆପଣଙ୍କର ଅବସର ନଥିଲା । ପଢ଼ାଲେଖା, 'ଏଷଣା' ଭଳି ପତ୍ରିକା ସଂପାଦନା, ସଭା, ସେମିନାର ସବୁଠି ଆପଣଙ୍କର ଉପସ୍ଥିତି ଥିଲା । ନାଟକ ସଂପର୍କରେ ଆପଣଙ୍କର ଗବେଷଣାଧର୍ମୀ ପୁସ୍ତକ ତ ଆମମାନଙ୍କର ପଥପ୍ରଦର୍ଶକ । ଆପଣ ଏକାଧାରରେ ଥିଲେ କବି, ଗାଳ୍ପିକ ମାତ୍ର ପ୍ରାବନ୍ଧିକ ଓ ସମାଲୋଚକର ପରିଚିତି ଥିଲା ଆପଣଙ୍କର ଭୂଷଣ । ଓଡ଼ିଆ ଗବେଷଣା ପରିଷଦ ଆପଣଙ୍କର ମାନସ ସନ୍ତାନ । ଶୁଣିଛି ଆପଣ 'ସୃଷ୍ଟିଛଡ଼ା' ଛଦ୍ମନାମରେ କବିତା ଲେଖୁଥିଲେ । ଆପଣଙ୍କ ଟଙ୍କ ସବୁ ବେଶ୍ ଚର୍ଚ୍ଚିତ ଥିଲା । ତେବେ ଆପଣଙ୍କୁ କ'ଣ ମୁଁ ଆପଣଙ୍କ ଛାତ୍ରଛାତ୍ରୀମାନଙ୍କ ଭଳି ପାଖରୁ ଦେଖିଛି ? ନାଁ, ତେବେ ଆପଣଙ୍କ ସହିତ ବହୁଭାବରେ ଜଡ଼ିତ ହେବା ମୋ ପାଇଁ ସୌଭାଗ÷ ।

ମୋ ଭଳି ଅଧାଅଧାପିକା ଅଧାଗୃହିଣୀକୁ ଆପଣ ଗବେଷଣା ପରିଷଦର ମର୍ଯ୍ୟାଦାବନ୍ତ 'କ୍ଷେତ୍ରବାସୀ ସାହିତ୍ୟ ବିଦ୍ୟା ପୁରସ୍କାର' ପ୍ରଦାନ କରି ଧନ୍ୟା କରିଛନ୍ତି । ଗୋକର୍ଣ୍ଣିକା ସାହିତ୍ୟ ସମାଜର ଏକ ସେମିନାରକୁ ଆପଣଙ୍କ ସାଙ୍ଗରେ ଯାଇଥିଲି । ଆପଣଙ୍କର ବୋଧେ ମନେ ନଥିବ । ଡରି ଡରି ଆପଣଙ୍କ ପାଖରେ ମଂରେ ବସିଥିଲି । ମୁଁ ପ୍ରବନ୍ଧଟି ପଢ଼ିସାରିବା ପରେ ଆପଣ କିନ୍ତୁ ମୋତେ ପ୍ରଶଂସା କରିଥିଲେ ।

ଆପଣ ବହୁବାର ଉତ୍କଳ ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ଓଡ଼ିଆ ବିଭାଗକୁ ଆସିଛନ୍ତି । କେବେ ସେମିନାରପାଇଁ ତ କେବେ ପିଏଚ.ଡି ମୌଖିକ ପରୀକ୍ଷାର ପରୀକ୍ଷକ ହୋଇ । ଆପଣଙ୍କ ଶରୀର ଅସୁସ୍ଥ ହେବାପରେ ଆପଣ ଉପର ମହଲାକୁ

ନଯାଇ ତଳେ କେବେ ଲାଇବ୍ରେରୀ ସାଇନ୍‌ସ ବିଭାଗରେ ବା କେବେ ପ୍ରଫେସର ବିଜୟ କୁମାର ଶତପଥୀଙ୍କ ପ୍ରକୋଷ୍ଠରେ ବସି ପରୀକ୍ଷା ନେଉଥିଲେ । ଥରେ ପ୍ରଫେସର କୃଷ୍ଣଚରଣ ସାହୁଙ୍କ ଜୟନ୍ତୀକୁ ଆପଣଙ୍କୁ ଅତିଥି କରି ଡାକିଥିଲି ଓ ଏକ ନାମର ଦୁଇ ପ୍ରଫେସର ଭାବେ ଆପଣଙ୍କର ପରିଚୟ ଦେଇଥିଲି ।

ଜନ୍ମମାଟି ଭଦ୍ରଖ ପ୍ରତି ଆପଣଙ୍କର ଢେର ଶ୍ରଦ୍ଧା ଥିଲା । 'ମୋଗଲ ତାମସା' ଉପରେ ଗବେଷଣାଠାରୁ ଜଗନ୍ନାଥ ପାଣି ଜୟନ୍ତୀ ପର୍ଯ୍ୟନ୍ତ ତାହା ପରିବ୍ୟାପ୍ତ ଥିଲା । ଥରେ ଜଣେ ଅଜ୍ଞାତ (ନାଁ ମନେପଡୁନି) ଲେଖକଙ୍କ ଜୟନ୍ତୀ ସଭାକୁ ଆପଣ ମୋତେ ଅତିଥି କରି ଭଦ୍ରଖ ଡାକିଥିଲେ । ମୁଁ ମୋ' ଝିଅ ଓ ନାତିଙ୍କୁ ଧରି ଯାଇଥିଲି । ସେ ଦିନ ଖାରବେଳ ସ୍ୱାଇଁ ମହାଶୟଙ୍କର ଆସିବାରେ ବିଳମ୍ବ ହେଲା । ତେଣୁ ମୋତେ ଶୀଘ୍ର ଖାଇବାକୁ ଦେଇ କେମିତି ବିଦା କରିବେ ଆପଣ ସେଥିପାଇଁ ବ୍ୟସ୍ତ ହୋଇପଡୁଥିଲେ । ଆପଣଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ସଭାଟି ଖୁବ୍ ଶୃଙ୍ଖଳାର ସହିତ ଶେଷ ହୋଇଥିଲା । ଅନ୍ୟାନ୍ୟ ଆୟୋଜକଙ୍କଠାରୁ ଆପଣଙ୍କର ସ୍ୱତନ୍ତ୍ରତା ସେଦିନ ବାରି ହୋଇପଡୁଥିଲା ।

ଶୁଣିଛି ବେହେରା ସାର୍ ନିଜ ଗବେଷଣା ଛାତ୍ରଛାତ୍ରୀଙ୍କୁ ଖଟାନ୍ତି ଓ ସେମାନଙ୍କ ସହିତ ନିଜେ ଖଟନ୍ତି । ଆଜି ଆଉ ଏଭଳି ବିରଳ ଦିଗ୍‌ଦ୍ରଷ୍ଟା କାହାନ୍ତି ଯେ ? ଜୀବନରେ ଆପଣ ବହୁ ବାଧାବନ୍ଧନକୁ ଅତିକ୍ରମ କରିଛନ୍ତି । ଯୋଗ୍ୟ ସନ୍ତାନର ଅକାଳ ବିୟୋଗକୁ ଏକାକୀ ସହ୍ୟ କରିଛନ୍ତି । ସାର ଅନେକ ଥର ଯାଇଛି ଆପଣଙ୍କ ଘରକୁ । କେବେ ଗବେଷଣା ପରିଷଦର ବହୁମୂଲ୍ୟ ଗ୍ରନ୍ଥମାନ ବିଭାଗପାଇଁ ଓ ନିଜପାଇଁ ଆଣିବାକୁ ବି ଯାଇଛି । ଆପଣ ରିଫ୍ରେସର କ୍ଲାସ୍‌ରେ ଦେଇଥିବା ଭାଷଣର ସଂକ୍ଷିପ୍ତସାର (Synopsis) ମୋ ପାଖରେ ଏବେ ବି ଅଛି । ଚମତ୍କାର ଆପଣଙ୍କ ହସ୍ତାକ୍ଷର ଆଉ ବିଷୟଟିକୁ ବୁଝାଇବାର ଶୈଳୀ ମଧ୍ୟ ତା'ଠୁ ସୁନ୍ଦର । ବିଜୟ ସାର୍ (ବିଜୟ ଶତପଥୀ)ଙ୍କୁ ସବୁବେଳେ କହେ 'ଆପଣଙ୍କ ହସ ଶିଶୁର ହସ ଭଳି ଥାକଥାକିଆ ହସ' । ବିଭାଗରେ ଆପଣଙ୍କ କଥା ଆମେ ଅଧିକାଂଶ ସମୟରେ ପକାଉ । ସୁରଂଜନଙ୍କ ସହିତ ମଧ୍ୟ ଆପଣ ସଂପର୍କରେ ଆଲୋଚନା ହୁଏ । ଏଇ ତ ପ୍ରାୟ ଦେଢ଼ବର୍ଷ ହେବ ମୁଁ ମୋର ଆତ୍ମଜୀବନୀ 'ସଦିଚ୍ଛାର ସହସ୍ରଧାରା'ଟିଏ ଧରି ସୁରଂଜନଙ୍କ ସହିତ ଆପଣଙ୍କ ପାଖକୁ ଯାଇଥିଲି । ଆପଣ ବହିଟି ଧରି ଏପାଖ ସେପାଖ କଲେ । ଭାରି ସୁନ୍ଦର ହୋଇଛି କହିଲେ ଆଉ ପଚାରିଲେ "ତୁମକୁ କେତେଟଙ୍କା ଦେବି ବହି ବାବଦରେ" ମୁଁ

କହିଲି, "ନାଇଁସାର୍ ଆପଣଙ୍କ ଥାକରେ ରହିଲେ ମୋ ବହିର ମାନ ବଢ଼ିବ।" ଆପଣ କହିଲେ, "ଆଉ ତ ବେଶି ପଢ଼ି ପାରୁନି। ଦେଖିବି ! ତେବେ ଆମ 'ଏଷଣା'ରେ ଏହାର ରିଭ୍ୟୁଟିଏ ବାହାର କରିଦେବା।" ସୁରଂଜନଙ୍କୁ କହିଲେ ରିଭ୍ୟୁଟିଏ ଲେଖି ଦେବାକୁ। "ସାର୍, ମୋ ବହି ରିଭ୍ୟୁରୁ ତ ହୋଇନି। ଆପଣ ଚାଲିଗଲେ କେମିତି ?

ମୋ ବହି ସିନା ଆପଣଙ୍କ ଥାକରେ ଥିବ, ଆପଣ କିନ୍ତୁ ମୋ ପଢ଼ାଟେବୁଲ୍‌ରେ ଅଛନ୍ତି। ଆପଣଙ୍କ ବହିକୁ ହଟାଇବାର ଯୋଗ୍ୟତା ଆମ କାହାର ହୋଇନାହିଁ। ସାର୍, ଆପଣ ଆମମାନଙ୍କ ହୃଦୟରେ ସେହି ଚେତନାର ଶକ୍ତି ଭାବେ ଅବଶ୍ୟ ବଞ୍ଚି ରହିବେ।

ସାର୍, ଆପଣ ଅଗଣିତ ଛାତ୍ରଛାତ୍ରୀଙ୍କର ଗୁରୁ। ପୁଣି ଗୁରୁଙ୍କର ଗୁରୁ। କୁହାଯାଏ-କଳା ହିଁ କାଳକୁ ଜୟ କରିପାରେ। ଆପଣ ସେହିପରି ସମୟ ବିପକ୍ଷରେ ଠିଆ ହେବାର ଶକ୍ତି ରଖିଛନ୍ତି, ଆଉ ଅନେକଙ୍କୁ ସେହି ସାମର୍ଥ୍ୟ ଅକାତରେ ବିତରଣ କରିଛନ୍ତି।

ହଁ ସାର୍ ଆଉ ଗୋଟେ କଥା ମନେପଡୁଛି। ଦାଶରଥି ସାର୍ କିଛିଦିନ ଏକ ସାହିତ୍ୟ ଅନୁଷ୍ଠାନ କରିବାକୁ ଆଗ୍ରହ କରିଥିଲେ। ମୁଁ ଆଉ ପ୍ରଫେସର ଦୀପ୍ତିରଂଜନ ପଟ୍ଟନାୟକ ୨/୩ଥର ଭୁବନେଶ୍ୱରରୁ ସେଥିପାଇଁ ସାର୍‌ଙ୍କ ଆଦେଶରେ କଟକ ଯାଇଛୁ। ଆପଣ ଥରେ ଆସିଥିଲେ। କହିଥିଲେ ସଙ୍ଗଠନ ତିଆରି ବଡ଼ ଦୁରୂହ ବ୍ୟାପାର। ତେବେ ଯଦି ନୂତନ ସଂଗଠନ ହୁଏ ତେବେ ଆପଣ ନିଜର ଅଭିଜ୍ଞତାରୁ ସବୁ ସାର୍‌ଙ୍କୁ ଶିଖାଇ ଦେବେ। ସେ ଅନୁଷ୍ଠାନ ତ ହେଲାନି କିନ୍ତୁ ଜଣେ ଉତ୍ତମ ବନ୍ଧୁର ଆଶ୍ୱାସନା ମୋତେ ସେଦିନ ଖୁବ୍ ପ୍ରଭାବିତ କରିଥିଲା।

ଏଇଠୁ ରଖୁଛି ସାର୍। ଆପଣ ଏ ଚିଠି ପାଇବେନି ମୁଁ ଜାଣେ, ତେବେ କେମିତି ଲାଗୁଛି ଆପଣମାନେ ଗୋଟିକପରେ ଗୋଟିଏ ଆରପାରିକୁ ଚାଲିଗଲାପରେ ମଥା ଉପରୁ ଛାତ ହଜି ଯାଉଛି। ଆମେ ସବୁ ଛେଉଣ୍ଡ ହୋଇ ଯାଉଛୁ ଥରକୁ ଥର। ଆରପୁରରେ ଥାଇ ଆମକୁ ଅମୃତ ଦୃଷ୍ଟିରେ ଅନାଇ ଥାଆନ୍ତୁ।



ସହିଦ ନଗର, ଭୁବନେଶ୍ୱର

# ସ୍ମୃତି ଅର୍ଘ୍ୟ

## ରମେଶ ଚନ୍ଦ୍ର ବିଶ୍ୱାଳ

ପ୍ରଫେସର କୃଷ୍ଣଚରଣ ବେହେରା, ଯଥାର୍ଥରେ ଜଣେ ସୁ-ଶିକ୍ଷକ ଓ ଆଦର୍ଶ ଗବେଷକ ଥିଲେ । ବହୁ ପ୍ରତିଭାର ଅଧିକାରୀ ଡକ୍ଟର ବେହେରା ଜଣେ କବି, କଥାକାର, ସମାଲୋଚକ, ଗବେଷକ, ସଂକଳକ, ସାରସ୍ୱତ ସଙ୍ଗଠକ । ସମ୍ପାଦକ, ସନ୍ଦର୍ଭ ଆଦିର ତତ୍ତ୍ୱାବଧାରକ ଭାବରେ ନିଜ ପ୍ରତିଭାର ସ୍ୱାକ୍ଷର ଢେର୍ ଆଗରୁ ସୃଷ୍ଟି କରିପାରିଛନ୍ତି ।

ସାହିତ୍ୟର ଯେଉଁ ବିଭାଗରେ ସେ ହାତ ଦେଇଛନ୍ତି, ସବୁଥିରେ ସେ ସାଫଲ୍ୟ ବିମଣ୍ଡିତ ହୋଇଛନ୍ତି । ଓଡିଶାର ବିଭିନ୍ନ ମର୍ଯ୍ୟାଦା ଜନକ ସାରସ୍ୱତ ସଙ୍ଗଠନ ତାଙ୍କୁ ସମ୍ବର୍ଦ୍ଧିତ କରି ଧନ୍ୟ ହୋଇଛନ୍ତି ।

ସେ ଥିଲେ ଉଦାରମନା ଓ ଉଚ୍ଚମନା, ସ୍ନେହବତ୍ସଳ । ତାଙ୍କ ସଂସ୍ପର୍ଶରେ ଆସିଥିବା ଯେ କେହି ଅନୁଭବ କରିଥିବେ ।

ସେ ମୋର ଓ ଧର୍ମପତ୍ନୀ(ସରୋଜିନୀଙ୍କର) ସ୍ନାତକୋତ୍ତର ଶ୍ରେଣୀର ଶିକ୍ଷା ଗୁରୁ ଥିଲେ । ପରେ ମୁଁ ତାଙ୍କ ଅଧୀନରେ ମୋ ଗବେଷଣା କାର୍ଯ୍ୟ କଲି । ଛୋଟିଆ କଥାଟିଏ, ଆମ ଅଧ୍ୟୟନ କାଳରେ ଗୋପାଳବଲ୍ଲଭଙ୍କ ଏକ ଗ୍ରନ୍ଥର ସମ୍ପାଦନା ସାର୍ କରିଥିଲେ । ସେ କାମରେ ସରୋଜିନୀ କିଛି ସହଯୋଗ କରିଥିଲେ । ଯାହା ସାର୍ ଗ୍ରନ୍ଥର ମୁଖବନ୍ଧରେ ସ୍ପଷ୍ଟ ଭାବରେ ଉଲ୍ଲେଖ କରିଛନ୍ତି । ଗବେଷକ କୃଷ୍ଣଚରଣ ଶେଷ ଯାବତ୍ ଗବେଷଣା ଓ ତା'ର ମୁଖପତ୍ର 'ଏଷଣା' ପ୍ରତି ସମର୍ପିତ ଥିଲେ । ଏ ଦୁଇଟି ସାମାନ୍ୟ ଅବହେଳା ନ ସହନ୍ତୁ ସେଥିପ୍ରତି ସେ ଯତ୍ନଶୀଳ ଥିଲେ । ଗବେଷଣା ପରିଷଦ ତରଫରୁ କେତେକ ଉପାଦେୟ ଗ୍ରନ୍ଥର ପ୍ରକାଶ ଦିଗରେ ଅଗ୍ରଣୀ ଭୂମିକା ନିର୍ବାହ କରିଥିଲେ ।

ଗବେଷଣା ତତ୍ତ୍ୱାବଧାରକ ଭାବରେ ସେ ଯେଉଁ ନିଷ୍ଠା ଓ ଆତ୍ମୀୟତା ପ୍ରକାଶ କରୁଥିଲେ ତାଙ୍କ ଗବେଷକ ଛାତ୍ରମାନେ ସହଜରେ ଅନୁଭବ କରିଥିବେ ।

ତାଙ୍କର ଶେଷ ଜନ୍ମଦିନ ପାଳନ ଅବକାଶରେ ଆନନ୍ଦର ସହ ମୋର ଗଳ୍ପ ସଂକଳନ 'ଅନନ୍ୟ ସଂଗୀତ'ର ପାଠକାର୍ପଣ କରିଥିଲେ । ମୋର ରାସ୍ତା ଦୁର୍ଘଟଣା ପରେ ଚିତ୍ତବାବୁ (ଡକ୍ଟର ଚିତ୍ତରଂଜନ ବେହେରା)ଙ୍କ ମୋଟର ସାଇକେଲରେ ବସି ଓଲଟପୁର ଠାରେ ମୋତେ ଦେଖା କରିଥିଲେ । ମୋ ପାଇଁ ସେ ପିତୃତୁଲ୍ୟ ଥିଲେ । ଯେବେ ଯାହା କିହିଛି କେଉଁଥିରେ ନାଁ ନଥିଲା । ତାଙ୍କ ତିରୋଧାନର ଅଳ୍ପଦିନ ପୂର୍ବରୁ କୌଣସି ଏକ ବ୍ୟକ୍ତିଗତ ସମସ୍ୟା ବିଷୟରେ କହୁ କହୁ କହି ହୋଇଗଲା । ସେ ତାଙ୍କର ଆଉ ଜଣେ ପ୍ରିୟଜନଙ୍କୁ କାମରେ ସହଯୋଗ କରିବାକୁ ତତ୍‌କ୍ଷଣାତ୍ କହିଲେ ।

ଓଡିଶାର ସାହିତ୍ୟିକ, ସାହିତ୍ୟପ୍ରେମୀ, ଗବେଷକ, ସାହିତ୍ୟର ଅଧ୍ୟାପକ ଓ ପାଠକ ସମାଜ ତାଙ୍କର ପ୍ରିୟ କୃଷ୍ଣ ଚରଣଙ୍କୁ ହରାଇଲେ । ଯାହା ଅପୂରଣୀୟ କ୍ଷତି ।

ମୋ ପାଇଁ କ୍ଷତ ଉପରେ ଆଉ ଏକ କ୍ଷତ ସୃଷ୍ଟି ହେଲା । ଯାହା ମୃତ୍ୟୁ ଯାବତ୍ ସେମିତି ରହିଥିବ ।

ସାର୍‌ଙ୍କ ପବିତ୍ର ଆତ୍ମାର ସଦ୍‌ଗତି କାମନା କରୁଛି ।



ପ୍ରାକ୍ତନ ଅଧ୍ୟକ୍ଷ, ଏସ୍.ଜି. କଲେଜ,
କନିକାପଡା, ଯାଜପୁର

# ଶ୍ରଦ୍ଧାଞ୍ଜଳି

## ତରୁଣ କୁମାର ସାହୁ

ପ୍ରଫେସର କୃଷ୍ଣଚରଣ ବେହେରାଙ୍କ ସମ୍ବନ୍ଧରେ ଭଲ ଭାବରେ ଜାଣିବାକୁ ପାଇଲି ଯେତେବେଳେ ମୁଁ କେନ୍ଦ୍ରାପଡ଼ା କଲେଜରେ ଇଂରାଜୀ ଅଧ୍ୟାପକ ଥିଲି ଏବଂ ମୋର ପ୍ରିୟ ଛାତ୍ର ପ୍ରକାଶ ବି.ଏ. ପାସ୍ କରି ଏମ୍.ଏ. (ଓଡ଼ିଆ) ପଢ଼ିବା ପାଇଁ ରେଭେନ୍ସା କଲେଜରେ ଏଡ଼ମିଶନ୍ ନେଲା । କଥା ପ୍ରସଙ୍ଗରେ ଡକ୍ଟର ବେହେରାଙ୍କ ପାଠ ପଢ଼ାଇବା ଶୈଳୀଠୁଁ ଆରମ୍ଭ କରି ତାଙ୍କର ପାଣ୍ଡିତ୍ୟ ସମ୍ବନ୍ଧରେ ପ୍ରକାଶ (ବର୍ତ୍ତମାନ ଚାନ୍ଦୋଳ କଲେଜର ଅଧ୍ୟାପକ) ଅନର୍ଗଳ ଗପିଥିଲା ମୋ ଆଗରେ ସେଇ ସମୟରେ । ଅବଶ୍ୟ 'ବେଦୀ' ଗପ ଲେଖି ଚହଳ ସୃଷ୍ଟି କରିଥିବା କୃଷ୍ଣଚରଣ ବେହେରାଙ୍କୁ ଊଣା ଅଧିକେ ସବୁ ଓଡ଼ିଆ ସାହିତ୍ୟର ପାଠକ ଜାଣିଥିଲେ । ମୁଁ ମଧ୍ୟ । ତେବେ ତାଙ୍କର ପାଣ୍ଡିତ୍ୟ ଓ ଛାତ୍ର ବତ୍ସଳତା ସମ୍ବନ୍ଧରେ ସମ୍ୟକ ଜ୍ଞାନ ପାଇଥିଲି ପ୍ରକାଶ ପାଖରୁ ।

ମୁଁ ଯେତେବେଳେ ସାଲେପୁର କଲେଜରେ ଅଧ୍ୟାପନା କରୁଥିଲି, ସେହି ସମୟରେ ଥରେ ଡକ୍ଟର ବିଜୟାନନ୍ଦ ସିଂହଙ୍କ ସହ କୃଷ୍ଣସାର୍‌ଙ୍କ କଟକସ୍ଥିତ ବାସଭବନକୁ ଯାଇଥିଲି ଏବଂ ଅଳ୍ପ ସମୟର ବାର୍ତ୍ତାଳପ ପରେ ସାର୍ ମୋତେ 'ଏଷଣା'ର ସଭ୍ୟ ହେବା କଥା କହିଥିଲେ ଏବଂ ପରେ ପରେ ମୁଁ 'ଏଷଣା'ର ସଭ୍ୟ ହୋଇଥିଲି । 'ଏଷଣା' ଓଡ଼ିଆ ଭାଷାର ଏକ ଉଚ୍ଚମାନର ଗବେଷଣାଧର୍ମୀ ସାହିତ୍ୟ ପତ୍ରିକା । ଗବେଷଣା ଜଗତକୁ ଏଇ ପତ୍ରିକାର ଅବଦାନ ଅତୁଳନୀୟ । ପ୍ରକୃତରେ ଡକ୍ଟର କୃଷ୍ଣଚରଣ ବେହେରା ଜଣେ ଛାତ୍ରବତ୍ସଳ ଅଧ୍ୟାପକ, ଗବେଷଣା ଓ ସାହିତ୍ୟ ସର୍ଜନାରେ ରୁଚି ରଖୁଥିବା ଜଣେ ବିଦ୍ୱାନ୍-ବୁଦ୍ଧିଜୀବୀ, ଜଣେ ଉଚ୍ଚକୋଟୀର କଥାକାର-ସମାଲୋଚକ ଥିଲେ । ତାଙ୍କର ଅବର୍ତ୍ତମାନ ଖବର ଗଭୀର ଭାବରେ ମୋତେ ଚକିତ ଓ ମର୍ମାହତ କରିଛି । ସେହି ପୁଣ୍ୟ ଆତ୍ମା ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ବାଢ଼ିବା ସହିତ ତାଙ୍କର ଆତ୍ମାର ସଦ୍‌ଗତି ନିମନ୍ତେ ପ୍ରଭୁ ଜଗନ୍ନାଥଙ୍କ ନିକଟରେ ପ୍ରାର୍ଥନା କରୁଛି । ●

ଭାଷାକୋଷ ଲେନ୍, ଚାନ୍ଦିନୀ ଚୌକ, କଟକ - ୨

# ଭିନ୍ନ କୋଣାର୍କ କଥା

**ଅସିତ ମହାନ୍ତି**

୧୯୭୭ରୁ ୨୦୧୭- ଦୀର୍ଘ ଚାଳିଶ ବର୍ଷ । ଏ ଚାଳିଶ ବର୍ଷରୁ ପ୍ରଥମ ଦୁଇବର୍ଷ ରେଭେନ୍‌ସା କଲେଜରେ ଛାତ୍ର ଭାବରେ ଏବଂ ବାକି ୩୮ ବର୍ଷ ଓଡ଼ିଆ ଗବେଷଣା ପରିଷଦର ସଦସ୍ୟ ଓ ଏବେ କାର୍ଯ୍ୟନିର୍ବାହୀ କମିଟି ସଭ୍ୟ ଭାବରେ । ସଂକ୍ଷେପରେ ଏତିକି ହିଁ କୃଷ୍ଣ ସାର୍‌ଙ୍କ ସହ ସଂପର୍କର ମୁଖ୍ୟସୂତ୍ର ।

ପୋଷାକ ସାଦାସିଧା ଓ ସରଳ । ମୁଖ୍ୟତଃ କଳା ଫୁଲପ୍ୟାଣ୍ଟ ଓ ଇନ୍‌କରା ଧଳା ଫୁଲ୍‌ସାର୍ଟ । ଆଖିରେ ଚଷମା । ତାଙ୍କ ପାଠପଢ଼ା ଭିତରେ ଆସୁଥିଲା 'ଫୁଲମଣି ଓ କରୁଣାର ବିବରଣ'ଠାରୁ 'ମୋଗଲ ତାମସା' ଓ 'କଟକ କଳା ବିକାଶ କେନ୍ଦ୍ର' ପର୍ଯ୍ୟନ୍ତ ଅନେକ କିଛି । ସେ କହୁଥିଲେ- ତୁମେମାନେ ଯଦି କଟକରେ ପଢ଼ି କଳା ବିକାଶ କେନ୍ଦ୍ର ନ ଦେଖିବ- ତେବେ ଓଡ଼ିଶାକୁ ଚିହ୍ନିବ କେମିତି ? ଯାଅ, ତାର ଉଚ୍ଚ ଉଚ୍ଚ ଖୁମ୍ବଗୁଡ଼ିକୁ ଦେଖ । ତା'ର ଇତିହାସକୁ ଜାଣ । ତା'ର ନିର୍ମାଣ ପଛରେ ଥିବା ତ୍ୟାଗ ଏବଂ ଓଡ଼ିଶାର କଳାସଂସ୍କୃତି ପ୍ରତି ଥିବା ତା'ର ଅବଦାନକୁ ବୁଝ !

ଏମିତି ଥିଲେ ସେ । ପୁଣି 'ଲିବିଡ଼ୋ' ଶବ୍ଦର ଅର୍ଥ ବୁଝାଇବାକୁ ଯାଇ ସ୍ନାତକୋତ୍ତର ଶ୍ରେଣୀର ଛାତ୍ରଛାତ୍ରୀଙ୍କୁ ଏହା "ଲିଙ୍ଗ ଓ ଯୋନି ସଂପର୍କିତ ଲଟରପଟର କାର୍ଯ୍ୟ" କହିବାରେ ବି ତାଙ୍କର ସାମାନ୍ୟମାତ୍ର ସଂକୋଚ ନଥିଲା । ଯଦି ସେପରି କିଛି କୁଣ୍ଠା ଥାଆନ୍ତା- ତେବେ ସେ କ'ଣ ଷାଠିଏ ଦଶକରେ 'ବେଦୀ' ପରି ଗଳ୍ପ ଲେଖିଥାଆନ୍ତେ ବା 'ଅଶ୍ଳୀଳତା ବିପକ୍ଷରେ' ଶିରୋନାମରେ ସାହିତ୍ୟରେ ଅଶ୍ଳୀଳତା ନଥାଏ ବୋଲି ଦୃଢ଼ ମତ ଦେଇଥାଆନ୍ତେ !

ଏମ୍.ଏ. ଶ୍ରେଣୀର ଜଣେ ଛାତ୍ର ଭାବରେ କୃଷ୍ଣ ସାର୍‌ଙ୍କ ସହ ଯେତିକି ପରିଚିତି ଥିଲା- ତାହା ଅଧିକ ଦୃଢ଼ ହୋଇଥିଲା ଓଡ଼ିଆ ଗବେଷଣା ପରିଷଦର ସଦସ୍ୟ ହେବାପରେ ଏବଂ ଓଡ଼ିଶା ସାହିତ୍ୟ ଏକାଡେମୀର ରଜତ ଜୟନ୍ତୀ ଉତ୍ସବ ଅବସରରେ । ବିଶିଷ୍ଟ

କଥାଶିଳ୍ପୀ ସୁରେନ୍ଦ୍ର ମହାନ୍ତି ସେତେବେଳେ ଥାଆନ୍ତି ଏକାଡେମୀର ସଭାପତି । ରଜତ ଜୟନ୍ତୀ ପାଳନ ପାଇଁ ସେ ମୁଖ୍ୟମନ୍ତ୍ରୀ ଜାନକୀବାବୁଙ୍କଠାରୁ ୨୫ ଲକ୍ଷ ଟଙ୍କା ମଞ୍ଜୁର କରାଇ ନେଇଥାଆନ୍ତି । ମହାସମାରୋହରେ ଉତ୍ସବ ଆୟୋଜିତ ହେଉଥାଏ ଏବଂ ଏକ ସାହିତ୍ୟ ଉତ୍ସବ ପାଇଁ ୨୫ ଲକ୍ଷ ଟଙ୍କାର ସରକାରୀ ଅନୁଦାନ ଖବରକାଗଜରେ ଚର୍ଚ୍ଚାର ବିଷୟ ହୋଇଥାଏ ।

ସେହି ଉତ୍ସବରେ ଓଡ଼ିଆ ଗବେଷଣା ପରିଷଦ ଉପରେ ଓଡ଼ିଆ ସାହିତ୍ୟର ବିକାଶଧାରା ଦର୍ଶାଇବାର ଦାୟିତ୍ୱ ଥାଏ । ସେଥିପାଇଁ ବିଭିନ୍ନ ବିଭାଗରେ ଗୋଟିଏ ଗୋଟିଏ ଛୋଟ ପୁସ୍ତିକାର ଯୋଜନା କରାଯାଇଥାଏ । ମୋ ଉପରେ ପଡ଼ି ଥାଏ 'ଓଡ଼ିଆ ଗଳ୍ପର ବିକାଶଧାରା' । କାରଣ, କିଛି ବର୍ଷ ପୂର୍ବରୁ 'ଝଙ୍କାର'ରେ ମୋର 'ରାଧାନାଥଙ୍କ ଟିପାଖାତା' ଓ 'ଓଡ଼ିଆ ଗଳ୍ପର ଜନ୍ମ ଓ ଜୀବନ କଥା' ପରି ଦୀର୍ଘ ପ୍ରବନ୍ଧ ପ୍ରକାଶ ପାଇସାରିଥାଏ । କୃଷ୍ଣସାର୍‌ଙ୍କ ତତ୍ତ୍ୱାବଧାନରେ ତାହା ସେଦିନ ସୁଚାରୁ ରୂପେ ପ୍ରସ୍ତୁତ ହେଲା ଏବଂ ଓଡ଼ିଆ ଗବେଷଣା ପରିଷଦର ସଂକଳନ ଓ ସଂପାଦନାରେ ଓଡ଼ିଶା ସାହିତ୍ୟ ଏକାଡେମୀ ପକ୍ଷରୁ ଏକ ସ୍ୱତନ୍ତ୍ର ପୁସ୍ତକ ଭାବରେ ପ୍ରକାଶ ପାଇଲା ।

ଉଭୟ କୃଷ୍ଣ ସାର୍ ଓ ତାଙ୍କର ପଟ୍ଟଶିଷ୍ୟ କ୍ଷେତ୍ରବାସୀ(ନାୟକ) ସାର୍ ଓଡ଼ିଆ ସାହିତ୍ୟର ଭବିଷ୍ୟତ ପାଇଁ ନୂଆ ପିଢ଼ି ଉପରେ ପ୍ରଚୁର ଆସ୍ଥା ପୋଷଣ କରୁଥିଲେ । ତେଣୁ ସେ ଦୁହେଁ ସଦ୍ୟ ଓଡ଼ିଆରେ ସ୍ନାତକୋତ୍ତର ହୋଇଥିବା ଆମପରି ଛାତ୍ରଛାତ୍ରୀଙ୍କ ଉପରେ ଅନେକ ଦାୟିତ୍ୱ ଦେଉଥିଲେ । 'ଓଡ଼ିଆ କବିତାର ପ୍ରାୟୋଗିକ ଆଲୋଚନା' ପରି ଅଭିନବ ଗ୍ରନ୍ଥର ଯୋଜନା ମୁଖ୍ୟତଃ ଆମମାନଙ୍କୁ ନେଇ କ୍ଷେତ୍ରବାସୀ ସାର୍ କରିଥିଲେ । ତାଙ୍କର ଆଉ ଏକ ସ୍ୱପ୍ନର କୋଣାର୍କ ଥିଲା 'ସାହିତ୍ୟର ସୂତ୍ର' । ଛୋଟ ଛୋଟ ଶିଳାଖଣ୍ଡରେ କୋଣାର୍କ ମନ୍ଦିର ଗଢ଼ାହେବା ପରି, ବିଭିନ୍ନ ଶବ୍ଦକୁ ନେଇ ସାହିତ୍ୟ ଆଲୋଚନାର ଯୋଜନା ସେଥିରେ କରାଯାଇଥିଲା । ବାରଶହ ବଢ଼େଇଙ୍କ ପରି, ସେଥିରେ ମଧ୍ୟ ସେ ଆମମାନଙ୍କୁ ନିୟୋଜିତ କରିଥିଲେ । ସେ ନିଜେ ଥିଲେ ତାହାର ଶିବେଇ ସା'ନ୍ତରା । କୃଷ୍ଣସାର୍ ଥିଲେ ତାଙ୍କର ମାର୍ଗଦର୍ଶକ । ହେଲେ କ୍ଷେତ୍ରବାସୀ ସାର୍‌ଙ୍କର ଅକାଳ ବିୟୋଗ ଫଳରେ ସେଇ ଦୁଇ କାର୍ଯ୍ୟ ଏବଂ ସାହିତ୍ୟ ପାଇଁ ଅନେକ ସ୍ୱପ୍ନର ଯୋଜନା ଅସଂପୂର୍ଣ୍ଣ ରହିଗଲା ।

କୋଣାର୍କର ମୁଖ୍ୟ ମନ୍ଦିର ଓ ତା'ର ମୁଖଶାଳା ବିଷୟରେ ଆମେ ଜାଣୁ ଯେ ଏବେ ମୂଳ ମନ୍ଦିରଟି ନାହିଁ; କେବଳ ମୁଖଶାଳାଟି ଅଛି । କିନ୍ତୁ କ୍ଷେତ୍ରବାସୀ ସାର୍ ଓ

କୃଷ୍ଣ ସାର୍‌ଙ୍କୁ ଯଦି ତା' ସହ ତୁଳନା କରାଯାଏ- ତେବେ ଆମେ ଗୋଟିଏ ଭିନ୍ନ କୋଣାର୍କ ଦେଖୁ । ସେହି କୋଣାର୍କର ମୂଳ ମନ୍ଦିର ଥିଲେ କୃଷ୍ଣ ସାର୍ ଓ ତାହାର ମୁଖଶାଳା ଥିଲେ କ୍ଷେତ୍ରବାସୀ ସାର୍ । କିନ୍ତୁ କ୍ଷେତ୍ରବାସୀ ସାର୍ ଆଗ ଗଲେ । ତେଣୁ ମୁଖଶାଳାଟି ଆଗ ଭାଙ୍ଗି ଯାଇଥିଲା । ଆଜି ଦୀର୍ଘ ୨୧ ବର୍ଷ ପରେ କୃଷ୍ଣ ସାର୍‌ଙ୍କ ବିୟୋଗ ସହିତ ମୂଳ ମନ୍ଦିରଟି ଭାଙ୍ଗିଗଲା ।

ତ୍ରୟୋଦଶ ଶତାବ୍ଦୀର କୋଣାର୍କ ଆଜି ଜରାଜୀର୍ଣ୍ଣ । ତେଣୁ କେହି କେହି ଏବେ ନୂଆ କୋଣାର୍କ ଗଢ଼ିବାର କଥା କହୁଛନ୍ତି । ଆଉ କେହି କେହି, କୋଣାର୍କ ନୁହେ- ନୂଆ ଏକ ସୂର୍ଯ୍ୟମନ୍ଦିରର ସ୍ୱପ୍ନ ବି ଦେଖୁଛନ୍ତି । କିନ୍ତୁ ପ୍ରଥମେ କ୍ଷେତ୍ରବାସୀ ସାର୍ ଓ ତାହାର ପ୍ରାୟ ଦୁଇ ଦଶନ୍ଧି ପରେ କୃଷ୍ଣ ସାର୍‌ଙ୍କ ବିୟୋଗ ପରେ, ଆଜି 'ଓଡ଼ିଆ ଗବେଷଣା ପରିଷଦ' ଓ ତା'ର ଷାଣ୍ମାସିକ ପତ୍ରିକା 'ଏଷଣା'କୁ ନୂଆ କରି ଗଢ଼ିବାର ଦାୟିତ୍ୱ ଆମ ସମସ୍ତଙ୍କ ଉପରେ ପଡ଼ିଛି । ଆଶା, ଦୁଇ ସ୍ୱର୍ଗତ ସାର୍ ସେପୁରରେ ଥାଇ ଆମ୍ଭମାନଙ୍କୁ ଏ ଦିଗରେ ଶୁଭାଶିଷ ଦେବେ ।



# କ୍ଷମା ପ୍ରାର୍ଥନା

ବିଜୟିନୀ ସିଂହଦେଓ

ନିରବଚ୍ଛିନ୍ନ ସାରସ୍ୱତ ସାଧକ ଅଧ୍ୟାପକ କୃଷ୍ଣଚରଣ ବେହେରାଙ୍କ ବିୟୋଗରେ ଏକ ଶ୍ରଦ୍ଧାଞ୍ଜଳି ଲେଖିବାକୁ ବାର୍ତ୍ତା ପାଇ କ'ଣ ଲେଖିବି ସ୍ଥିର କରିପାରିଲି ନାହିଁ। ସାର୍‌ଙ୍କ ବିଷୟରେ ଲେଖିବାକୁ କଥା ଅସରନ୍ତି । ବ୍ୟକ୍ତିଗତ ସ୍ନେହ ଶ୍ରଦ୍ଧାଠାରୁ ଆରମ୍ଭ କରି ଲେଖାଲେଖି ଦିଗରେ ପ୍ରେରଣା, ପ୍ରୋତ୍ସାହନ, ସହଯୋଗିତା ଯେ ଆଉ ମିଳିବ ନାହିଁ ଭାବିଲେ ଶୂନ୍ୟ ଲାଗୁଛି ।

ସାର୍‌ଙ୍କ ସହ ପରିଚୟ ୧୯୮୩ ମସିହାରୁ ୰କ୍ଷେତ୍ରବାସୀ ନାୟକଙ୍କ ମାଧ୍ୟମରେ । ଉଭୟଙ୍କ ଜୀବନର ବ୍ରତ ଏକନିଷ୍ଠ ସାରସ୍ୱତ ସାଧନା । ସାର୍ ପ୍ରଫେସରପଡ଼ାରେ ରହୁଥାନ୍ତି । ମୁଁ ନୂଆକରି ପ୍ରଫେସର ପଡ଼ାରୁ କଲ୍ୟାଣୀନଗର ଆମ ଘରକୁ ଆସିଥାଏ । ପରେ ସାର କଲ୍ୟାଣୀନଗରକୁ ସ୍ଥାୟୀ ଭାବେ ଆସିବା ପରେ ସଂପର୍କ ଅଧିକ ହେଲା । ସାର୍‌ଙ୍କ ଘର ପଛପାଖକୁ ଆମ ଘର ପଛପାଖ ଲାଗିଛି । କେବଳ ସାହିତ୍ୟିକ ସଂପର୍କ ନୁହେଁ ପାରିବାରିକ ସଂପର୍କର ଏକ ସେତୁ ଆପେ ଆପେ ଗଢ଼ି ଉଠିଥିଲା । ଯେ କୌଣସି ସମୟରେ ନିଜ ଦ୍ୱନ୍ଦ୍ୱ, ସନ୍ଦେହ ମନରେ ଆସିଲେ ତାକୁ ଦୂର କରିବା ପାଇଁ ସାରଙ୍କ ପାଖକୁ ଯିବାରେ କୌଣସି ନିର୍ଦ୍ଦିଷ୍ଟ ସମୟ ନିର୍ଘଣ୍ଟ ନ ଥିଲା । ଯେତେବେଳେ ଇଚ୍ଛା ସେତେବେଳେ ସାରଙ୍କ ପାଖରେ ପହଞ୍ଚି ହେଉଥିଲା ।

ଡ. ବେହେରାଙ୍କ ପତ୍ନୀ ଶ୍ରୀମତୀ ବେହେରା ଥିଲାବେଳେ ପ୍ରତିବର୍ଷ ବିଭିନ୍ନ ପୂଜାସଂଖ୍ୟା, ବଙ୍ଗଳା ପତ୍ରିକା ବହିପତ୍ର ଆଦାନ ପ୍ରଦାନ ସହ କିଛି ଆଲୋଚନା ବି ହେଉଥିଲା । ତାଙ୍କର ପଠନ ପରିସର ଥିଲା ସୁବିସ୍ତୃତ । ତାଙ୍କ ପାଖରେ ଯେତେ ସମୟ ବସିଲେ ବି ସବୁବେଳେ ତାଙ୍କର ସଶ୍ରଦ୍ଧ ଅନୁରୋଧ ଓ ଅଭିଯୋଗ ଥାଏ, "ଏତେ ଶୀଘ୍ର ଚାଲିଯିବ ? ପୁଣି କେବେ ଆସିବ ? ସମୟ ପାଇଲେ ଚାଲି ଆସିବ ।"

'ଏଷଣା'ର କାର୍ଯ୍ୟକ୍ରମରେ ଦିଲ୍ଲୀରେ ସାର୍‌ଙ୍କ ସାନପୁଅ ଟୁଟୁ (ବୈଦେଶିକ

ସେବା, ଆଇ.ଏଫ୍.ଏସ୍.) ଘରେ ଦୁଇଦିନର ରହଣି ଭୁଲିବାର ନୁହେଁ । ଟୁଟୁ, ବୁଇ, ବୁଲବୁଲଙ୍କର ସ୍ନେହ, ଯତ୍ନ, ଆତିଥ୍ୟରେ ସାମାନ୍ୟତମ ହେଳା ନଥିଲେ ବି ସାର୍ ସବୁବେଳେ ଆମ ସୁବିଧା ଅସୁବିଧା ପ୍ରତି ଦୃଷ୍ଟି ରଖିଥାନ୍ତି । ଲାବଣ୍ୟଅପା ଓ ମୁଁ ନିଜଘରେ ରହିବା ପରି ରହିଥିଲୁ । ଆସିଲାବେଳେ ମୁଁ ଟୁଟୁ ଓ ବୁଇଙ୍କୁ କହିଲି, "ମୋତେ ମୋ ପୁଅଘରେ ରହିଲା ପରି ସହଜ ସ୍ୱାଭାବିକ ଲାଗୁଥିଲା ।" ଟୁଟୁ ତତକ୍ଷଣାତ୍ କହିଥିଲା, "ଯେତେବେଳେ ଇଚ୍ଛା ହବ ମାଉସୀ ଚାଲି ଆସିବେ । ମୁଁ ଷ୍ଟେସନ କି ଏୟାରପୋର୍ଟ ଯାଇ ନେଇ ଆସିବି । ପୁଅ ଘର ପରି ନୁହେଁ, ପୁଅ ଘର ବୋଲି ଭାବିବେ ।" ଆଜି ତା'ର ସେ ଆନ୍ତରିକ ସ୍ନେହପୂର୍ଣ୍ଣ କଥା ମନେପଡ଼ିଲେ ଲୁହ ରହୁ ନାହିଁ । ସବୁ ଭଲ ଆତ୍ମାମାନଙ୍କୁ ଭଗବାନ ବୋଧେ ପାଖକୁ ନେଇଯାନ୍ତି । କାଳ ଅକାଳ ଭାବନ୍ତି ନାହିଁ ।

ଅନ୍ୟ ଏକ ଏକ୍ଷଣା କାର୍ଯ୍ୟକ୍ରମ ରାଉରକେଲାରେ ଅନୁଷ୍ଠିତ ହୋଇଥିଲା । ଅନେକ ସ୍ଥାନରେ ଏକ୍ଷଣାର ସାହିତ୍ୟିକ ସମ୍ମିଳନୀ ସଂଘଟିତ ହୋଇଛି । ସୌଭାଗ୍ୟ କ୍ରମେ ଏ ଦୁଇଟି ସ୍ଥାନରେ ଯୋଗ ଦେବାର ସୁଯୋଗ ପାଇଥିଲି । ଉଭୟ କ୍ଷେତ୍ରରେ ସ୍ଥାନୀୟ ବିଶିଷ୍ଟ ସାହିତ୍ୟିକମାନଙ୍କର ସମାବେଶ ସମ୍ମିଳନୀଗୁଡ଼ିକୁ ଋଦ୍ଧିମନ୍ତ କରିଥିଲା । ଏସବୁ ଦିଗରେ ସାରଙ୍କର ଉଦ୍ୟମ ହିଁ ସର୍ବଦା ପରିଲକ୍ଷିତ ହୋଇଥାଏ । ଉଭୟ ସମ୍ମିଳନୀରେ ଆମେ ଏକ୍ଷଣାର ସଦସ୍ୟମାନେ ଗୋଟିଏ ପରିବାର ପରି ଆନନ୍ଦ ଉଲ୍ଲାସରେ ସମୟ ବିତେଇଥିଲୁ ।

ଆଉ ଗୋଟିଏ ଘଟଣା ଉଲ୍ଲେଖ ନ କରି ରହିପାରୁ ନାହିଁ । ଥରେ ମୁଁ ଦଶହରାରେ ପୁଅ ପାଖରେ ରହି ଫେରିଥାଏ । ସାରଙ୍କୁ ଦେଖା କରିବାକୁ ଗଲାବେଳେ ପରିବାର ସମସ୍ତଙ୍କ କୁଶଳାଦି ସମାଚାର ପଚାରିବା ପରେ ମତେ ପଚାରିଲେ, "ଖାଲି ବୁଲାବୁଲି କରି ଚାଲି ଆସିଲେ ନା କିଛି ଲେଖାଲେଖି କଲେ ?" ଲେଖାପଢ଼ା ହିଁ ସାରଙ୍କର ମୂଳମନ୍ତ୍ର । ଯୋଗକୁ ସେଥର ଗପଟିଏ ଲେଖିଥିଲି । ସାରଙ୍କୁ ସେ କଥା କହିଲି । ସାର କହିଲେ, "ଘରୁ ଯାଇ ଗପଟି ନେଇ ଆସନ୍ତୁ ପଢ଼ିବା ।" ସେତେବଳେ ରାତି ନଅଟା ପାଖାପାଖି । ଲେଖାଲେଖି କଥା ପଡ଼ିଲେ ସାର ସମୟକୁ ପ୍ରାଧାନ୍ୟ ଦିଅନ୍ତି ନାହିଁ । ମୁଁ ଯାଇ ଘରୁ ଗପଟି ଆଣିଲି ଓ ପଢ଼ି ଶୁଣେଇଲି । ଗପଟି ଶୁଣିସାରି ସାର ଟିକିଏ ରହି କହିଲେ, "ମୋ ଆଖିରେ ସହଜରେ ଲୁହ ଆସେନା । ଆପଣଙ୍କ ଗପଟି ଶୁଣି ମୋ ଆଖିରେ ଲୁହ ଭରିଯାଉଛି । କେତେକଥା ମୋର ମନେପଡୁଛି ।

ବିଶେଷକରି ମୋ ସ୍ତ୍ରୀଙ୍କ କଥା । ସୁନ୍ଦର ହେଇଛି ଗପଟି ।" ସାରଙ୍କର ଏ ମନ୍ତବ୍ୟ ମୋ ଜୀବନର ଏକ ବିରଳ ପୁରସ୍କାର ଓ ଆତ୍ମତୃପ୍ତି । ପରେ ଗପଟି 'ସୁଚରିତା'ରେ ସ୍ଥାନିତା ହୋଇଥିଲା ।

ସାର ଜଣେ ସାର୍ଥକ ଓ ସଫଳ ବ୍ୟକ୍ତି । ସାରସ୍ୱତ ସାଧନା ପ୍ରତି ନିବେଦିତ ପ୍ରାଣ । କେତେକେତେ ସାହିତ୍ୟିକ ତାଙ୍କ ଅଧୀନରେ ଉପାଧି ଲାଭ କରିବାରେ ସମର୍ଥ ହୋଇଛନ୍ତି । କେବଳ ମାତ୍ର ଗୋଟିଏ କ୍ଷେତ୍ରରେ ସାର ବୋଧହୁଏ କୃତକାର୍ଯ୍ୟ ହୋଇପାରି ନାହାନ୍ତି । ଆଜି ତାହା ସ୍ୱୀକାର କରିବାରେ ମୋର ତିଳେ ହେଲେ ଦ୍ୱିଧା ନାହିଁ । ଦୁଇ ଦୁଇଥର ଚେଷ୍ଟା କରି ମଧ ମୁଁ ସାରଙ୍କ ପାଖରେ ପିଏଚ.ଡି ପାଇଁ ଗବେଷଣା କରିପାରିଲି ନାହିଁ । ମୋର ବ୍ୟକ୍ତିଗତ କାରଣରୁ ତାହା କାର୍ଯ୍ୟକାରୀ ହୋଇପାରିଲା ନାହିଁ । ମୋର ଅପାରଗତା, ଅନିୟମିତତା, ଆଳସ୍ୟ ହୁଏତ ବାଧକ ସାଜିଲା । ମୋ ଜୀବନରେ ତାହା ଏକ ବିରାଟ ଅବସୋସ । ସାରଙ୍କ ପରି ବଳିଷ୍ଠ ତତ୍ତ୍ୱାବଧାନରେ ରହି ମଧ ମୁଁ ସଫଳକାମୀ ହୋଇପାରିଲି ନାହିଁ । ସାର, କିନ୍ତୁ ହାଲ ଛାଡ଼ି ନଥିଲେ । ସାହିତ୍ୟର ଅନ୍ୟାନ୍ୟ କ୍ଷେତ୍ରରେ ମୋ ଦ୍ୱାରା କିଛି ହୋଇପାରିବ ବୋଲି ସେ ବିଶ୍ୱାସ କରୁଥିଲେ । ଶତାଧିକ ବର୍ଷତଳେ ଗୋବିନ୍ଦଚନ୍ଦ୍ର ରଥଙ୍କ ଦ୍ୱାରା ଲିଖିତ 'କରତାଳି' ପୁସ୍ତକକୁ ମୋ'ଦ୍ୱାରା ସଂପାଦିତ କରାଇଥିଲେ । ଅନେକ ପୁସ୍ତକର ରିଭିଉ କରାଇ ଯତ୍‌କିଞ୍ଚିତ୍ ସାହିତ୍ୟସେବାର ସୁଯୋଗ ଦେଇଥିଲେ । ସବୁବେଳେ କିଛି ନା କିଛି ଲେଖିବାକୁ ଉତ୍ସାହିତ କରୁଥିଲେ ।

କେତେ ସ୍ମୃତି, କେତେ କଥା । ସବୁ ମନେପଡୁ ନାହିଁ । କିନ୍ତୁ ସାର୍‌ଙ୍କର ତଥା ତାଙ୍କ ପରିବାରର ଅମାୟିକ ସ୍ନେହ, ନିର୍ମଳ ଆତ୍ମୀୟତା କେବେବି ଭୁଲି ହେବ ନାହିଁ ।

ଆଜି ପୂଜ୍ୟ ସାରଙ୍କୁ ଶ୍ରଦ୍ଧାଞ୍ଜଳି ଜ୍ଞାପନ କାଳରେ ସେ ମହାନ ଆତ୍ମାର ସଦ୍‌ଗତି କାମନା କରିବା ସହିତ ବିନମ୍ର କ୍ଷମା ପ୍ରାର୍ଥନା କରୁଛି ।



କଲ୍ୟାଣୀନଗର, କଟକ

# ସାହିତ୍ୟର ସ୍ୱାଭିମାନ : କୃଷ୍ଣଚରଣ

ଅପର୍ଣ୍ଣା ମହାନ୍ତି

ସାର୍ (ପ୍ରଫେସର ଡକ୍ଟର କୃଷ୍ଣଚରଣ ବେହେରା)ଙ୍କ ସହିତ ମୋର ପ୍ରଥମ ସାକ୍ଷାତ୍ ହୁଏ ୧୯୮୮ ମସିହାରେ । ମୋର ପିଏଚ୍.ଡି.ର ମୌଖିକ ପରୀକ୍ଷା ଥାଏ । ସାର୍× ଏବଂ ପ୍ରଫେସର ଶରତ ଚନ୍ଦ୍ର ପ୍ରଧାନ ମୋର ପରୀକ୍ଷକ ଥା'ନ୍ତି । ପ୍ରଫେସର ପ୍ରଧାନ ଏବଂ ମୋର ଗାଇଡ୍ ପ୍ରଖ୍ୟାତ କବି ଡକ୍ଟର ପ୍ରତିଭା ଶତପଥୀଙ୍କ ଉପସ୍ଥିତିରେ ସାର୍ ଦୀର୍ଘ ୨/୩ଘଣ୍ଟା ଧରି ମୋର ସନ୍ଦର୍ଭଟି ଉପରେ ଗୁଡ଼େଇ ତୁଡ଼େଇ ପ୍ରଶ୍ନ ପଚାରି ଚାଲିଥାନ୍ତି । ତାଙ୍କ ହାତରେ ଥିବା ଥେସିସ୍‌ଟିରେ ନାଲିଗାର ଟଣା ଚାଲିଥାଏ । ମୁଁ ତ ଡରି ଛାନିଆ । କାରଣ ସେତେବେଳେ ଡକ୍ଟର ବେହେରାଙ୍କ ପରି ପରୀକ୍ଷକମାନେ ଗବେଷଣାକୁ ନେଇ ସନ୍ଦିହାନ ହେଲେ ସନ୍ଦର୍ଭକୁ ନାକଚ କରିଦେବା କିମ୍ବା ଆବଶ୍ୟକୀୟ ସଂଶୋଧନ ପରେ ପୁନଃ ଦାଖଲ କରିବାର ନିର୍ଦ୍ଦେଶ ଦେବାର ଆଶଙ୍କା ମଧ ଥାଏ ।

ମୌଖିକ ପରୀକ୍ଷା ସରିଲାପରେ ମୋର ଦିଗ୍‌ଦର୍ଶିକା ଡକ୍ଟର ପ୍ରତିଭା ଶତପଥୀଙ୍କ ଘରେ ମଧାହ୍ନ ଭୋଜନ ସାରି ମୁଁ ଶରତ ସାର୍ ଓ ସାର୍‌ଙ୍କୁ କଟକରେ ଛାଡ଼ି କେନ୍ଦ୍ରାପଡ଼ା ଫେରିବି ବୋଲି ବାହାରିଲି । ପ୍ରଥମେ ଶରତ ସାର୍‌ଙ୍କୁ ଯୋବ୍ରାରେ ଛାଡ଼ି, ରେଭେନ୍‌ସା କ୍ୟାମ୍ପସ୍‌ରେ ସାର୍‌ଙ୍କ କ୍ୱାର୍ଟର୍ସର ଗେଟ୍ ପାଖରେ ତାଙ୍କୁ ପ୍ରଣାମ କଲାବେଳେ ସାର୍ କହିଲେ, "ଅପର୍ଣ୍ଣା କାମଟା ଚମତ୍କାର କରିଛ । ମୁଁ ତ ପ୍ରକାଶନ ନିମନ୍ତେ ସୁପାରିଶ କରିଦେଇଛି । ତମେ ଆମକୁ 'ବାମାବାଦ' ବୋଲି ଶବ୍ଦଟିଏ ଦେଲ । ଧନ୍ୟବାଦ ।"

ମୋ ଛାତିରୁ ଆଶଙ୍କାର ଗୋଟିଏ ବୋଝ ଓହ୍ଲାଇ ଯାଇଥିଲା । ସେଦିନ ମୁଁ ଓଡ଼ିଆ ସାହିତ୍ୟ ଓ ଗବେଷଣାର ସ୍ୱଚ୍ଛତା, ଉଦାରତା, ଜ୍ଞାନର ଗଭୀରତା ସହିତ ଜଣେ ଜ୍ଞାନୀ, ଗୁଣୀ ମଣିଷଙ୍କର ଶିଶୁସୁଲଭ ସରଳତା ସହିତ ମଧ ପରିଚିତ ହୋଇଥିଲି । ପରବର୍ତ୍ତୀ ସମୟରେ ତାଙ୍କର ପ୍ରିୟ ଛାତ୍ର ଡକ୍ଟର ଗୌରାଙ୍ଗ ଚରଣ ଦାଶ, ଗବେଷକ ଡକ୍ଟର ଉମେଶ ପତ୍ରୀ ଆଦି ସାର୍ ମୋ ଥେସିସ୍‌ର ଖୁବ୍ ପ୍ରଶଂସା କରନ୍ତି ବୋଲି ମତେ କହିଛନ୍ତି । ମୋର ଆତ୍ମବିଶ୍ୱାସ ସେମାନଙ୍କ କଥା ଶୁଣି ଖୁବ୍ ବଢ଼ିଯାଇଥାଏ ।

ଓଡ଼ିଆ ଗବେଷଣା ପରିଷଦର ମୁଁ ଥିଲି ଜଣେ ଆଜୀବନ ସୁପ୍ତ ସଦସ୍ୟା । ମଝିରେ ମଝିରେ ଏଷଣାର ଦେୟ ପଇଠ କରିବା ଛଡ଼ା ଅନ୍ୟ କିଛି କରୁନଥିବାରୁ ସାର୍ ଫୋନ୍ କରି ମଧୁର ଭର୍ତ୍ସନା କରନ୍ତି । ସେତେବେଳେ ବି ହସି ହସି ଗାଳି ଦିଅନ୍ତି । ମୁଁ ନିଶ୍ଚିତ ଥାଏ, ସତେ କି ତାଙ୍କର ସ୍ନେହ ଓ କ୍ଷମା ଦୁଇଟା ଯାକରେ ମୋର ନିରଙ୍କୁଶ ଅଧିକାର । ରେଭେନ୍‌ସା ବିଶ୍ୱବିଦ୍ୟାଳୟରେ 'ବାମାବାଦ' ଉପରେ ବକ୍ତବ୍ୟ ରଖିବାକୁ ବିଭାଗୀୟ ମୁଖ୍ୟ ପ୍ରଫେସର ଗୌରାଙ୍ଗ ଚରଣ ଦାଶ ମତେ ଅନୁରୋଧ କରିଥିଲେ । ସେ କଥା ଶୁଣି ସାର୍ ଫୋନ୍ କରି କହିଲେ, "ତୁମେ କେବେ ଭାଷଣ ଦେବାକୁ ଆସିବ ମୋତେ ଜଣାଇବ । ମୁଁ ଆଗରେ ବସି ତୁମ ଭାଷଣ ଶୁଣିବି ।"

ଏତେ ସ୍ନେହ, ଆଶୀର୍ବାଦ ଏବଂ ସାରସ୍ୱତ ଶୁଭକାମନାରୁ ଆଜି ଆମେସବୁ ବଂଚିତ ହେଲୁ । କିନ୍ତୁ ସବୁ ସ୍ୱାଭିମାନୀ ସାହିତ୍ୟସାଧକଙ୍କର ଆଦର୍ଶ ହୋଇ ସେ ଚିରକାଳ ବଂଚି ରହିବେ ଏଥିରେ ସନ୍ଦେହ ନାହିଁ ।



କପାଳେଶ୍ୱର, କେନ୍ଦ୍ରାପଡ଼ା

# ଉଜ୍ଜ୍ୱଳ ଉତ୍ସାହ : କୃଷ୍ଣଚରଣ

## ବିଜୟାନନ୍ଦ ସିଂହ

ସାହିତ୍ୟ ସମାଜର କଲ୍ୟାଣ ଓ ମଙ୍ଗଳର ବାର୍ତ୍ତାବହନ କରେ । ସାହିତ୍ୟ ମାଧ୍ୟମରେ ସମାଜକୁ କେବଳ ସମୃଦ୍ଧ କରାଯାଇପାରେ ନାହିଁ ବରଂ ସାହିତ୍ୟ ସମାଜକୁ ବଦଳାଇ ଦେଇପାରେ । ସାହିତ୍ୟ ହିଁ ସତ୍ୟ, ଶିବ ଓ ସୁନ୍ଦରର ପ୍ରତୀକ । ଏହାହିଁ ଥିଲା ବରେଣ୍ୟ ଲେଖକ ଡକ୍ଟର କୃଷ୍ଣଚରଣ ବେହେରାଙ୍କ ସର୍ବଶ୍ରେଷ୍ଠ ଉପଲବ୍ଧି । ସେଥିପାଇଁ ସେ ଦୀର୍ଘ ଅର୍ଦ୍ଧଶତାବ୍ଦୀ କାଳ ଧରି ନିଷ୍ଠାପର ଭାବରେ ସାହିତ୍ୟର ଉନ୍ନତି ପାଇଁ କାର୍ଯ୍ୟକରି ଆମ ସାରସ୍ୱତ ଇତିହାସରେ ଅବିସ୍ମରଣୀୟ ହୋଇଛନ୍ତି । କୃଷ୍ଣଚରଣ ବେହେରା ଜଣେ ବ୍ୟକ୍ତି ନଥିଲେ, ଥିଲେ ଏକ ସାଂସ୍କୃତିକ ଅନୁଷ୍ଠାନ-ସାରସ୍ୱତ ଜଗତର ଏକ ଉଜ୍ଜ୍ୱଳ ସ୍ତମ୍ଭ । ସେ ଥିଲେ ସୌନ୍ଦର୍ଯ୍ୟର ଉପାସକ । ୧୯୩୨ ମସିହା ଜୁନ୍ ୨ ତାରିଖରେ ଭଦ୍ରକ ଜିଲ୍ଲା ଅନ୍ତର୍ଗତ ଏକ ପଲ୍ଲୀଗ୍ରାମ ଅର୍ଜୁନବିନ୍ଧାରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ବିଦ୍ୟାର୍ଥୀ ଜୀବନ ବିକଶିତ ହୋଇଥିଲା ବିଶ୍ୱକବି ରବୀନ୍ଦ୍ରନାଥଙ୍କ ପ୍ରତିଷ୍ଠିତ ବିଶ୍ୱଭାରତୀରେ ।

ସାହିତ୍ୟ ପ୍ରତି ଥିବା ତାଙ୍କର ନିଷ୍ଠା ଓ ଆନ୍ତରିକତା ବାସ୍ତବରେ ଏହିଠାରେ ହିଁ ପ୍ରସ୍ଫୁଟିତ ହୋଇଥିଲା । ସେ ଅନୁପ୍ରାଣିତ ହୋଇଥିଲେ ବିଶ୍ୱକବି ରବୀନ୍ଦ୍ରନାଥ, ପ୍ରେମଚନ୍ଦ, ଫକୀରମୋହନଙ୍କ ଦ୍ୱାରା । ତାଙ୍କର ସ୍ୱପ୍ନ ଥିଲା ଅସୁମାରୀ । ସେଥିପାଇଁ ସେ ଥରେ ଲେଖିଥିଲେ- "ଜଣେ ଶିଳ୍ପୀ ହିସାବରେ ଏ ପୃଥିବୀକୁ ସୁନ୍ଦରତର କରି, ସମୃଦ୍ଧତର କରି ମୁଁ ଦେଖିବାକୁ ଚାହେଁ । ମୁଁ ଲେଖୁଛି ଜୀବନକୁ ବଞ୍ଚିବାଯୋଗ୍ୟ କରିବା ପାଇଁ, ପୃଥିବୀକୁ ମଣିଷର ବାସଯୋଗୀ କରିବା ପାଇଁ, ମୋର ବିକାଶସିଦ୍ଧ ଦୃଷ୍ଟିକୋଣ ଓ ମତାଦର୍ଶ ସମସ୍ତଙ୍କ ମେଳରେ ପ୍ରସାର କରିବା ଲକ୍ଷ୍ୟରେ ଲେଖୁଛି । ଲେଖୁଛି ନିଜର ମନମୁତାବକ ସୁନ୍ଦର ଐଶ୍ୱର୍ଯ୍ୟମୟ କରି ଜୀବନକୁ ରୂପଦେବା, ସମାଜକୁ ଗଢ଼ିତୋଳିବା ଉଦ୍ଦେଶ୍ୟର ଉଦବୋଧନ ଦେବା ।" କୃଷ୍ଣଚରଣ ଏହି ସଂକଳ୍ପକୁ

ଯଥାର୍ଥ ଭାବରେ ସାକାର କରିଛନ୍ତି ସାହିତ୍ୟ ସାଧନା ମାଧ୍ୟମରେ । ସେ କବିତା, ଗଳ୍ପ, ପ୍ରବନ୍ଧ ଓ ଆଲୋଚନା, ନାଟକ-ଏକାଙ୍କିକା ଲେଖିଛନ୍ତି । ସଂପାଦନା କରିଛନ୍ତି ଆମ ସାହିତ୍ୟର ଅନେକ ଦୁର୍ଲ୍ଲଭ ପ୍ରାଚୀନ ଗ୍ରନ୍ଥ । ସଂପାଦନା କରିଛନ୍ତ ଏଷଣା ପରି ଅନନ୍ୟ ଗବେଷଣାତ୍ମକ ସାହିତ୍ୟ ପତ୍ରିକା । କୃଷ୍ଣଚରଣଙ୍କ ସାହିତ୍ୟ ରଚନା କୌଣସି ପ୍ରସାର ସର୍ବସ୍ୱ ନଥିଲା । ବରଂ ଥିଲା ଏକ ମୌଳିକ ଓ ସତ୍ ସାହିତ୍ୟର ପ୍ରସାର । ବହୁ ଲୁପ୍ତ ପ୍ରତିଭାକୁ ଆଲୋକିତ କରିବାରେ ତାଙ୍କ ଉଦ୍ୟମ ଥିଲା ଉଲ୍ଲେଖଯୋଗ୍ୟ । ପ୍ରଗତି ସାହିତ୍ୟ, ଅଶ୍ଳୀଳତା ବିପକ୍ଷରେ, ଚରୁ ଓ ଚରିତ, କୁସୁମକେଳି ପ୍ରଭୃତି ଆଲୋଚନା ପୁସ୍ତକ ରଚନା କରିଥିବା କୃଷ୍ଣଚରଣ ଲେଖିଥିଲେ ବହୁଚର୍ଚ୍ଚିତ ଗଳ୍ପପୁସ୍ତକ- ବେଦୀ ଇତ୍ୟାଦି ଗଳ୍ପ, ନାରୀ ଏକ ନଦୀର ନାମ, କବିତା- ଚା' କପର ଝଡ଼ , ୫୪- ଭାନୁବାଈ ଲେନ ପରି ପୁସ୍ତକ । କବି ଶେଖର ଚିନ୍ତାମଣି, ମୋଗଲ ତାମସା, ଫୁଲମଣି ଓ କରୁଣାର ବିବରଣ, କଳାବତୀ, କବିସୂର୍ଯ୍ୟ ଗ୍ରନ୍ଥାବଳୀ, କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ପରି ପ୍ରସିଦ୍ଧ ପୁସ୍ତକ ସଂପାଦନା କରିଛନ୍ତି । ସବୁ ରଚନାରେ ନୂତନତା ଏବଂ ମୌଳିକତା ପ୍ରଦର୍ଶନ କରିବାରେ ସେ ଯଥେଷ୍ଟ ଦକ୍ଷତା ପ୍ରତିପାଦନ କରିଯାଇଛନ୍ତି । 'ଆଖିର ଦେଖା ପ୍ରାଣର କଥା' ତାଙ୍କ ଆତ୍ମଚରିତ କେବଳ ନୁହେଁ ବରଂ ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଶାର ସାରସ୍ୱତ ଓ ସାଂସ୍କୃତିକ ଇତିହାସ ।

ନବ୍ୟଚେତନା, ଭାବ ଓ ଭାବନାର ସେ ଥିଲେ ବାହାକ । ସେଥିପାଇଁ ପ୍ରତିଷ୍ଠା ହୋଇଥିଲା- ଓଡ଼ିଆ ଗବେଷଣା ପରିଷଦ । କୃଷ୍ଣଚରଣ ଥିଲେ ଏହାର ପ୍ରତିଷ୍ଠାତା ସଭାପତି । ଅନୁଷ୍ଠାନ ତାଙ୍କରି ସଫଳ ଦିଗ୍‌ଦର୍ଶନରେ ରୌପ୍ୟ ଜୟନ୍ତୀ ଉତ୍ସାହର ସହ ପାଳନ କରିଥିଲା । ସେ ମଧ୍ୟ ଥିଲେ ଜୀବନର ଶେଷ ପର୍ଯ୍ୟନ୍ତ ଅନୁଷ୍ଠାନରେ ପ୍ରମୁଖ ପୁରୁଷ । ଏଷଣାର ସଂପାଦନା ଓ ରଚନାରେ ତାଙ୍କ ସ୍ୱପ୍ନ, ଆଭିମୁଖ୍ୟ ବାରି ହୋଇପଡ଼େ । ଏକ ସଂଭ୍ରାନ୍ତ ଶୈଳୀରେ ସେ ପ୍ରଦାନ କରନ୍ତି ଲିଖିତ ବକ୍ତବ୍ୟ ସଭାସମିତିରେ । 'ପ୍ରାଚୀ' ଅନୁଷ୍ଠାନ ପରେ ଓଡ଼ିଆ ଗବେଷଣା ପରିଷଦ ଯେ ଓଡ଼ିଆ ସାହିତ୍ୟ ଇତିହାସରେ ନବସ୍ୱାକ୍ଷର ବହନ କରିଛି ତାହା ଶ୍ରଦ୍ଧାର ସହ ସ୍ୱୀକାର କରାଯାଇପାରେ ।

କୃଷ୍ଣଚରଣ ଥିଲେ ତରୁଣବାଦର ସମର୍ଥକ । ଯୁବସ୍ରଷ୍ଟାମାନଙ୍କୁ ସେ ପ୍ରୋତ୍ସାହିତ କରୁଥିଲେ- ଯେଉଁମାନଙ୍କଠାରେ ସୃଜନଶୀଳ ପ୍ରତିଭାର ସୂଚନା ପାଉଥିଲେ ତାହାର ବିକାଶ ପାଇଁ ସେ ଯୋଗାଉଥିଲେ ପ୍ରେରଣା । ଗବେଷଣା ପରିଷଦର 'କ୍ଷେତ୍ରବାସୀ ସାହିତ୍ୟ ବିଦ୍ୟା' ପୁରସ୍କାର ଯୁବଗବେଷକମାନଙ୍କୁ ପ୍ରଦାନ ପାଇଁ ସେ ଯୁକ୍ତି ବାଢ଼ିଥିଲେ ।

ଏପରିକି ରାଉରକେଲାଠାରେ ସେ ନିଜେ ଏକ ପୁରସ୍କାର ଗ୍ରହଣ ବେଳେ କହିଥିଲେ- ଏ ପୁରସ୍କାର ଜଣେ ଯୁବସ୍ରଷ୍ଟାଙ୍କୁ ପ୍ରଦାନ କରାଯାଇଥିଲେ ତାହା ଭଲ ହୋଇଥାନ୍ତା । ଏହାଦ୍ୱାରା ସେମାନେ ପ୍ରୋତ୍ସାହିତ ହୋଇଥାନ୍ତେ । ପୁଣି କହିଥିଲେ- ଏହି ପୁରସ୍କାର ଯଦି ମୋତେ ପଚାଶ ବର୍ଷ ବୟସ ପୂର୍ବରୁ ପ୍ରଦାନ କରାଯାଇଥାନ୍ତା, ତେବେ ମୁଁ ଉତ୍ସାହିତ ହୋଇଥାନ୍ତି ଅଧିକ ସୃଜନଶୀଳ କାର୍ଯ୍ୟ କରିବା ପାଇଁ । କିନ୍ତୁ ମୁଁ ଏହି ପୁରସ୍କାର ଗ୍ରହଣ କରୁଥିବା ସମୟରେ ମୋ ଦେହରେ କୌଣସି ଶିହରଣ ସୃଷ୍ଟି ହେଉ ନାହିଁ । ଏହିପରି ସତ୍ୟନିଷ୍ଠ ସାରସ୍ୱତ ପୁରୁଷ ଥିଲେ କୃଷ୍ଣଚରଣ ।

କୃଷ୍ଣଚରଣ ଥିଲେ ମାନବବାଦୀ । ମଣିଷକୁ ସେ ନିବିଡ଼ ଭାବେ ଭଲପାଉଥିଲେ । ସ୍ନେହ, ଶ୍ରଦ୍ଧା, ଆତ୍ମୀୟତାରେ ଆପଣାର କରିବାର ଅପୂର୍ବ ଶକ୍ତି ଥିଲା ତାଙ୍କର । ସେ ଥିଲେ ନିରହଙ୍କାରୀ, ନିଷ୍କପଟ, ସତ୍ୟନିଷ୍ଠ ସାରସ୍ୱତ ଶିଳ୍ପୀ । ଓଡ଼ିଆ ଅଧ୍ୟାପକ ଭାବରେ ସେ ଥିଲେ ଜଣେ ଆଦର୍ଶ ଶିକ୍ଷକ । ଅନନ୍ୟ ଗବେଷକ । ସେ ମଧ୍ୟ ଦୁଇ ଦୁଇଟି ମହାବିଦ୍ୟାଳୟର ଅଧ୍ୟକ୍ଷ ହୋଇଥିଲେ । ପ୍ରଶାସନିକ ଦକ୍ଷତା ମଧ୍ୟ ସେ ପ୍ରମାଣିତ କରିଯାଇଛନ୍ତି । ଦାପ୍ତରିକ କାର୍ଯ୍ୟ, ନିର୍ଦ୍ଦେଶାନାମା ପ୍ରଭୃତି ପ୍ରସ୍ତୁତିରେ ତାଙ୍କର କୃତିତ୍ୱ ସ୍ୱୀକୃତ ।

କୃଷ୍ଣଚରଣ ଜୀବନର ଘଟଣା ପ୍ରବାହ ଘାତ-ପ୍ରତିଘାତରେ ପରିପୂର୍ଣ୍ଣ । ସେ ଥିଲେ ମଣିଷ ପରି ମଣିଷ । ସେ ଥିଲେ ବାସ୍ତବବାଦୀ । ଅସହ୍ୟ ଦୁଃଖର ସମ୍ମୁଖୀନ ହୋଇଛନ୍ତି । ଦୁଃଖ ଥିଲା- ତାଙ୍କର ସତେ ଯେପରି ଚିର ସହଚର- କିନ୍ତୁ ସେ ଦୁଃଖକୁ ପରାଜିତ କରି ବିଜୟୀ ହୋଇଛନ୍ତି ବାସ୍ତବ ପୃଥିବୀରେ । ସେ ଥିଲେ ଧୈର୍ଯ୍ୟ ଓ ସାହସର ପ୍ରତୀକ । ଦୁଃଖକୁ ସେ ଉପହାସ କରିଛନ୍ତି- ଦୁଃଖ ତାଙ୍କୁ କେବେ ଭାଙ୍ଗିପାରି ନାହିଁ ବରଂ ଶକ୍ତ କରିଛି ଆଗାମୀ ଜୀବନ ବଞ୍ଚିବା ପାଇଁ- ତାହା ହେଉଛି କୃଷ୍ଣଚରଣଙ୍କ ବିଶାଳ ବ୍ୟକ୍ତିତ୍ୱର ଆଭାସ ମାତ୍ର । "ମଣିଷ ହାରିପାରେ ନାହିଁ"- ଥିବା ଉକ୍ତିକୁ ପ୍ରତିପାଦନ କରିଛନ୍ତି ସେ । ତିନି / ଚାରି ବର୍ଷ ବୟସରେ କୃଷ୍ଣଚରଣଙ୍କ ମାତୃ ବିୟୋଗ ଘଟିଥିଲା । ବୋଉଙ୍କ ମୃତ୍ୟୁ ପରେ ମାମୁଘରେ ତାଙ୍କର ଶିକ୍ଷା ଜୀବନର ଶୁଭାରମ୍ଭ । ବାପାଙ୍କ ସହ ସଂପର୍କ ବି ଊଣା । ପାଠ ପଢ଼ିବା ପାଇଁ ମଧ୍ୟ ନାନା ସମସ୍ୟା । ଏପରିକି ଶାନ୍ତିନିକେତନରେ ପଢ଼ିବା ପାଇଁ ଅର୍ଥ ନଥିଲା । ଗ୍ରାମ୍ୟ ହାଇସ୍କୁଲରେ ଶିକ୍ଷକତା କରି କିଛି ଅର୍ଥ ସଞ୍ଚୟ କରି ଯାଇଥିଲେ ବିଦ୍ୟାର୍ଜନ ପାଇଁ ବିଶ୍ୱଭାରତୀ । କିନ୍ତୁ ବିଧିର ବିଧାନ ବଡ଼ ବିଚିତ୍ର- ଜୀବନ ଥିଲା ତାଙ୍କର ସଂଘର୍ଷମୟ । ଅଧ୍ୟାପନା ଜୀବନ

ଥିଲା ବ୍ୟସ୍ତବହୁଳ । ସାରସ୍ୱତ ଜୀବନ ଥିଲା ତାଙ୍କର ଭିନ୍ନ ଭିନ୍ନ ରଚନାରେ ପରିପୂର୍ଣ୍ଣ । ସେ ଥିଲେ ସମୟ ସଚେତନ । ଜୀବନର ପ୍ରତିଟି ମୁହୂର୍ତ୍ତ ଥିଲା ଗଠନମୂଳକ ଓ ସର୍ଜନଶୀଳ । କିନ୍ତୁ ଦୁଃଖ ତାଙ୍କ ସହ ଲଢ଼ିଛି ବାରମ୍ବାର- ନିଜେ ଅନେକ ସମୟରେ ଅସୁସ୍ଥ ରହୁଥିଲେ- ଏହା ସହିତ ସମ୍ମିଳିତ ହେଲା ଉତ୍ତୀର୍ଣ୍ଣ ବୟସରେ ପ୍ରାଣପ୍ରିୟା ପତ୍ନୀ ଜୟନ୍ତୀଙ୍କ ଅସୁସ୍ଥତା । ପୁଣି ତାଙ୍କର ୨୦୦୮ ଜାନୁୟାରି ୨୬ ତାରିଖରେ ଅକାଳରେ ପରଲୋକ । ଦୁଃଖ ସତେ କେତେ ନିଷ୍ଠୁର ? ତାହା ବିଶ୍ୱାସ ଏବଂ କଳ୍ପନା ବାହାରେ । ୨୦୧୨ ମସିହା ନଭେମ୍ବର ୯ ତାରିଖରେ ଓଡ଼ିଶାର ସୁଯୋଗ୍ୟ ସନ୍ତାନ, ସାହିତ୍ୟିକ, ଭାରତୀୟ ବିଦେଶ ସେବାର ବରିଷ୍ଠ ଅଧିକାରୀ କନିଷ୍ଠ ପୁତ୍ର ଶୁଭକାନ୍ତ ବେହେରାଙ୍କ ଆକସ୍ମିକ ତିରୋଧାନ ତାଙ୍କ ଦୃଢ଼ ବ୍ୟକ୍ତିତ୍ୱକୁ ଦୋହଲାଇ ଦେବାର ଉପକ୍ରମ କଲା । କିନ୍ତୁ କୃଷ୍ଣଚରଣ ଏହି ଅସହ୍ୟ ଦୁଃଖକୁ ସହ୍ୟ କରି ନେଲେ । ମୁଁ ଦେଖିଛି ସେଦିନ ତାଙ୍କର ଅସମ୍ଭବ ଓ ଅବିଶ୍ୱସନୀୟ ଧୈର୍ଯ୍ୟକୁ । ଏଇ ନିକଟରେ ପ୍ରାଣଠୁ ଅଧିକ ଭଲପାଉଥିବା ସାନଭାଇର ମଧ୍ୟ ଦେହାନ୍ତ ହୋଇଯାଇଥିଲା । ଜୀବନର ସବୁ ଦୁଃଖକୁ ଆତ୍ମସ୍ଥ କରି ମଣିଷ ଯେ ସ୍ଥିର ଜୀବନ ବଞ୍ଚିପାରେ, ତାହା କୃଷ୍ଣଚରଣ ପ୍ରମାଣ କରି ଦେଇଯାଇଛନ୍ତି । ଉଜ୍ଜ୍ୱଳ ଉତ୍ସାହ : କୃଷ୍ଣଚରଣ । ସେ ସତରେ ସମକାଳ ପାଇଁ ନୁହେଁ ସବୁକାଳ ପାଇଁ ସକରାତ୍ମକ ଚେତନାର ସମୁଜ୍ଜ୍ୱଳ ଉଦାହରଣ । କୃଷ୍ଣଚରଣଙ୍କ ଉଦାର ବ୍ୟକ୍ତିତ୍ୱ, ଅନନ୍ୟ ପ୍ରତିଭାର ପଟାନ୍ତର ନାହିଁ- ସେ ବାସ୍ତବରେ କାଳୋତ୍ତୀର୍ଣ୍ଣ, ସ୍ମରଣୀୟ, ଚିର ବନ୍ଦନୀୟ ।



ସଭାପତି
ଉତ୍କଳ ସାହିତ୍ୟ ସମାଜ

# ଉଜ୍ଜ୍ୱଳ ପ୍ରଦୀପ ନିର୍ବାପିତ ହୋଇଗଲା

## ଗୌରହରି ଦାସ

ପ୍ରଫେସର କଷ୍ଣଚରଣ ବେହେରାଙ୍କ ପରଲୋକ ସହିତ ଓଡ଼ିଆ ଭାଷା ସାହିତ୍ୟର ବିଶେଷକରି ଗବେଷଣା ଇତିହାସର ଏକ ଉଜ୍ଜ୍ୱଳ ପ୍ରଦୀପ ନିର୍ବାପିତ ହୋଇଯାଇଛି । ଜଣେ ଉଚ୍ଚ ଧରଣର ଗବେଷକ କହିଲେ ଅଭିଧାନ ଯେଉଁ ଅର୍ଥ ବତାଇଥାଏ ତାହାର ଆଦର୍ଶ ଉଦାହରଣ ଥିଲେ ଡକ୍ଟର କୃଷ୍ଣଚରଣ ବେହେରା । ସାଧାରଣତଃ ଗୋଟିଏ ଧାରଣା ଥାଏ ଯେ ଯେଉଁମାନେ ସର୍ଜନଶୀଳ ବ୍ୟକ୍ତି ସେମାନେ ସଂଗଠନରେ ସଫଳ ନୁହନ୍ତି । ଡକ୍ଟର କୃଷ୍ଣ ଚରଣ ବେହେରା ଏହାର ଥିଲେ ବ୍ୟତିକ୍ରମ। କେବଳ ତାଙ୍କର ନିଷ୍ଠା ଓ ପରିଶ୍ରମ ଯୋଗୁଁ ଓଡ଼ିଆ ଗବେଷଣା ପରିଷଦ ପ୍ରାୟ ୪୦ ବର୍ଷ ଧରି ଓଡ଼ିଶାରେ ତାହାର କାର୍ଯ୍ୟକ୍ରମ ଚଳାଇ ରଖି ଆସିଛି । ଓଡ଼ିଆ ଗବେଷଣା ପରିଷଦ ଏବଂ ତାହାର ମୁଖପତ୍ର 'ଏଷଣା' ପ୍ରକୃତରେ ଥିଲା ଡକ୍ଟର କୃଷ୍ଣ ଚରଣ ବେହେରାଙ୍କ ଦୁଇଟି ଆଖି । ଏ ଦୁଇଟି ଅନୁଷ୍ଠାନକୁ ସେ ଏତେ ସୁନ୍ଦର ଭାବରେ ଲାଳନପାଳନ କରିଥିଲେ ଯାହା ତାଙ୍କୁ ନିକଟରୁ ଦେଖିଥିବା ବ୍ୟକ୍ତି ହିଁ ଜାଣିପାରିବେ । ଗବେଷଣା ପରିଷଦର ପ୍ରତିଟି ଉତ୍ସବକୁ ଯେଉଁଭଳି ଭାବରେ ନିଷ୍ଠାର ସହ ଆୟୋଜନ କରିଥାନ୍ତି ତାକୁ ଦେଖିଲେ ତାଙ୍କ ଆଗରେ ମୁଣ୍ଡ ନୋଇଁଯାଏ । ଓଡ଼ିଶାରେ ବହୁ ଅନୁଷ୍ଠାନ ଚାକଚକ୍ୟପୂର୍ଣ୍ଣ ବ୍ୟୟବହୁଳ ଉତ୍ସବମାନ ଆୟୋଜନ କରୁଛନ୍ତି କିନ୍ତୁ ଗବେଷଣା ପରିଷଦର ଉତ୍ସବରେ ଯେଉଁ ନିଷ୍ଠା ଏବଂ ସାମ୍ଭ୍ରାନ୍ତ୍ୟ ରହିଥାଏ ତାହା ବାସ୍ତବରେ ବିରଳ ।

ପ୍ରଫେସର କୃଷ୍ଣଚରଣ ବେହେରାଙ୍କ ସହିତ ମୋର ପରିଚୟ କରାଇଦେଇଥିଲେ ବିଶିଷ୍ଟ କବି ଶ୍ରୀ ଗିରିଜାକୁମାର ବଳୀୟାରସିଂହ, ରେଭେନ୍ସାରେ ପଢ଼ିବାବେଳେ ପୂର୍ବରୁ ଶୁଣିଥିଲି ତାଙ୍କର ଜନ୍ମଭୂମି ଭଦ୍ରକ ଅଞ୍ଚଳ । ସେହି ଅଂଳର ମଣିଷମାନଙ୍କ ପାଇଁ ତାଙ୍କ ମନ ଭିତରେ ଢେର୍ ମାୟା । ପ୍ରଥମ ଦର୍ଶନରେ ତାହା ଅଙ୍ଗେ ନିଭେଇଥିଲି । ସେହି ପ୍ରଥମ ଦେଖା ସାକ୍ଷାତରୁ ସେ ମୋତେ ଏତେ ଶ୍ରଦ୍ଧା

କରିଥିଲେ ଯେ ପରବର୍ତ୍ତୀ ସମୟରେ ମୁଁ ତାଙ୍କ ଅଧୀନରେ ସୁରେନ୍ଦ୍ର ମହାନ୍ତିଙ୍କ ଗଳ୍ପକୁ ନେଇ ଗବେଷଣା କରିବା ପାଇଁ ମନ ବଳେଇଥିଲି । ତେବେ ମୋର ଦୁର୍ଭାଗ୍ୟ ସେତେବେଳେ ତାହା ସମ୍ଭବ ହୋଇ ନ ଥିଲା । ମାତ୍ର ସେ ମୋତେ ଯେଉଁ ପରାମର୍ଶ ଦେଇଥିଲେ ତାହା ପରବର୍ତ୍ତୀ ସମୟରେ ମୋର ଖୁବ୍ କାମରେ ଆସିଥିଲା । କେବଳ ଏହି ଗବେଷଣା କାର୍ଯ୍ୟ ନୁହେଁ ମୋର ଗଳ୍ପ ଉପନ୍ୟାସର ରଚନା କ୍ଷେତ୍ରରେ ମଧ୍ୟ ତାଙ୍କର ଉତ୍ସାହ ମୋତେ ଉତ୍ସାହିତ କରିଥିଲା । କେବେ କୌଣସି ଦିନ କାହାକୁ ମିଛ ପ୍ରଶଂସା କରିବା ତାଙ୍କର ସ୍ୱଭାବ ବିରୁଦ୍ଧ ଥିଲା । ଭଲ ଗୁଣ ଦେଖିଲେ ସେ ଯେଭଳି ପ୍ରଶଂସା କରୁଥିଲେ ମନ୍ଦ ଗୁଣ ଦେଖିଲେ ସେହିଭଳି ସମାଲୋଚନା କରୁଥିଲେ । ତାଙ୍କର ଏହି ସ୍ପଷ୍ଟବାଦିତା ଯୋଗୁଁ ଅନେକ ତାଙ୍କୁ ଜଣେ ନିର୍ଦ୍ଦୟ ସମାଲୋଚକ ବୋଲି କହିପାରନ୍ତି । ମାତ୍ର ସେ ଯାହା ଠିକ୍ ବୋଲି ଭାବୁଥିଲେ ତାହା ଅପକଟ ଭାବରେ ବ୍ୟକ୍ତ କରୁଥିଲେ ।

ଡକ୍ଟର କୃଷ୍ଣଚରଣ ବେହେରା କେବଳ ଜଣେ ଉଚ୍ଚଦରର ଗବେଷକ ଥିଲେ ତାହା ନୁହେଁ ସେ ଥିଲେ ସର୍ଜନଶୀଳ ଲେଖକ । ପ୍ରସିଦ୍ଧ କଥାକାର ସୁରେନ୍ଦ୍ର ମହାନ୍ତି ତାଙ୍କର ପ୍ରିୟ ଲେଖକ ଥିଲେ ଏବଂ ସୁରେନ୍ଦ୍ର ମହାନ୍ତି ତାଙ୍କୁ ପୁତ୍ରବତ୍ ଭଲ ପାଉଥିଲେ । ଥରେ ସୁରେନ୍ଦ୍ର ମହାନ୍ତିଙ୍କ ଠାରୁ ଶୁଣିଥିଲି, ଯୌବନରେ ସୁରେନ୍ଦ୍ର ମହାନ୍ତିଙ୍କ ପରି ଚମତ୍କାର ଗଳ୍ପ ଲେଖିବା ପାଇଁ ଡକ୍ଟର କୃଷ୍ଣଚରଣ ବେହେରା ମନ ବଳାଇଥିଲେ । ସୁରେନ୍ଦ୍ର ମହାନ୍ତି ବହୁ ଦୃଷ୍ଟିରୁ ଓଡ଼ିଆ ସାହିତ୍ୟରେ ଜଣେ ବ୍ୟତିକ୍ରମୀ ପୁରୁଷ । ତାଙ୍କର ଦୋଷ ଦୁର୍ବଳତାକୁ ସେ ଆଦୌ ଗୋପନ ରଖୁ ନ ଥିଲେ । ତାଙ୍କର ଅଭ୍ୟାସଗୁଡ଼ିକ ଭିତରେ ବିଡି, ସିଗାରେଟ୍ ଟାଣିବା ପରି ସୁରାପାନ ମଧ୍ୟ ଅନ୍ତର୍ଭୁକ୍ତ ଥିଲା । ଏକଦା ଯୁବକ କୃଷ୍ଣଚରଣ ଭାବି ନେଇଥିଲେ ଯେ ସମ୍ଭବତଃ ସୁରାପାନ ଜନିତ ଉତ୍ସାହୀ ମାନସିକତା ସୁରେନ୍ଦ୍ର ମହାନ୍ତିଙ୍କୁ ପ୍ରଭାବଶାଳୀ ଗଳ୍ପ ଲେଖିବାରେ ସମର୍ଥ କରାଇଛି । ତେଣୁ ସେ ଏହି କୌଶଳ ପ୍ରୟୋଗ ପାଇଁ ଥରେ ଉଦ୍ୟମ କରିଥିଲେ । ମାତ୍ର ପରଦିନ ସକାଳୁ ଦେଖାଯାଇଥିଲା ଯେ ଧଳା କାଗଜ ଓ କଲମ ଅରକ୍ଷିତଙ୍କ ପରି ଟେବୁଲ୍ ଉପରେ ପଡ଼ିଛି ଏବଂ ଆଉ ଠାଏ ଲେଖକଙ୍କୁ ଉତ୍ସାହ ଯୋଗାଇବା ପାଇଁ ଆସିଥିବା ବିଚରା କ୍ଷୁଦ୍ର ବୋତଲ । ଏକଥା ଜାଣିବା ପରେ ଗାଳ୍ପିକ ସୁରେନ୍ଦ୍ର ମହାନ୍ତି କହିଥିଲେ, "ଏଭଳି ବିଛା ମନ୍ତ୍ର ନ ଜାଣି ସାପ ଗାତରେ ହାତ ପୂରାଇଲେ ଏଇୟା ହିଁ ହୁଏ ।" ଏକଥା ସୁରେନ୍ଦ୍ର ମହାନ୍ତି ତାଙ୍କ ଆତ୍ମଜୀବନୀ 'ପଥ ଓ ପୃଥିବୀ'ରେ ଉଲ୍ଲେଖ କରିଛନ୍ତି । ପରବର୍ତ୍ତୀ ସମୟରେ କୃଷ୍ଣ ଚରଣ ବେହେରା ବିଶିଷ୍ଟ ଗାଳ୍ପିକ ରୂପେ ପ୍ରତିଷ୍ଠା ଅର୍ଜନ

କଲେ । ଏଥିପାଇଁ ସେ ଆଉ ସୁରେନ୍ଦ୍ର ମହାନ୍ତିଙ୍କ କୌଶଳ କାର୍ଯ୍ୟରେ ଲଗାଇ ନ ଥିଲେ ।

ଡକ୍ଟର କଷ୍ଣଚରଣ ବେହେରା ଅତି ସାଧାରଣ ପରିବାରରୁ ଆସିଥିଲେ ମାତ୍ର ନିଜର ସାଧନା ବଳରେ ଅସାଧାରଣ ସ୍ତରରେ ପହଞ୍ଚିଥିଲେ । ତାଙ୍କର ଦୃଷ୍ଟିଭଙ୍ଗୀ ତାଙ୍କର ହସ୍ତାକ୍ଷର ପରି ସୁନ୍ଦର ଓ ପରିଚ୍ଛନ୍ନ ଥିଲା । ସେଥିପାଇଁ ମୋଗଲତାମସା ହେଉ କିମ୍ବା ଓଡ଼ିଆ ଉପନ୍ୟାସ ଏସବୁ ସମ୍ପର୍କରେ ତାଙ୍କର ଗବେଷଣା ନିବନ୍ଧ ସମସ୍ତଙ୍କୁ ମୁଗ୍ଧ କରୁଥିଲା । ଓଡ଼ିଶାରେ ଗବେଷଣାର ସ୍ତର ଧୀରେ ଧୀରେ ତଳକୁ ଯାଉଥିବା ନେଇ ସେ ଖୁବ୍ ଚିନ୍ତିତ ଥିଲେ । ସେଥିପାଇଁ ସେ ସମର୍ଥ ଗବେଷକମାନଙ୍କ ନିମନ୍ତେ ଡକ୍ଟର କ୍ଷେତ୍ରବାସୀ ନାଏକଙ୍କ ନାମରେ ଏକ ପୁରସ୍କାର ମଧ୍ୟ ପ୍ରଚଳନ କରିଥିଲେ । ତାଙ୍କର ଅବର୍ତ୍ତମାନରେ ତାଙ୍କର ସହଯୋଗୀ ଏବଂ ଶ୍ରଦ୍ଧାସ୍ପଦ ଛାତ୍ରଛାତ୍ରୀଗଣ ଗବେଷଣା ପରିଷଦର ଅନ୍ୟାନ୍ୟ କାର୍ଯ୍ୟ ସହିତ ଏହାକୁ ମଧ୍ୟ ବଞ୍ଚେଇ ରଖିବେ ବୋଲି ଆଶା କରାଯାଏ ।

ଡକ୍ଟର ବେହେରା ଜୀବନରେ ଅନେକ ଦୁଃଖ ସହିଥିଲେ । ତା' ମଧ୍ୟରୁ ପୁତ୍ର ଡକ୍ଟର ଶୁଭକାନ୍ତ ବେହେରାଙ୍କ ଅସମୟରେ ପରଲୋକ ସବୁଠାରୁ କଷ୍ଟକର ଓ ହୃଦୟବିଦାରକ ଥିଲା । ମେଲ୍‌ବୋର୍ନରେ କନ୍‌ସଲ୍ ଜେନେରାଲ୍ ଥିବାବେଳେ ୨୦୧୨ ନଭେମ୍ବର ମାସରେ ଶୁଭକାନ୍ତଙ୍କର ପରଲୋକ ହୋଇଥିଲା । ଭାରତୀୟ ବିଦେଶ ସେବାର ସିନିୟର ସଦସ୍ୟ, ସୁଲେଖକ ଓ ସୁବକ୍ତା ଶୁଭକାନ୍ତଙ୍କର ପରଲୋକ ଦୁଃଖକୁ ସହିବା ପିତାଙ୍କ ପକ୍ଷେ କେତେ କଷ୍ଟକର ହୋଇଥିବ ତାହା କଳ୍ପନା କରିବା କଷ୍ଟକର । ସେ ଦୁଃଖକୁ ଅତିକ୍ରମ କରି ସେ ପୁଣି ନିଜର ଗବେଷଣା ଓ ସର୍ଜନ କର୍ମରେ ଲାଗିଥିଲେ ଯେତେବେଳେ କି ମହାକାଳ ତାଙ୍କୁ କୋଳେଇ ନେଲା । ଓଡ଼ିଶାର ସାହିତ୍ୟ ଜଣେ ଯୋଗ୍ୟ ସାରସ୍ୱତ ସାଧକଙ୍କୁ ଚିରକାଳ ପାଇଁ ହରାଇ ବସିଲା ।

ଡକ୍ଟର କୃଷ୍ଣଚରଣ ବେହେରା ଭଦ୍ରକକୁ ପ୍ରାଣ ଭରି ଭଲ ପାଉଥିଲେ । ସେ ଅଂଚଳର ସାହିତ୍ୟ, ସଂସ୍କୃତି ଓ ଲୋକକଳା ସବୁ କିଛିକୁ ସେ ଶ୍ରଦ୍ଧା କରୁଥିଲେ । ତାଙ୍କ ବିୟୋଗରେ ଆମ ଭଦ୍ରକ ଅଞ୍ଚଳ ବିଶେଷ ଭାବରେ ଦରିଦ୍ର ହୋଇଛି । ଓଡ଼ିଆ ସାହିତ୍ୟର ସମର୍ଥ ମହାରଥୀ ପ୍ରଫେସର କୃଷ୍ଣଚରଣ ବେହେରାଙ୍କର ବିୟୋଗରେ ଯେଉଁ ଶୂନ୍ୟସ୍ଥାନ ସୃଷ୍ଟି ହୋଇଛି ତାହା ପୂରଣ ହେବା ଅସମ୍ଭବ । ●

ଆବାହକ, ଓଡ଼ିଆ ଭାଷା ଉପଦେଷ୍ଟା ମଣ୍ଡଳୀ
ସାହିତ୍ୟ ଅକାଦେମି, ନୂଆଦିଲ୍ଲୀ

# ଆରମ୍ଭରୁ ଶେଷଯାଏ

ବିଂଷ୍ଣୁପ୍ରିୟା ଓଟା

ସେଦିନ ଥିଲା ୨୯ ତାରିଖ ଶନିବାର । ବୋର୍ଡ ଅଫ୍ ଷ୍ଟଡିଜ୍ ମିଟିଂ ପାଇଁ ଅନୁଗୁଳରେ ଥିଲି । ପ୍ରଫେସର ବିଜୟ କୁମାର ଶତପଥୀଙ୍କଠାରୁ ଟେଲିଫୋନ୍ ପାଇଲି ସାର୍ ଡକ୍ଟର କୃଷ୍ଣଚରଣ ବେହେରା ଆଉ ନାହାନ୍ତି । ଏହି ଦାରୁଣ ଦୁଃସମ୍ବାଦ ମତେ ଖୁବ୍ ଦୁଃଖରେ ମର୍ମାହତ କରିଦେଲା । ଦୀର୍ଘଦିନ ଧରି ସାର୍ ଆପୋଲୋ ହସ୍ପିଟାଲରେ ଥିଲେ । ଆଇ.ସି.ୟୁ.ରେ ଥିଲା ଅବସ୍ଥାରେ ମୁଁ ତାଙ୍କୁ ଭେଟିଥିଲି । ସାର୍ କିଛି ଜାଣିପାରୁ ନଥିଲେ ସେତେବେଳେ । ସାର୍ ଚାଲିଗଲେ, ଶୂନ୍ୟ ପଡ଼ିଲା ଦୀର୍ଘଦିନ ଧରି ଚଳାଇ ଆସୁଥିବା ଗବେଷଣା ପରିଷଦର ସଭାପତିଙ୍କ ଚେୟାର । ତେଣୁ ଅନୁଷ୍ଠାନର ମୁରବୀ ଚାଲିଗଲେ । ସାର୍‌ଙ୍କ ବିଷୟରେ ଦୁଇ ପୃଷ୍ଠା ଲେଖିବାପାଇଁ ନିର୍ଦ୍ଦେଶ ଥିଲା । କାଲିଠୁଁ କାଗଜକଲମ ଧରି ବସୁଛି ହେଲେ କିଛି ଲେଖିପାରୁନି । କେଉଁଠୁ ଆରମ୍ଭ କରିବି, କେଉଁଠି ସାରିବି ଭାବିପାରୁନି ।

ଫେରି ଯାଉଛି ଅନେକ ବର୍ଷ ତଳକୁ ଆଇ.ଏ ଶ୍ରେଣୀର ଛାତ୍ରୀ । ବାରିପଦାର ମହାରାଜା ପୂର୍ଣ୍ଣଚନ୍ଦ୍ର ମହାବିଦ୍ୟାଳୟରେ ପାଠ ପଢୁଥାଏ । ୧୯୭୬ ମସିହାର କଥା । ଥରେ ଆମ ସାହିତ୍ୟ (M.I.L.) କ୍ଲାସ୍‌କୁ ଜଣେ ସାର୍ ଆସିଲେ । ଧଳାଶାର୍ଟ କଳା ପ୍ୟାଣ୍ଟ ପିନ୍ଧିଥାନ୍ତି । ଚେହେରା କଳା । ସେ ସେହିଦିନ କ୍ଲାସ୍ ନେବାପାଇଁ ଆସିଥିଲେ । ପଢ଼ାଇଲେ ପେଟେଣ୍ଟ ମେଡିସିନ୍ । ତାଙ୍କ ପଢ଼ାଇବା ଶୈଳୀ ଓ ଛାତ୍ରଛାତ୍ରୀମାନଙ୍କୁ ଆତ୍ମୀୟତାର ବ୍ୟବହାର ମତେ ମୁଗ୍ଧ କରିଥିଲା । ତା'ପରେ ସାର୍ ବଦଳି ହୋଇ ଆସିଲେ ରେଭେନ୍‌ସା ମହାବିଦ୍ୟାଳୟକୁ । ୧୯୭୮ ମସିହାରେ ରେଭେନ୍‌ସା ମହାବିଦ୍ୟାଳୟରେ ମୁଁ ଏମ୍.ଏ.ରେ ଆଡମିସନ୍ ନେଲି । ସେତିକିବେଳେ ସାର୍‌ଙ୍କୁ ଭେଟିଥିଲି । ପ୍ରଫେସର ଜାନକୀବଲ୍ଲଭ ମହାନ୍ତି, ଡକ୍ଟର ଧନେଶ୍ୱର ମହାପାତ୍ର, ଡକ୍ଟର ବିଚିତ୍ରାନନ୍ଦ ମହାନ୍ତି । ବେଣୁଧର ରାଉତ, ଜୟକୃଷ୍ଣ ମିଶ୍ର, ପ୍ରଫେସର ଶରତଚନ୍ଦ୍ର ପ୍ରଧାନ, ଡକ୍ଟର କ୍ଷେତ୍ରବାସୀ ନାୟକ, ଡକ୍ଟର ଅସିତ କବି, ଡକ୍ଟର ରତ୍ନାକର ଚଇନି

ପ୍ରଭୃତି ସାର୍‌ମାନେ ଆମକୁ ପଢ଼ାଉଥିଲେ । ତେବେ ଡକ୍ଟର ବେହେରାଙ୍କ ଶୈଳୀ ଟିକେ ନିଆରା । ଅନେକ ଉପାଦାନ ଚିତ୍ର ଆଦି ସଂଗ୍ରହ କରନ୍ତି । ଛାତ୍ରଛାତ୍ରୀମାନଙ୍କୁ ଶ୍ରେଣୀରେ ନାଁ ଧରି ଡାକନ୍ତି, ପ୍ରଶ୍ନ ପଚାରନ୍ତି, ଷ୍ଟେଟ୍ ମ୍ୟୁଜିୟମ ଓ ସତୀଚଉରା ଦେଖିଛ କି ନାହିଁ ପଚାରନ୍ତି । ତାଙ୍କ କ୍ଲାସ୍‌ରେ ଆମେ ସବୁ ଖୁବ୍ ସଚେତନ ଥାଉ । ଅନୁବାଦପାଇଁ ସାର୍‌ଙ୍କର ପ୍ରେରଣା ଓ ଉଦ୍ୟମ ଯୋଗୁ ୧୬ଶ ଶତାବ୍ଦୀର ସଂସ୍କୃତ ନାଟକ "ଶ୍ରୀଜଗନ୍ନାଥ ବଲ୍ଲଭ"ର ଓଡ଼ିଆ ଅନୁବାଦ କରିଥିଲି । ଏମ୍‌ଫିଲ୍ ସାରି ପିଏଚ୍.ଡି କରିବାପାଇଁ ସାର୍‌ଙ୍କ ସହ ପରାମର୍ଶ କରିଥିଲି । ସାର୍ ମତେ ପରାମର୍ଶ ଦେଇଥିଲେ । କାଳିନ୍ଦୀଚରଣ ପାଣିଗ୍ରାହୀ ଜୀବିତ ଅଛନ୍ତି । ତାଙ୍କ ଉପରେ କିଛି କାମ ହେଇନି । ତାଙ୍କ ଉପରେ କାମ କର । ସାର୍ ମତେ କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କ ସହ ପରିଚିତ କରାଇଥିଲେ । ତେବେ ଯେଉଁ ବିଶେଷ କଥାଟି ଏଠି କହିବା ଉଚିତ ମନେକରୁଛି ତାହା ନକହିଲେ ସତ୍ୟର ଅପଳାପ ହେବ । ପ୍ରଥମ ସେମିଷ୍ଟାରର ରେଜଲ୍ଟ ବାହାରିଥାଏ ମୁଁ ବାଣୀବିହାର ଓ ରେଭେନ୍‌ସା ଉଭୟରେ ପ୍ରଥମ ଶ୍ରେଣୀରେ ପ୍ରଥମ ହେଇଥାଏ (ସେତେବେଳେ ରେଭେନ୍‌ସା ଓ ଉତ୍କଳ ମିଶିକରି ଉତ୍କଳ ବିଶ୍ୱବିଦ୍ୟାଳୟ ଥିଲା) । ସାର୍ ଭାରି ଖୁସି ଥାଆନ୍ତି । କ୍ଲାସକୁ ପଶୁପଶୁ କହିଲେ କିଏ ସେ ଭାଗ୍ୟବାନ ପିଲା ଠିଆହୁଅ ଯିଏକି ଆମ ବିଭାଗର ନାଁ ରଖିଛନ୍ତି । କ୍ଲାସ ଥିଲା ନୀରବ । ସମସ୍ତେ ଚୁପ୍‌ଚାପ୍ । କାରଣ ସେତେବେଳେ ମୁଁ ଶ୍ରେଣୀରେ ନଥିଲି । ଜୀବନରେ ଝଡ଼ ଉଠିଥିଲା । ତାହା ଥିଲା ଭାଗ୍ୟ ବିପର୍ଯ୍ୟୟର ଝଡ଼ । ବାପା ମତେ ବାଲେଶ୍ୱର ନେଇଯାଇଥିଲେ । ମୁଁ ତାଙ୍କ ପାଖରେ ରହୁଥିଲି । ଜଣେ ସାଙ୍ଗ ଛିଡ଼ା ହୋଇ କହିଲେ ବିଷ୍ଣୁପ୍ରିୟା ଓତା । ୫/୬ଦିନ ତଳେ ମୋର ଦୁଃଖଦ ଘଟଣା ସାର୍ ଶୁଣିଥିଲେ । ପାଟିରୁ ତାଙ୍କର ବାହାରି ପଡ଼ିଲା ହତଭାଗିନୀଟା । ତେଣୁ ଜୀବନଯାତ୍ରାରେ ଭାଗ୍ୟହୀନା ଝିଅଟା ଶ୍ରେଣୀରେ ପ୍ରଥମ ସେକଥା ତାଙ୍କୁ ସ୍ପର୍ଶ କରିଥିଲା । ପରେ ପରେ ମୁଁ ଅନୁଭବ କରେ ସେ ମୋର ପଢ଼ାପଢ଼ି ବିଷୟରେ ସବୁବେଳେ ପଚାରନ୍ତି ।

ବାପାଙ୍କର ବାଲେଶ୍ୱର ବଦଳି ହେତୁ ହଷ୍ଟେଲରେ ରହୁଥିଲି । ସେଠି ଠିକ୍ ଭାବରେ ପଢ଼ାପଢ଼ି କରୁଛି କି ନାହିଁ ବୁଝିବା ମାଧ୍ୟମରେ ମତେ ମାନସିକ ବଳ (Moral Support) ବହୁତ ଦେଇଛନ୍ତି । ମୁଁ ଓ ସୁସ୍ମିତା ରଥ ଉଭୟଙ୍କୁ ସାର୍ ସମାନ ଶ୍ରଦ୍ଧା କରୁଥିଲେ । ଅନେକ ସମୟରେ ସ୍ନେହଶୀଳା ମାଉସୀ (ସାର୍‌ଙ୍କ ଧର୍ମପତ୍ନୀ) ଆମକୁ ଡାକି ଖାଇବାକୁ ଦିଅନ୍ତି । ଏଇଠି କଥାଟିଏ ନକହି ରହିପାରୁନି । ପରୀକ୍ଷା ସରି

ଯାଇଥାଏ । ପ୍ରଥମ ଶ୍ରେଣୀରେ ପାଶ୍ କରି ସରକାରୀ ଆଡହକ ଚାକିରି ପାଇ ଯାଇଥାଏ ସାର୍‌ଙ୍କୁ ଦେଖା କରିବାକୁ । ରମାଦେବୀ ମହିଳା ମହାବିଦ୍ୟାଳୟରେ ଯୋଗଦେବି । ମୋ ସାଙ୍ଗରେ ମୋ ବାପା ଥା'ନ୍ତି । ମୁଁ ପ୍ରଣାମ କରୁକରୁ ମାଉସୀଙ୍କ ଉଦ୍ଦେଶ୍ୟରେ କହିଉଠିଲି "ଶୁଣୁଛ ଅଧ୍ୟାପିକା ବିଷ୍ଣୁପ୍ରିୟା ଓତା ଆସିଛନ୍ତି" । କ'ଣ ଟିକେ ଖାଇବାକୁ ଆଣ । ସେହି କଥା ପଦକ ଭିତରେ ମୁଁ ଅନୁଭବ କରିଥିଲି ଅଜସ୍ର ଆଶୀର୍ବାଦ; ଯାହାକି ମୋ ଜୀବନର ଚଲାପଥକୁ ଆଗେଇ ନେଇଛି । ସେତେବେଳେ ଏତେ ବେଶୀ ଟେଲିଫୋନ୍‌ର ବ୍ୟବହାର ନଥିଲା । ତେଣୁ ଯେକୌଣସି ଆବଶ୍ୟକ ପଡ଼ିଲେ ସାର୍‌ଙ୍କୁ ଚିଠି ଲେଖୁଥିଲି । ସାର୍ ଚିଠିରେ ସମ୍ବୋଧନ କରିଥାନ୍ତି ସୁଚରିତାସୁ, ଶ୍ରଦ୍ଧେୟା ବିଷ୍ଣୁପ୍ରିୟା... । ଏଠି ଗୋଟିଏ ପିତୃସୁଲଭ ସ୍ନେହ ଅନୁଭବ କରେ ମୁଁ । ୧୯୮୦/୮୧ ବେଳକୁ ଏମ୍.ଏ ପାଠ ସରିଥାଏ ଓଡ଼ିଆ ଗବେଷଣା ପରିଷଦ ଗଠନ ସମୟରେ ସାର୍ ଓ କ୍ଷେତ୍ରବାସୀ ସାର୍ ଆମ୍ଭମାନଙ୍କୁ ସଦସ୍ୟ ହେବାପାଇଁ କହିଥିଲେ । ସେହି ପ୍ରଥମ ଅଧିବେଶନରୁ ମୁଁ ସଭ୍ୟ ଥିଲି । ଆଜୀବନ ସଭ୍ୟ ରହିଛି ।

ତେବେ ସାର୍ ଆମ୍ଭମାନଙ୍କୁ ସମାନ ଦୃଷ୍ଟିରେ ଦେଖୁଥିଲେ । ନିରପେକ୍ଷ ଭାବରେ ଖାତା ଦେଖିବେ । ବିଶେଷ କଥାଟି ହେଲା ସାର୍ ଖୁବ୍ ଉଚ୍ଚମନା । କେବେହେଲେ ପରନିନ୍ଦା କରନ୍ତି ନାହଁ, ଶୁଣନ୍ତି ନାହିଁ । ଆଲୋଚନା ମାନେ ସାହିତ୍ୟ ଆଲୋଚନା । ମତେ ସବୁବେଳେ କହନ୍ତି କେବଳ ଭାଷିକା ଅଧ୍ୟାପିକାଟିଏ ନହେଇ ଓଡ଼ିଆ ଭାଷାସାହିତ୍ୟ ପାଇଁ କିଛି ଲେଖ । କିଛି କର । ସେହି ପ୍ରେରଣା ଦେବାପାଇଁ, ସାହିତ୍ୟର ନୂତନ ଦିଗକୁ ଆବିଷ୍କାର, ଗବେଷଣା କରିବାପାଇଁ ଆଉ ସଶରୀରେ ଆମକୁ କହିବେନି । ଏବେ ସେ ଫଟୋ ଭିତରେ ଥାଇବି ଆମକୁ ପ୍ରେରଣା ଦେଉଥିବେ ଆଗେଇ ଯିବାକୁ । ଗବେଷଣା ପରିଷଦର ଜୀବିତ ଓ ସକ୍ରିୟ ସଭ୍ୟମାନେ ଅନୁଷ୍ଠାନକୁ ଆହୁରି ଆଗକୁ ଆଗେଇ ନେବାପାଇଁ ଆମରି ଭିତରେ ଆମେ ଅନୁଭବ କରିବୁ ସାର ଆମରି ଭିତରେ, ଅନୁଷ୍ଠାନ ଭିତରେ ଜୀବିତ ଅଛନ୍ତି ।

ଆଜି ଜୀବନର ଅପରାହ୍ଣ ଆଡ଼କୁ ଆଗେଇଗଲାବେଳେ ମନେପଡୁଛି ସେହି ପୂଜ୍ୟଗୁରୁଙ୍କର ଆଶୀର୍ବାଦ ହିଁ ମୋ ଚଲାପଥକୁ କୁସୁମିତ କରିଛି । ଜଗନ୍ନାଥଙ୍କ ନିକଟରେ ପ୍ରାର୍ଥନା କରୁଛି ତାଙ୍କର ଆତ୍ମାର ସଦ୍‌ଗତି ହେଉ । ସେ ଚିରଜୀବିତ ରହନ୍ତୁ, ଅଗଣିତ ଛାତ୍ରଛାତ୍ରୀଙ୍କ ଗହଣରେ ସାହିତ୍ୟିକଙ୍କ ମଧ୍ୟରେ । •

ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାର, ଭୁବନେଶ୍ୱର

# ପାଗଳପଣକୁ ପ୍ରଣାମ

## ଭାଗ୍ୟଲିପି ମଲ୍ଲ

ମୁଁ ଡକ୍ଟର କୃଷ୍ଣଚରଣ ବେହେରାଙ୍କ ପାଖରେ ପାଠ ପଢ଼ିନି । ମାତ୍ର ତାଙ୍କ ବିଦ୍ୟା ସହିତ ପରିଚିତ ହୋଇଛି । ତାଙ୍କ ଆଖି ଓ ଶବ୍ଦ ସହିତ ମୋର ସଂପର୍କ ବେଶିଦିନର ନୁହେ । ପ୍ରାୟ ଛଅବର୍ଷ । କୌଣସି ଏକ କାମରେ ଚିତ୍ତବାବୁଙ୍କ ସହ ସଂଗ୍ରହାଳୟକୁ ଆସିଥିଲେ । ସେଇଠି ଦେଖା ଓ ଅନ୍ତରଙ୍ଗତା । ଜଣେ ମଣିଷ ସହିତ ଅନ୍ତରଙ୍ଗ ହେବାପାଇଁ ବର୍ଷ ବର୍ଷ ନୁହେ, ଗୋଟିଏ ମୁହୂର୍ତ୍ତ ଯେ ଯଥେଷ୍ଟ, ତାଙ୍କ ସହିତ ପ୍ରଥମ ଦେଖାରେ ଏହା ଥିଲା ମୋର ଅନୁଭବ ।

ବେଳେବେଳେ ଫୋନ୍ କରନ୍ତି । ଏଷଣା ପାଇଁ ଲେଖା ମାଗନ୍ତି । ଲେଖା କିଭଳି ହୋଇଥିବା କଥା, କହି ଦିଅନ୍ତି । କଥା ପ୍ରସଙ୍ଗରେ ଦିନେ କହିଥିଲେ 'ଏଷଣା'ର ଆଲୋଚନାଚକ୍ର ସଂପର୍କରେ । ତାଙ୍କ ଅନୁରୋଧରେ ମୁଁ ଗୋଟିଏ ଆଲୋଚନାଚକ୍ର ସଂଗ୍ରହାଳୟରେ ଓ ଅନ୍ୟଟି କେନ୍ଦୁଲୀରେ ଆୟୋଜନ କରିଥିଲି । ଆଲୋଚନାଚକ୍ର କରିବି ବୋଲି ହଁ କରିବା ପରଠାରୁ ଦେଖିଛି ତାଙ୍କୁ ଆଉ ଏକ ରୂପରେ । ଆଶ୍ଚର୍ଯ୍ୟ ! କେଉଁଠି ରହିବ, କାମ କେତେବାଟ ଗଲା; ଚା ଦେବ ନା ନାହିଁ, ନିମନ୍ତ୍ରଣ ପତ୍ର ଠିକ୍ ଅଛି ତ ? ଏହିଭଳି ଅନେକ ପ୍ରଶ୍ନରେ ସେ ମୋତେ ବ୍ୟସ୍ତ କରିଦେଉଥିଲେ । ମାତ୍ର ଯେଉଁଦିନ ସଂଗ୍ରହାଳୟରେ ଶୈଳଜ ରବିଙ୍କ ପ୍ରବନ୍ଧ ପାଠର ଆଲୋଚନାଚକ୍ର ଅନୁଷ୍ଠିତ ହୋଇଥିଲା, ସେଦିନ ମୋର ସମସ୍ତ ବ୍ୟବସ୍ଥାରେ ସେ ଏତେ ଖୁସି ହୋଇଥିଲେ ଯେ ମୋ'ର ସବୁ ପରିଶ୍ରମର ଶ୍ରେୟ ମୋତେ ନିମିଷକେ ମିଳି ଯାଇଥିଲା । ତାଙ୍କର ସେଦିନର ସେହି ଖୁସି ମୋତେ କେନ୍ଦୁଲୀଠାରେ ଆଉ ଏକ ଆଲୋଚନାଚକ୍ରପାଇଁ ଉତ୍ସାହ ଦେଇଥିଲା । ତାଙ୍କ ଆଶା ପୂରଣ ହୋଇଥିଲା । ଆଲୋଚନାଚକ୍ରରେ ବାଦ୍ୟଯନ୍ତ୍ର ସହ ଗୀତଗୋବିନ୍ଦ ଗାୟନ ତାଙ୍କୁ ମୁଗ୍ଧ କରିଥିଲା । କହିଲେ ଜୟଦେବଙ୍କ ଜନ୍ମପୀଠରେ ଗୀତଗୋବିନ୍ଦ ଗାୟନ ନହୋଇଥିଲେ ଆଲୋଚନାଚକ୍ର ହୁଏତ ସଫଳ ହୋଇ ନଥାନ୍ତା ।

କେନ୍ଦୁଲିର ସେହି ଆଲୋଚନାଚକ୍ରର ଆସର ତାଙ୍କର ସବୁଦିନପାଇଁ ମନେ ରହିବ ବୋଲି ସେଦିନ ସେ ହସି ହସି କହିଥିଲେ । ସବୁକାମ ସେ ନିଜେ ତଦାରଖ କରନ୍ତି ବୋଲି ତାଙ୍କ ଛାତ୍ରମାନଙ୍କଠାରୁ ଶୁଣିଛି । ମାତ୍ର ମୋ'ର ଏହି ଆୟୋଜନରେ ତାଙ୍କର ସନ୍ତୋଷ ମତେ ଭବିଷ୍ୟତପାଇଁ ଅଧିକ ଉତ୍ସାହ ଦେଇଛି ।

ଏବେ ଏକ ଅନୁଭବ ମାଧ୍ୟମରେ ମୋ' କଥା ଶେଷ କରିବି । ପୁରୀର ପାନ୍ଥନିବାସର ଓଡ଼ିଆ ଗବେଷଣା ପରିଷଦ ଆଲୋଚନାଚକ୍ର । 'ଜୀବନଟାଯାକ ସହିବାକୁ ହେଲା ପୀରତି ଦାଉ'- ବକ୍ତା ଡକ୍ଟର ଶ୍ରୀଚରଣ ମହାନ୍ତି । ଯୋଗଦେବାକୁ ଆସୁଥିଲେ ଡକ୍ଟର ବେହେରା । ମାତ୍ର ରାସ୍ତାରେ ହଠାତ୍ ଛାତିରେ ଯନ୍ତ୍ରଣା । ସମସ୍ତେ ଅପେକ୍ଷା କରିଥିଲୁ, ସେ ଆସିଲେ କାର୍ଯ୍ୟକ୍ରମ ଆରମ୍ଭ ହେବ । ମାତ୍ର ଚିତ୍ତବାବୁ (ଡ. ଚିତ୍ତରଂଜନ ବେହେରା)ଙ୍କ ଫୋନ୍ ଆସିଲା- ସାର୍ କହୁଛନ୍ତି, ସେ ଠିକ୍ ଅଛନ୍ତି । ଆପଣମାନେ ଆଲୋଚନାଚକ୍ର ଆରମ୍ଭ କରନ୍ତୁ । କାର୍ଯ୍ୟକ୍ରମରେ ଯୋଗ ଦେଇପାରିଲେନି । ହସ୍‌ପିଟାଲ୍‌ରୁ ଘରକୁ ଫେରିଗଲେ । ତାଙ୍କ ଅନୁପସ୍ଥିତିରେ ଆଲୋଚନାଚକ୍ର ତ ଅନୁଷ୍ଠିତ ହେଲା, ମାତ୍ର ମୋତେ ଲାଗୁଥିଲା, ଏହି ମଣିଷ ଜଣକ ପାଗଳ ନିଶ୍ଚୟ ! ଏମିତି ପାଗଳ ମଣିଷ ପୃଥିବୀରେ କାହିଁକି ଜନ୍ମ ହୁଅନ୍ତି କେଜାଣି ? ମାତ୍ର ଆଜି ଲାଗୁଛି ଏହିଭଳି ପାଗଳମାନେ ପୃଥିବୀରେ ଜନ୍ମ ହେଉ ନଥିଲେ ପୃଥିବୀ ତ ଆଦୌ ଏତେ ସୁନ୍ଦର ଦିଶୁ ନଥାନ୍ତା ?

ଦୁଇଟି ଆଲୋଚନାଚକ୍ରର ସଫଳତା ପରେ ମତେ ଆଉ ଥରେ ହସି ହସି ଫୋନ୍ କଲେ, ଡକ୍ଟର ମଲ୍ଲ ! ଆପଣଙ୍କ ଆୟୋଜନରେ ମୁଁ ଏତେ ମୁଗ୍ଧ ଯେ ଆପଣଙ୍କ ଅଭିଲେଖାଗାରରେ ଆଉ ଗୋଟିଏ ଆଲୋଚନାଚକ୍ର କରି ହୁଅନ୍ତାନି ! ଅବଶ୍ୟ ମୋତେ ଲୋଭୀ ଭାବିବେନି । ମୁଁ ଚେଷ୍ଟା କରିବି କହିଥିଲି । ପରେ ପରେ ଆଉ ଦୁଇ/ତିନିଥର ଫୋନ୍ କରିଛନ୍ତି, ଅନ୍ୟମାନଙ୍କ ହାତରେ ଖବର ପଠାଇଛନ୍ତି, ମୋତେ ବ୍ୟସ୍ତ ବି କରିଛନ୍ତି । ମାତ୍ର ତାଙ୍କର ଏହି ଆଶା ମୁଁ ପୂରଣ କରିପାରି ନାହିଁ । ପୂରଣ କରିବାପାଇଁ ସେ ଆଉ ନାହାନ୍ତି, କି ସେହି ସ୍ଥାନରେ ମୁଁ ମଧ୍ୟ ଆଉ ନାହିଁ । ବୋଧହୁଏ ଏହା ହିଁ ଈଶ୍ୱରଙ୍କର ଇଚ୍ଛା । ତାଙ୍କ ଇଚ୍ଛା ଓ ପାଗଳପଣକୁ ମୋର ଶତକୋଟି ପ୍ରଣାମ । ●

ଓଡ଼ିଶା ରାଜ୍ୟ ଅଭିଲେଖାଗାର
ଭୁବନେଶ୍ୱର

# ପ୍ରେରଣାର ଅଲିଭା ଦୀପ

## ମଣୀନ୍ଦ୍ରକୁମାର ମେହେର

ଓଡ଼ିଶାର ବିଶିଷ୍ଟ ସାହିତ୍ୟିକ ଗବେଷକ ପ୍ରଫେସର ଡକ୍ଟର କୃଷ୍ଣଚରଣ ବେହେରାଙ୍କ ବିୟୋଗ ବାର୍ତ୍ତା ଶୁଣିବା ପରେ ମନରେ ଯେଉଁ ବ୍ୟଥା ଓ ବେଦନା ସୃଷ୍ଟି ହେଲା, ତା'କୁ ଦୂରକରିବା ସଂପୂର୍ଣ୍ଣ ଅସମ୍ଭବ । ମୁଁ ଯେତେବେଳେ ଛୋଟ ଥିଲି ସେତେବେଳେ ସେ ଆମ ଗୃହରେ ପଦାର୍ପଣ କରିଥିଲେ କବି ଗଙ୍ଗାଧରଙ୍କ ସ୍ମୃତିପୀଠ ଓ ସ୍ମୃତି ସନ୍ତକ ଦେଖିବାପାଇଁ । ମୋର ପୂଜ୍ୟ ପିତାମହ କବିପୁତ୍ର ଭଗବାନ ମେହେରଙ୍କ ସହିତ ତାଙ୍କର ଯେଉଁ ଆଳାପ ଆଲୋଚନା ହୋଇଥିଲା ଓ ସମଗ୍ର ପଶ୍ଚିମ ଓଡ଼ିଶାର ବିଭିନ୍ନ ସ୍ଥଳ ପରିଦର୍ଶନ କରି ସେ ଯେଉଁ ଅନୁଭୂତି ଅର୍ଜନ କରିଥିଲେ ତା'କୁ ଆଧାର କରି ଲେଖିଥିଲେ 'ପଶ୍ଚିମ ଓଡ଼ିଶାର ଆହ୍ୱାନ' ଶୀର୍ଷକ ଏକ ଲେଖା । ସେଦିନଠାରୁ ଆମ ପରିବାରରେ ପ୍ରଫେସର ବେହେରାଙ୍କ ନାମ ଯେଉଁ ଶ୍ରଦ୍ଧା ଓ ଭାବାବେଗର ସହିତ ଉଚ୍ଚାରିତ ହୁଏ, ତାହା ଶୁଣିଶୁଣି ମୁଁ ବାରମ୍ବାର ଶିହରିତ ହୋଇଛି । ଅଧ୍ୟାପକ ହେବାପରେ ସମ୍ବଲପୁର ବିଶ୍ୱବିଦ୍ୟାଳୟରେ ତାଙ୍କ ସହିତ ମୋର ପ୍ରଥମ ଦେଖା ହୋଇଥିଲା ସଚେତନ ଭାବରେ । ସେତେବେଳେ ପଶ୍ଚିମ ଓଡ଼ିଶାର ଲେଖକମାନଙ୍କ ବହି ସଂଗ୍ରହ କରିବାପାଇଁ ମୁଁ ତାଙ୍କ ସହିତ ଯାଇଥିଲି ସମ୍ବଲପୁର । ବହି ଦୋକାନରେ କେତେଜଣ ଲେଖକଙ୍କ ବହି କିଣିଆଣି ସେ ମୋତେ ଅଭିଭୂତ କରିଦେଇଥିଲେ । ବୋଧହୁଏ ଏହା ୧୯୯୩/୯୪ର ଘଟଣା । ସେଦିନଠାରୁ 'ଓଡ଼ିଆ ଗବେଷଣା ପରିଷଦ'ର ଆଜୀବନ ସଦସ୍ୟ ମୁଁ ହୋଇଥିଲି । ଲେଖା ପଠାଉ ନଥିବାରୁ ତାଙ୍କର କ୍ଷୋଭ ଚିଠିରେ ବା ଫୋନ୍‌ରେ କଥାବାର୍ତ୍ତା ହେବାବେଳେ ସେ ପ୍ରକାଶ କରୁଥିଲେ । ଲେଖାଲେଖିପାଇଁ ଦେଉଥିଲେ ଅମାପ ଉତ୍ସାହ । ତାଙ୍କର ଚିଠି ସବୁ ଯତ୍ନର ସହ ମୁଁ ସାଇତି ରଖିଚି ।

ଏହି କିଛିଦିନ ତଳେ 'ଏଷଣା'ରେ ଦୁଇ କବିପୁତ୍ରଙ୍କ ପତ୍ରାଳାପ ଶୀର୍ଷକରେ

ମୋର ଯେଉଁ ଲେଖା ପ୍ରକାଶ ପାଇଥିଲା, ସେ ସଂପର୍କରେ ଫୋନ୍ ଯୋଗେ ତାଙ୍କ ସହିତ କଥାବାର୍ତ୍ତାବେଳେ ସେ ଗଭୀର ଆନନ୍ଦ ପ୍ରକାଶ କରିଥିଲେ । କବିପୁତ୍ର ଭଗବାନ ମେହେରଙ୍କ ଜୀବନୀ ଲେଖୁଥିବା କଥା ମୁଁ କହିବାରୁ ଆନନ୍ଦରେ ଗଦ୍‌ଗଦ୍ ହୋଇ ଉଚ୍ଚାରଣ କରିଥିଲେ ବାଃ... ବାଃ... । ଏହିଥିଲା ତାଙ୍କ ସହିତ ମୋର ଶେଷ ଆଳାପ । ପ୍ରଫେସର ବେହେରାଙ୍କ ସ୍ନେହଶୀଳତା ଚିରଦିନ ଅଭୁଲା ହୋଇ ରହିବ ନିଶ୍ଚୟ । ନିଜ ଲେଖାଲେଖି ଦିଗରେ ସାମାନ୍ୟ ଅବହେଳା କଲେ ତାଙ୍କର କଣ୍ଠସ୍ୱର ଧ୍ୱନିତ ହେଉଥିବ ଛାତି ଭିତରେ ସର୍ବଦା ।



ଉତ୍କଳ ବିଶ୍ୱବିଦ୍ୟାଳୟ
ଭୁବନେଶ୍ୱର

# ମଣିଷକୁ ଭଲ ପାଉଥିବା ମଣିଷ

## ଅର୍ଜ୍ଜୁନ ଚରଣ ମଲ୍ଲିକ

କିଛି ବ୍ୟକ୍ତି ଆମ ପ୍ରାଣରେ ଆସନ ପାତିଥାନ୍ତି ଏକ ଆଦର୍ଶ ପୁରୁଷ ଭାବରେ । ସେମାନଙ୍କ ଅବର୍ତ୍ତମାନ ଆମକୁ ମ୍ରିୟମାଣ କରି ପକାଏ । ସେହିପରି ଜଣେ ଦରଦୀ ମଣିଷ ଥିଲେ ମୋ ସାର୍ - ଡକ୍ଟର କୃଷ୍ଣଚରଣ ବେହେରା । ସେ ସମସ୍ତଙ୍କୁ ନିଜର ଲାଗନ୍ତି, କାରଣ ସେ ସମସ୍ତଙ୍କୁ ନିଜର କରିପାରିଥିଲେ । ଆଦର୍ଶ ଶାନ୍ତିପ୍ରିୟ ଜଣେ ସହୃଦୟ ମଣିଷ ଭାବରେ ସେ ସମସ୍ତଙ୍କର ନିକଟତର ହୋଇପାରିଥିଲେ । ଜଣେ ଉତ୍ସର୍ଗୀକୃତ ସାହିତ୍ୟ ସାଧକ ଭାବରେ ସେ ନାନା କବିତା, ଗଳ୍ପ, ସମାଲୋଚନା, ଗବେଷଣାତ୍ମକ ନିବନ୍ଧ ରଚନା କରିଛନ୍ତି । ମୋଗଲ ତାମସା ଭଳି କେତେକ ଦୁଷ୍ପ୍ରାପ୍ୟ ଉପାଦାନର ସଂଗ୍ରହ କରି ସଂପାଦନା କରିଛନ୍ତି । ତାଙ୍କର ବହୁ ସଂପାଦନା ପୁସ୍ତକ ବ୍ୟତୀତ ଓଡ଼ିଆ ଗବେଷଣା ପରିଷଦର ଏଷଣା ପ୍ରବନ୍ଧାବଳୀର ସଂପାଦନା ଉଲ୍ଲେଖଯୋଗ୍ୟ । ଜଣେ ସାହିତ୍ୟ ସଂଗଠକ ଭାବରେ ତାଙ୍କର ଅବଦାନ ଅବିସ୍ମରଣୀୟ । ଓଡ଼ିଆ ଗବେଷଣା ପରିଷଦ ଏହାର ମୁଖପତ୍ର ଏଷଣା ତାଙ୍କରି ହାତରେ ସୃଷ୍ଟି ଓ ସମ୍ବର୍ଦ୍ଧିତ । ତାଙ୍କର ସାରସ୍ୱତ ସୃଷ୍ଟି ପାଇଁ ସେ ବହୁ ଭାବରେ ସମ୍ମାନିତ ହୋଇଛନ୍ତି ।

୧୯୯୮ ମସିହାରେ ଓଡ଼ିଆ ନାଟକ ଓ ଏକାଙ୍କିକା ସମାଲୋଚନା ଗ୍ରନ୍ଥ ପାଇଁ ସେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ପୁରସ୍କୃତ ହୋଇଥିଲେ । ସେ ମଧ୍ୟ ବିଷୁବ ପୁରସ୍କାର, ଉତ୍କଳ ସାହିତ୍ୟ ସମାଜ ପୁରସ୍କାର ଲାଭ କରିଥିଲେ । ଜୀବନରେ ନୀଳକଣ୍ଠ ଭଳି ସମସ୍ତ ଦୁଃଖଶୋକକୁ ଆକଣ୍ଠ ପାନ କରି ଶରୀରର ଅସୁସ୍ଥତାକୁ ଖାତିର ନ କରି ଶେଷ ସମୟ ପର୍ଯ୍ୟନ୍ତ ସେ ସାହିତ୍ୟ ସାଧନାରେ ବ୍ରତୀ ଥିଲେ । ଅକାଳରେ ନିଜର ପ୍ରିୟତମା ପତ୍ନୀଙ୍କୁ ହରାଇଛନ୍ତି, ସୁଯୋଗ୍ୟ ପୁତ୍ରକୁ ହରାଇଛନ୍ତି, ଆପଣାର ପ୍ରିୟଛାତ୍ର ଓ ସାହିତ୍ୟ ସଂଗଠନର ମୁଖ୍ୟ ସହକର୍ମୀ ଡ.କ୍ଷେତ୍ରବାସୀ ନାୟକଙ୍କୁ ସେ ହରାଇଛନ୍ତି । ତଥାପି ସେ ହାରିଯାଇ ନଥିଲେ । ଓଡ଼ିଆ ଗବେଷଣା ପରିଷଦକୁ ଆଗେଇ ନେବାପାଇଁ

ସେ ଶେଷ ପର୍ଯ୍ୟନ୍ତ ଉଦ୍ୟମ ଜାରି ରଖିଥିଲେ । ସେ ଆପଣେଇ ନେଇଥିଲେ ତାଙ୍କର ଚତୁଃପାର୍ଶ୍ୱରେ ଥିବା ସବୁ ମଣିଷମାନଙ୍କୁ । ସ୍ନେହ ଓ ଶ୍ରଦ୍ଧା ବାଣ୍ଟୁଥିଲେ । ପ୍ରାୟ ସବୁ ସାହିତ୍ୟିକ ଓ ଗବେଷକମାନଙ୍କୁ ସେ ଉତ୍ସାହ ପ୍ରଦାନ କରୁଥିଲେ । ପରସ୍ପର ଅଧିକ ନିକଟତର ହେବା ପାଇଁ ଗବେଷଣା ପରିଷଦର ସମସ୍ତ ଅଧିବେଶନରେ ସେ ଆଗ ସମସ୍ତ ସଭ୍ୟଙ୍କ ପରିଚୟ ପ୍ରଦାନ ପାଇଁ ଏକ କାର୍ଯ୍ୟକ୍ରମ ରଖୁଥିଲେ । ନିଜେ ସମସ୍ତଙ୍କ ପରିଚୟ ଗୋଟି ଗୋଟି ପ୍ରଦାନ କରୁଥିଲେ । ଏଥିରୁ ତାଙ୍କର ଆତ୍ମୀୟତା ଭାବର ପରିଚୟ ମିଳିଥାଏ ।

ସେ ମଧ୍ୟ ଜଣେ ଆଦର୍ଶ ଛାତ୍ରବତ୍ସଳ ଅଧ୍ୟାପକ ଭାବରେ ସମସ୍ତଙ୍କର ଏକାନ୍ତ ପ୍ରିୟ ଥିଲେ । ମୋର ମନେଅଛି ତାଙ୍କର ପ୍ରଫେସରପଡ଼ା ଭଡ଼ାଘର କଥା । ୧୯୭୬ ମସିହାରେ ସେ ସେଠାକୁ ଆମ ଭଳି କେତେକ ଛାତ୍ରକୁ ଡାକି ବିଭିନ୍ନ ପ୍ରଶ୍ନ ପତ୍ରର ଉତ୍ତର ଲେଖିବା ପ୍ରଣାଳୀ ଶିଖାଉଥିଲେ । ଓଡ଼ିଆ ସାହିତ୍ୟ ସଂପର୍କରେ ତାଙ୍କର ସ୍ୱପ୍ନ ଥିଲା ଅସୁମାରୀ । ସେହି ସ୍ୱପ୍ନକୁ ସାକାର କରିବା ପାଇଁ ସେ ଆମକୁ ଉପଦେଶ ଦେଉଥିଲେ । ସାହିତ୍ୟ ସଂପର୍କିତ ବହୁ ନୂତନ ତଥ୍ୟ ସଂପର୍କରେ ଆମକୁ ଅବହିତ କରାଉଥିଲେ । ଆପଣାର ସର୍ଜନାତ୍ମକ ଓ ସମାଲୋଚନାତ୍ମକ ଦୃଷ୍ଟିଭଙ୍ଗୀର ବିକାଶ ପାଇଁ ସେ ଆମକୁ ପ୍ରୋତ୍ସାହିତ କରୁଥିଲେ । ସେଭଳି ବ୍ୟକ୍ତିତ୍ୱ ଏବେ ଦୁର୍ଲ୍ଲଭ । ତାଙ୍କ ବିଚ୍ଛେଦରେ ତାଙ୍କର ପ୍ରିୟଜନମାନେ ଆଜି ଏକାନ୍ତ ମର୍ମାହତ । ମଣିଷକୁ ଭଲ ପାଉଥିବା ମଣିଷଟି ସମସ୍ତଙ୍କୁ ଛାଡ଼ି ଚାଲିଗଲେ । ଶେଷରେ ପରମାତ୍ମାଙ୍କ ନିକଟରେ ପ୍ରାର୍ଥନା ତାଙ୍କ ଆତ୍ମାର ସଦ୍‌ଗତି ହେଉ, ଏତିକି କାମନା ।



# ଦାରୁଣ ଦୁଃଖ

## ଶିଶିର ମହାପାତ୍ର

ଅତୀତର ବିକ୍ଷିପ୍ତ ଚିନ୍ତା ମନକୁ ଆସେ ସୁସାହିତ୍ୟିକ ଡକ୍ଟର କୃଷ୍ଣଚରଣ ବେହେରାଙ୍କ ବିଷୟରେ ଆଲୋଚନା କରିବା ସମୟରେ । ପଛକୁ ଫେରିବା ସମୟରେ ସ୍ଥାନ କାଳ ପାତ୍ରକୁ ଲକ୍ଷ୍ୟ କରିବାକୁ ହୁଏ । ସେହିପରି ଭାବରେ ୧୯୬୪ ବେଳର ବିଷୟ । ମୁଁ ବାରିପଦାରେ ହାଇସ୍କୁଲ ଶେଷବର୍ଷ ପରୀକ୍ଷା ଦେଇ କଟକ, ଭୁବନେଶ୍ୱର, ପୁରୀ ଓ କୋଣାର୍କ ବୁଲିବା ପାଇଁ ମୋର ଜଣେ ବନ୍ଧୁ ବ୍ରଜକିଶୋର ପଟ୍ଟନାୟକଙ୍କ ସହ (ପରେ ସେ ପଶୁଡାକ୍ତର) ବୁଲିବାକୁ ଯାଇଥିଲି । କଟକରେ ଏକ ନିଆଁଖୁଣ୍ଟ ପତ୍ରିକା (ଗୋଦାବରୀଶ ମହାପାତ୍ରଙ୍କ ସଂପାଦିତ) କିଣି ପଢ଼ିଲି । ସେଥିରେ ଡକ୍ଟର କୃଷ୍ଣଚରଣ ବେହେରାଙ୍କ ଦ୍ୱାରା ଲିଖିତ ବେଦୀ ଗଳ୍ପଟି 'ଶତରୂପା' ସାହିତ୍ୟ ପତ୍ରିକାରେ ପ୍ରକାଶିତ ହୋଇଥିଲା ଓ ଅଶ୍ଳୀଳତା ପାଇଁ କେତେକ ଧାଡ଼ି ଉଦ୍ଧୃତି ହୋଇ ସମାଲୋଚିତ ହୋଇଥିଲା । ସେହି ସମୟରେ ଡକ୍ଟର ବେହେରା ଘରୋଇ ପରିଚାଳିତ ଭଦ୍ରକ କଲେଜରେ ଓଡ଼ିଆ ଭାଷା ସାହିତ୍ୟ ବିଭାଗରେ ଅଧ୍ୟାପନା କରୁଥିଲେ ।

୧୯୭୬ରେ ଡକ୍ଟର କୃଷ୍ଣଚରଣ ବେହେରା ଭଦ୍ରକ କଲେଜରେ ଅଧ୍ୟାପନା କରୁଥିବା ସମୟରେ 'ଓଡ଼ିଆ ଗଳ୍ପ ଉପନ୍ୟାସ' ଉପରେ ସନ୍ଦର୍ଭ ଲେଖି ଉତ୍କଳ ବିଶ୍ୱବିଦ୍ୟାଳୟରୁ ଡକ୍ଟରେଟ୍ ଡିଗ୍ରୀ ଲାଭ କରିଲେ । ସେହି ସମୟରେ ମୋ ପାପା ୰ଲକ୍ଷ୍ମୀକାନ୍ତ ମହାପାତ୍ର (୧୯୦୯-୧୯୮୪) ବାରିପଦାରୁ ସରକାରୀ ଚାକିରିରୁ ଅବସର ନେଇ ଭଦ୍ରକର ଗରଦପୁରରେ ନିଜ ବାସଗୃହରେ ରହୁଥିଲେ । ଡକ୍ଟର ବେହେରାଙ୍କୁ ଭଦ୍ରକଠାରେ ତାଙ୍କର ଏହି ଗବେଷଣା ଡିଗ୍ରୀ ଲାଭ ପାଇଁ ଏକ ସମ୍ବର୍ଦ୍ଧନା ସଭା ଅନୁଷ୍ଠିତ ହେଉଥିବା ଜାଣି ଯୋଗଦାନ କରିଥିଲେ । ମୁଁ ସେହି ସମୟରେ ବାରିପଦାଠାରେ ବି.ଏ. (ଅନର୍ସ) ପଢୁଥିଲି ଓ ଗ୍ରୀଷ୍ମଛୁଟିରେ ଘରକୁ ଆସିବା ପରେ ବାପା ମୋତେ ଏ ବିଷୟ ଜଣାଇଥିଲେ ଓ ଆନନ୍ଦ ପ୍ରକାଶ କରିଥିଲେ ।

ବାରିପଦାଠାରେ ଓଡ଼ିଆ ଯୁବଲେଖକ ସମ୍ମେଳନରେ ୮ମ ବାର୍ଷିକ ଉତ୍ସ କରିବା ପାଇଁ ଚିନ୍ତା କରିଲି । ଏହି ସମୟରେ ମୁଁ କବିତା, ଗଳ୍ପ ଓ ପ୍ରବନ୍ଧ ଆଲୋଚନା ଲେଖିବା ପାଇଁ ଆଗ୍ରହୀ ହେଲି । ଏହା ସହିତ 'ଭ୍ରାମ୍ୟମାଣ ସାହିତ୍ୟ ସଂସଦ' ନାମରେ କିଛି ବନ୍ଧୁଙ୍କୁ ନେଇ କବିତା ପାଠୋତ୍ସବ, କଟକର ବିଭିନ୍ନ ସ୍ଥାନର ଉଦ୍ୟୋକ୍ତା ଭାବରେ କାର୍ଯ୍ୟ କରିଲି ଓ 'ସମାଜ'ରେ ଏହାର ସମ୍ବାଦମାନ 'କଟକ ସମାଚାର'ରେ ପ୍ରକାଶ ପାଉଥିଲା । ଓଡ଼ିଆ ଯୁବ ଲେଖକ ସମ୍ମେଳନର ପୂର୍ବ ଅଧିବେଶନଗୁଡ଼ିକ ପୁରୀ, ଭୁବନେଶ୍ୱର, ଭଦ୍ରକ, ସମ୍ବଲପୁର, ବଲାଙ୍ଗୀର, ବ୍ରହ୍ମପୁର ଓ ଫୁଲବାଣୀଠାରେ ହୋଇ ଆସିଥିଲା । ମୋର ଏକ କବିତା ବି.ଜେ.ବି. କଲେଜ ଓଡ଼ିଆ ସାହିତ୍ୟ ସମାଜ ତରଫରୁ ପ୍ରତିଯୋଗିତାରେ ସମଗ୍ର ଓଡ଼ିଶାରୁ ଆସିଥିବା ୮୨ ଗୋଟି କବିତା ମଧ୍ୟରୁ ପ୍ରଥମ ହୋଇ ପୁରସ୍କୃତ ହୋଇଥିଲା । କଟକଠାରେ ଦୁଇଗୋଟି ପ୍ରବନ୍ଧ ପ୍ରଥମ ହୋଇ ପୁରସ୍କୃତ ହୋଇଥିଲା । ଏହିପରି ଭାବରେ କିଛି ଯୁବ ଓ ବୟସ୍କ ସାହିତ୍ୟିକମାନଙ୍କ ସହ ପରିଚିତ ହେଲି । ଏଣୁ ବାରିପଦାଠାରେ ଏହି ବାର୍ଷିକ ସମ୍ମେଳନ କରିବା ପାଇଁ ନିଜର ଆତ୍ମବିଶ୍ୱାସ ବଢ଼ାଇଲି । ମାତ୍ର ସାଙ୍ଗଠନିକ କାର୍ଯ୍ୟ କିପରି କରାଯାଏ ତାହା ମୋର ବିଶେଷ ଜ୍ଞାନ ନଥିଲା ବା କେବେ ସେମିତି କାର୍ଯ୍ୟରେ ଜଡ଼ିତ ନଥିଲି । ମୟୂରଭଞ୍ଜ ମହାରାଜାମାନଙ୍କର ଓଡ଼ିଆ ସାହିତ୍ୟ ସଂସ୍କୃତି ଓ ଶିକ୍ଷା ପାଇଁ ଅବଦାନ ଏହି କଟକଠାରେ କେତୋଟି ଆଲୋଚନା ପ୍ରବନ୍ଧ ପାଠ କରି ଜାଣିଥିଲି । ବାରିପଦାର ସାହିତ୍ୟିକ ଯୁବପ୍ରାଣ ମଧ୍ୟରୁ ଶାନ୍ତିନିକେତନରେ ଓଡ଼ିଆ ଭାଷା ସାହିତ୍ୟ ପଢୁଥିବା ଧୀରେନ ଆଚାର୍ଯ୍ୟ ଓ କଟକକୁ ନୂଆ କରି ଆସିଥିବା ଡକ୍ଟର ବେହେରାଙ୍କୁ ଦେବା ପାଇଁ କହିଲି । ମାତ୍ର ଆଚାର୍ଯ୍ୟ ପ୍ରାଥମିକ ଭାବରେ ପ୍ରଶ୍ନ ଉଠାଇଲେ ଯେ ବାରିପଦାରେ ସାହିତ୍ୟିକ କାହାନ୍ତି ? କାହାକୁ ନେଇ ଏ କାର୍ଯ୍ୟ ହେବ ? ତେବେ ପତ୍ର ମାଧ୍ୟମରେ ପୁଣି ବୁଝାଇ ଲେଖିବାରୁ ସେ ରାଜି ହୋଇ ଡକ୍ଟର ବେହେରାଙ୍କ ସହ ଭଦ୍ରକକୁ ଯୋଗାଯୋଗ କରିଲେ । ତାଙ୍କର ସମୟାନୁବର୍ତ୍ତୀ ଓ ସାଙ୍ଗଠନିକ ଉଦ୍ୟମ ପ୍ରଶଂସନୀୟ । ସେ ସରଳ ଓ ସ୍ନେହୀ । ଡକ୍ଟର ପାଟଶାଣୀ, ଧୀରେନ ଆଚାର୍ଯ୍ୟ ଓ ଡକ୍ଟର ବେହେରାଙ୍କ ସହ ଅନ୍ୟ ବନ୍ଧୁମାନଙ୍କର ସମସ୍ତ ଚିଠି ଏ ପର୍ଯ୍ୟନ୍ତ ମୋ ପାଖରେ ଗଚ୍ଛିତ ଅଛି ।

ଭଦ୍ରକ କଲେଜକୁ ସରକାର ହାତକୁ ନେବାପରେ ଡକ୍ଟର ବେହେରାଙ୍କର ବାରିପଦା ଏମ୍.ପି.ସି. କଲେଜକୁ ସ୍ଥାନାନ୍ତର ହେଲା । ସେ ସମୟରେ ଆମର ସୌଭାଗ୍ୟକୁ ବାରିପଦାଠାରେ ଏକ ଅଭ୍ୟର୍ଥନା ସମିତି ଗଠନ କରି ତାଙ୍କ ସହ

ଯୋଗାଯୋଗ ଓ ପରାମର୍ଶ ବହୁ ସୁବିଧା ହେଲା । ବାରିପଦାରେ ପ୍ରଖ୍ୟାତ କବି ଡକ୍ଟର ସୀତାକାନ୍ତ ମହାପାତ୍ର ସେତେବେଳେ ଜିଲ୍ଲାପାଳ ଥିଲେ ଓ ସେ ଅଭ୍ୟର୍ଥନା ସମିତିର ସଭାପତି ହେବାକୁ ରାଜି ହେଲେ । ଅବସରପ୍ରାପ୍ତ ଡି.ପି.ଆଇ. ଓ ସାହିତ୍ୟ ପ୍ରାଣ ଗୋକୁଳଚନ୍ଦ୍ର ଶତପଥୀ କାର୍ଯ୍ୟକାରୀ ସଭାପତି ହୋଇଥିଲେ । ମୟୂରଭଞ୍ଜ ମହାରାଜା ପ୍ରଦୀପ୍ତ ଚନ୍ଦ୍ର ଭଞ୍ଜଦେଓ ଆମକୁ ଆର୍ଥିକ ସହଯୋଗ କରିଥିଲେ । ଡକ୍ଟର ବେହେରାଙ୍କ ସହଧର୍ମିଣୀ ୰ଜୟନ୍ତୀ ବେହେରାଙ୍କ ଦ୍ୱାରା ପ୍ରସ୍ତୁତ ସୁସ୍ୱାଦୁ ଖାଦ୍ୟ ଡକ୍ଟର ପାଟ୍ଟଶାଣୀ ଓ ମୁଁ କେତେବର ତାଙ୍କ ପୋଲିସ ଲାଇନ ଛକ କ୍ୱାର୍ଟରରେ ଖାଇଅଛୁ । ମୁଁ କେତେବେଳେ ଧୀରେନ ଆଚାର୍ଯ୍ୟଙ୍କ ସହ ଯାଇ ତାଙ୍କ ଗୃହରେ ମଧ ରହୁଥିଲି । ଅଭ୍ୟର୍ଥନା ସମିତିର ସଂପାଦକ ଶ୍ରୀ ଲକ୍ଷ୍ମୀନାରାୟଣ ଦାସ (ଟୁରିବାବୁ) ଓ ଅନ୍ୟତମ ସହଯୋଗୀ ପ୍ରତାପଚନ୍ଦ୍ର କରଙ୍କ (ଫଟେମ) ଦେଖାକରି କାର୍ଯ୍ୟ କରିବାକୁ ହେଉଥିଲା । ମୁଁ ନିଜେ ସ୍ମରଣିକା ଦାୟିତ୍ୱରେ ରହି ଲେଖା ସଂଗ୍ରହ ଓ ଛାପା କାର୍ଯ୍ୟ କଟକରେ କରୁଥିଲି । ସେ ସମୟରେ ଆମକୁ ବହୁ କଷ୍ଟ ଭୋଗ କରିବାକୁ ହୋଇଛି । ଏହାର କାରଣ ସମ୍ମେଳନ ତରଫରୁ କଲିକତାଠାରେ ଇଷ୍ଟର୍ଣ୍ଣଜୋନ୍ ରାଇଟ୍‌ର୍‌ସ କନଫରେନ୍‌ସ ଡକ୍ଟର ପାଟ୍ଟଶାଣୀ କଲିକତାରେ ହୋମିଓପାଥି କଲେଜରେ ପଢୁଥିବା ଡକ୍ଟର ଦେବେନ୍ଦ୍ର ନାଥ ମାନସିଂହ ଓ ପ୍ରହରାଜ ସତ୍ୟନାରାୟଣ ନନ୍ଦଙ୍କ ସହ ମିଶି ୧୯୭୧ ଅକ୍ଟୋବର ୩୦ ଓ ୩୧ ତାରିଖକୁ ଧାର୍ଯ୍ୟ କରି ପ୍ରୋଗ୍ରାମ ଛପାଇ ସ୍ଥିର କରିଥିଲେ । ମାତ୍ର ଠିକ ତାହା ପୂର୍ବରୁ ଓଡ଼ିଶାରେ ପ୍ରଳୟଙ୍କରୀ ବାତ୍ୟା, ବିଶେଷକରି କଟକ ଜିଲ୍ଲାର ହେବାରୁ ଏହି ସାହିତ୍ୟ ସଭା ସ୍ଥଗିତ ହେଲା । ଦ୍ୱିତୀୟରେ ସମ୍ମେଳନରେ ବାର୍ଷିକ ଉତ୍ସବ ପ୍ରତିବର୍ଷ ପରି ଡିସେମ୍ବର ଶେଷ, ଜାନୁୟାରୀ ବା ଫେବୃଆରି ପ୍ରଥମ ସପ୍ତାହରେ ହୋଇ ପାରିଲା ନାହିଁ । କଲିକତାଠାରେ ଫେବୃଆରି ୨୬ ଓ ୨୭ ଦିନ ଇଷ୍ଟର୍ଣ୍ଣଜୋନ ଲେଖକ ସମ୍ମେଳନ (ଓଡ଼ିଶା, ଆସାମ ଓ ବଙ୍ଗଦେଶ) ଶ୍ରୀ ନିକେତନ ହଲଠାରେ ଅନୁଷ୍ଠିତ ହୋଇଥିଲା । ସେଠାକୁ ଦିଲ୍ଲୀରୁ ମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀ ଆସି (ସୂଚନା ଓ ପ୍ରସାରଣ ଉପମନ୍ତ୍ରୀ) ଏହି ସମ୍ମେଳନକୁ ଉଦ୍‌ଘାଟନ କରିଥିଲେ । କଲିକତାର ପ୍ରସିଦ୍ଧ ଗାୟକ ଗାୟିକା 'ସାରା ଜହାଁସେ ଆଚ୍ଛା' ଦେଶାତ୍ମକବୋଧ ସଂଗୀତ ଗାନ କରିଥିଲେ । ୰ସଚ୍ଚିଦାନନ୍ଦ ରାଉତରାୟ (ପଦ୍ମଶ୍ରୀ) ପରାମର୍ଶ ସମିତିର ସଭାପତି ଥିଲେ । ଡକ୍ଟର ବେହେରା ଉପସ୍ଥିତ ରହି କାର୍ଯ୍ୟ କରିଥିଲେ ଓ ଉଦ୍‌ଯାପନୀ ଭାଷଣ ଦେଇଥିଲେ ।

ଡକ୍ଟର ବେହେରାଙ୍କଙ୍କର ସାଙ୍ଗଠନିକ ଅନୁଭୂତି ତାଙ୍କର ଭଦ୍ରକ କଲେଜରେ ଅଧ୍ୟାପନା ସମୟରୁ ହୋଇଥିଲା । ୧୯୬୩ରେ ଭଦ୍ରକରେ 'ଭଦ୍ରକ ଲେଖକ ସମ୍ମିଳନୀ' ହୋଇଥିଲା । ସେଥିରେ ଉଦୟ ନାରାୟଣ ମହାନ୍ତି ସଭାପତି, ସଂପାଦକ ଡ. କ୍ଷେତ୍ରବାସୀ ନାୟକ ଓ ଡକ୍ଟର ବେହେରା କୋଷାଧ୍ୟକ୍ଷ କାର୍ଯ୍ୟ ତୁଲାଇଥିଲେ । ଭଦ୍ରକ ସେତେବେଳେ ଏକ ସବ୍-ଡିଭିଜନ ଓ ଗ୍ରାମାଞ୍ଚଳ ସହର । ଏହିପରି ସବ୍‌ଡିଭିଜନ ବା ଜିଲ୍ଲାସ୍ତରୀୟ ଲେଖକ ସମ୍ମେଳନ ଓ ସ୍ମରଣିକା ପ୍ରକାଶ ଓ ସ୍ୱାଧୀନ ଓଡ଼ିଶାର ଏହା ବୋଧେ ପ୍ରଥମ । ୧୬୬୬ରେ ଅର୍ଥାତ ଭଦ୍ରକ ଲେଖକ ସମ୍ମେଳନର ୩/୪ ବର୍ଷ ପରେ ଓ.ଯୁ.ଲେ. ସମ୍ମେଳନର ୩ୟ ବାର୍ଷିକ ଅଧିବେଶନ ଏଠାରେ ଅନୁଷ୍ଠିତ ହୋଇଥିଲା । ଏଣୁ ଅଭ୍ୟର୍ଥନା ସମିତି ଗଠନ କରି ନିଖିଳ ଓଡ଼ିଶା ସ୍ତରର । ଲେଖକ ସମ୍ମେଳନ ଭଦ୍ରକ ଭଳି ସହରରେ ସାଳନ୍ଦୀ ନଦୀ ଅଙ୍କାବଙ୍କା ହୋଇ ବର୍ଷାଦିନରେ ଯେଉଁ ଅକଥନୀୟ ପରିସ୍ଥିତି ସୃଷ୍ଟି କରି ଆସିଥାଏ ସେଠାରେ ତୁଲାଇବାରେ ତାଙ୍କର ଭୂମିକାକୁ ସ୍ୱୀକାର କରିବା କଥା । ଅବଶ୍ୟ ତାଙ୍କୁ ଅନ୍ୟମାନେ ସହଯୋଗ କରିବାରେ ନିଜର ସ୍ନେହ ଓ ଶ୍ରଦ୍ଧା ରହିଥିଲା ।

ଅତୀତର ସମସ୍ତ ଅନୁଭୂତିକୁ ନେଇ ଡକ୍ଟର ବେହେରା ତାଙ୍କର ପ୍ରିୟଛାତ୍ର ଡ. ୰କ୍ଷେତ୍ରବାସୀ ନାୟକଙ୍କ ସହ ଓଡ଼ିଆ ଗବେଷଣା ପରିଷଦ ୧୯୮୦-୮୧ରେ ରେଜିଷ୍ଟ୍ରେସନ କରି 'ଏଷଣା' ନାମରେ ଷାଣ୍ମାସିକ ପତ୍ରିକାଟିଏ ଏକ ନିର୍ଦ୍ଦିଷ୍ଟ ସମୟରେ ପ୍ରକାଶ କରି ଆସିଛନ୍ତି । ବାର୍ଷିକ ଉତ୍ସବ ସହ ଓଡ଼ିଶାର ବିଭିନ୍ନ ସ୍ଥାନରେ ପ୍ରବନ୍ଧ ଆଲୋଚନାର ପାଠଚକ୍ର କରାଇ ନୂତନ ଯୁବ ଗବେଷକମାନଙ୍କୁ ଦିଗ୍‌ଦର୍ଶନ ଓ ଉତ୍ସାହିତ କରିଛନ୍ତି । ୧୯୮୨-୮୩ର ମଧ୍ୟବର୍ତ୍ତୀ କୌଣସି ସମୟରେ ବାଲେଶ୍ୱରଠାରେ ମୋର ଚାକିରି କାର୍ଯ୍ୟ ସମୟରେ ବ୍ୟାସକବି ଫକୀରମୋହନଙ୍କ ଶାନ୍ତିକାନନଠାରେ ଏକ ପ୍ରବନ୍ଧ ପାଠଚକ୍ର ଅନୁଷ୍ଠିତ ହୋଇଥିଲା । ଡକ୍ଟର ବିଷ୍ଣୁପ୍ରିୟା ଓତାଙ୍କଠାରୁ ଖବର ପାଇଁ ମୁଁ ସେହି ପାଠଚକ୍ରରେ ଯୋଗଦାନ କରିବାକୁ ଯାଇଥିଲି । ଡକ୍ଟର ଓତାଙ୍କଠାରୁ 'ଏଷଣା' ପାଇବାରେ ସୁବିଧା ହେଲା । ପରେ ମୁଁ ଡକ୍ଟର କ୍ଷେତ୍ରବାସୀ ନାୟକଙ୍କୁ ତାଙ୍କର ନୂଆ କରି ନିର୍ମାଣ କରିଥିବା କଟକ ଗୃହରେ ଦେଖା କରିଥିଲି । ସେ ମୋତେ ଉତ୍ସାହିତ କରି ଗବେଷଣା ସଂପର୍କରେ କେତେକ ତଥ୍ୟପ୍ରଦ ବିଷୟ ବୁଝାଇ ଦେଲେ । ଓଡ଼ିଆ ସାହିତ୍ୟ ସଂପର୍କରେ ମୁଁ ସ୍ୱାଧୀନ ଭାବରେ ଯାହା କିଛି ପଢ଼ାପଢ଼ି କରି ଆୟତ୍ତ କରିଥିଲି । ବାଲେଶ୍ୱରର ଦୀର୍ଘକାଳ ଅବସ୍ଥିତି ଓ ସେଠାରେ ଫକୀରମୋହନଙ୍କ ପୂର୍ଣ୍ଣାଙ୍ଗ ଆତ୍ମଜୀବନୀ ପାଠ କରିବା ପରେ ଇତିହାସ ପ୍ରତି ଆଗ୍ରହ ଜନ୍ମିଲା । ଏହାପରେ ମୋର

ଦରଖାସ୍ତକୁ ବିଚାର କରି ଓଡ଼ିଆ ଗବେଷଣା ପରିଷଦ ମୋତେ ସଭ୍ୟ ଭାବରେ ଗ୍ରହଣ କରିଥିଲେ । ଡକ୍ଟର ବେହେରାଙ୍କ କଟକ ଅବସ୍ଥାନ ଦୀର୍ଘ ପ୍ରାୟ ସାଢ଼େ ତିନି ଦଶନ୍ଧିରୁ ଅର୍ଥାତ ରେଭେନ୍ସା କ୍ୟାମ୍ପସ କ୍ୱାର୍ଟର, ଭଡ଼ାଘର ଓ ନିଜସ୍ୱ ବାସଗୃହଠାରେ ଦେଖା ସାକ୍ଷାତ ହୁଏ । ଯେଉଁ ଯେଉଁ ସାହିତ୍ୟ ଆଲୋଚନା ଚକ୍ର ସୁବିଧାଜନକ ହୁଏ ମୁଁ ନିୟମିତ ସେଗୁଡ଼ିକ ଯୋଗଦାନ କରି ଓ ଆଲୋଚନାରେ ଅଂଶଗ୍ରହଣ କରିବାକୁ ଆଗ୍ରହୀ ହୁଏ ।

ଡକ୍ଟର ବେହେରାଙ୍କର ଏକ ନିର୍ଦ୍ଦିଷ୍ଟ ଦର୍ଶନ ଥିଲା । ତାଙ୍କର ସେହି ସାହିତ୍ୟିକ କାର୍ଯ୍ୟରେ ଦର୍ଶନ ହୁଏତ ରୁଚିଗତ ପାର୍ଥକ୍ୟ ଆଣିଚି । ସାହିତ୍ୟ ଥିଲା ତାଙ୍କର ପ୍ରାଣ । ସେ ଥିଲେ ସ୍ନେହୀ ଓ ଉତ୍ସାହୀ । ତାଙ୍କର କ୍ରୋଧ ନଥିଲା । ଯେଉଁ କ୍ରୋଧ ପ୍ରକାଶ କରୁଥିଲେ- ତାହା କ୍ରୋଧ ନୁହେଁ । ତାହା ଥିଲା ଶୃଙ୍ଖଳା ମଧ୍ୟରେ କାର୍ଯ୍ୟ କରିବା ଓ ଆଶୀର୍ବାଦ ଲାଭ କରିବା । ସେ ପ୍ରଚାରଧର୍ମୀ ନଥିଲେ ।

ଥରେ କୌଣସି ସାହିତ୍ୟ ଗବେଷକଙ୍କ ଉପରେ, ମତ ଦେଇ ମୋତେ କହିଲେ ସେ କ'ଣ କାମ କରି ଦେଖାଇଛନ୍ତି ? ତାଙ୍କୁ ଯେଉଁମାନେ ଠିକ୍ ଭାବରେ ବୁଝିଛନ୍ତି ସେମାନେ ତାଙ୍କ ସହିତ ଜଡ଼ିତ ହୋଇଛନ୍ତି । ସେ କାହାଠାରୁ ଦୂରେଇ ଯାଇ ନାହାନ୍ତି, ତାଙ୍କଠାରୁ ଅନ୍ୟମାନେ ଦୂରେଇ ଯାଇଛନ୍ତି । ଓଡ଼ିଆ ସାହିତ୍ୟ ଇତିହାସର ଆଧୁନିକ ଜଗତରେ ସେ ଚିର ସ୍ମରଣୀୟ ହୋଇ ରହିବେ । ତାଙ୍କୁ ତାଙ୍କର ଏହି କାର୍ଯ୍ୟ ପାଇଁ ଅନ୍ୟମାନେ ଅଧିକ କିଛି କରି ଅତିକ୍ରମ କରି ପାରିଲେ ତାଙ୍କ ଆତ୍ମା ଶାନ୍ତି ଲାଭ କରିପାରିବି ।



ଅବସରପ୍ରାପ୍ତ ଆତ୍ମନ ଅଧିକାରୀ,
ମହାନଦୀ ବିହାର, କଟକ-୪

# ବେଦୀ ପୁରୁଷଙ୍କ ବିଦାୟ

## ଦୁର୍ଯ୍ୟୋଧନ ଦାସ

'ବେଦୀ' ହୋଇପାରେ ସାରସ୍ୱତ ସାଧନା ମଂଚ - ହୋଇପାରେ ରାଜନୈତିକ ବିଚାର ସ୍ଥଳ - ହୋଇପାରେ ଉପାସନା ପୀଠ - ଅଥବା ପ୍ରଥା ଓ ପରମ୍ପରା ସ୍ୱୀକୃତ ବିବାହ ମଣ୍ଡପ । କିନ୍ତୁ ସବୁଠାରେ ବେଦୀ ବରଣୀୟ ଓ ବନ୍ଦନୀୟ । ବେଦୀଟିଏ ନ ରହିଲେ ମିଳନ ଅପହଞ୍ଚ ହୋଇଯାଏ । ସଂପର୍କ ସଂଚାରିତ ହୋଇପାରେ ନାହିଁ । ମନୀଷା ମଂଥନ ମଂଥର ହୋଇଯାଏ । ପ୍ରଣୟ ପାଖୁଡ଼ାକୁ ସୁରଭି ଛୁଇଁପାରେ ନାହିଁ ।

ବେଦୀର ଏହି ମହାର୍ଘ ମହତ୍ୱକୁ ବୁଝିଥିଲେ ମୋର ଆରାଧ ଗୁରୁ ଭାବ ଓ ଭାଷାର ଭାଷ୍ୟକାର, ଭୋଗ ଓ ଭୂତିର ଭୂୟୋଦର୍ଶୀ ସ୍ରଷ୍ଟା ପ୍ରଫେସର ଡ଼. କୃଷ୍ଣଚରଣ ବେହେରା । ଶରୀରକୁ ସ୍ୱାତ୍ତ୍ୱିକ ପୂଜା ବେଦୀର ମାନ୍ୟତା ଦେବାରେ ସେ ହେଉଛନ୍ତି ଅନନ୍ୟ ପ୍ରଥମ କଥାକାର । "ଶରୀର ଆଦ୍ୟ ଖଳୁ ଧର୍ମ ସାଧନମ୍" ଉକ୍ତିର ପ୍ରକୃତ ବିଶ୍ଳେଷକ ହେଉଛନ୍ତି ପ୍ରଫେସର ବେହେରା ।

ଜୀବନରେ ଯେଉଁ ତିନୋଟି ସତ୍ତା ଅଛି ପ୍ରତ୍ୟେକ ଗୋଟିଏ ଗୋଟିଏ ପବିତ୍ରତାର ପ୍ରତୀକ । ଆଦ୍ୟ ଅଂଶଟି ଶରୀର ଯେଉଁଠାରେ ମିଳେ ଯୌବନର ଜୁଆର ଜରାର ଜଞ୍ଜାଳ ଏବଂ ବାର୍ଦ୍ଧକ୍ୟର ବୈକଲ୍ୟ । ଶରୀର ଦିଏ ରୂପର ବର୍ଣ୍ଣୋତ୍ସବ, ଆକର୍ଷଣର ଆଶୀର୍ବାଦ ଏବଂ ବଂଶ ରକ୍ଷା ଲାଗି ସଂଭୋଗର ଅଭିନନ୍ଦନ । ଦ୍ୱିତୀୟ ଅଂଶଟି ମନ - ସମସ୍ତ କାର୍ଯ୍ୟ କାରଣର ସୂତ୍ରଧର । ଇନ୍ଦ୍ରିୟକୁ ଘୋଟକ କରି ଦକ୍ଷ ସାରଥି ରୂପରେ ବିବେକର ଲଗାମ ଧରି ସଂଯମର ଚାବୁକ ସାହାଯ୍ୟରେ ଚଳାଏ ଦେହର ନନ୍ଦିଘୋଷ । ପ୍ରକୃତରେ ସେ ଦାରୁକ । ସେ ଜାଣେ କେଉଁଠି ଅଛି ପ୍ରେମର ପ୍ରସ୍ରବଣ, ବିଶ୍ୱାସର ବକୁଳ ବନ, ତ୍ୟାଗର ସୁନ୍ଦର ତଟ ଏବଂ ନିଷ୍ଠାର ନୀଳ ନୀଳ ପାହାଡ଼ । ସେ ବି ଜାଣିଛି ଘୃଣାର ଘଡ଼ଘଡ଼ି, ଅବିଶ୍ୱାସର ବଜ୍ରପାତ ଏବଂ ଅସହିଷ୍ଣୁତାର ଝଡ଼ । ବୁଦ୍ଧି ଓ ଜ୍ଞାନର ପ୍ରୟୋଗରେ ସେ ନେଇଯାଏ ଜୀବନକୁ ଏପରି ଏକ ତୀର୍ଥଭୂମିକୁ

ଯେଉଁଠାରେ ନଥାଏ ଅବସୋସର ଯନ୍ତ୍ରଣା । ଅହଂକାରର ଅସଂତୋଷ । ତୃତୀୟ ଅଂଶ ଆତ୍ମା ଯାହାକୁ ମହାରଥୀ କରି ମନ ଘେନିଯାଏ ତୃତୀୟ ତୀର୍ଥକୁ । ସେ ଅନାଦି ଅନନ୍ତର ପ୍ରତିଭୂ । ଅସରନ୍ତି ଆନନ୍ଦ ଅନୁଭବର ଆକର ।

ଶରୀର ଗଙ୍ଗା ପରି ପବିତ୍ର – ମନ ଯମୁନା ପରି ଛଳ ଛଳ ପ୍ରୀତିମୟ – ଆତ୍ମା ଅଦୃଶ୍ୟ ସରସ୍ୱତୀ ସୁଷମାରେ ଚିନ୍ମୟ । ତେଣୁ ଜ୍ଞାନ ଗୁରୁ ଜୀବନର ଆଦ୍ୟ ପୂଜାପୀଠ ଶରୀର ଉପରେ ତାଙ୍କର ବେଦୀ ଗଛଟି ରଚନା କରିଥିଲେ । ସେଥିପାଇଁ ଅଶ୍ଳୀଳତାର ଶର ଶଯ୍ୟାରେ ତାଙ୍କୁ ଶୁଆଇ ଥିଲେ ଈର୍ଷୁକ ବୀରଂମଣ୍ୟ କୌରବ ଏବଂ ପଣ୍ଡିତଂମଣ୍ୟ ଶକୁନିମାନେ । ଏ ଶରୀରର ପ୍ରତ୍ୟେକ କୋଷ, ତାର ପ୍ରତ୍ୟେକ ଇନ୍ଦ୍ରିୟ ଏବଂ ତନ୍ମାତ୍ର ଯେ ଆନନ୍ଦର ଆଧାର ଏହା ସେମାନେ ଏବେ ଉପଲବ୍ଧି କଲେଣି । କାବ୍ୟାନନ୍ଦ ହେଉ କି ମଦନାନନ୍ଦ ହେଉ କି ସର୍ଜନାନନ୍ଦ ହେଉ ତାର ମଂଚ ହେଉଛି ମନ । ତୃପ୍ତିର ଆରମ୍ଭ ଇନ୍ଦ୍ରିୟରେ ହୋଇ ଅତୀନ୍ଦ୍ରିୟ ସ୍ତରକୁ ଉନ୍ନିତ ହୁଏ । ଆଉ ସେତେବେଳେ ଜୀବନ ପାଲଟିଯାଏ ତ୍ରିବେଣୀ ସଂଗମ । ସତ୍ତାତ୍ରୟ ନିଜର ଗୁରୁତ୍ୱ ହରାଇ ହୋଇଆନ୍ତି ଏକାକାର । ସେଥିପାଇଁ ଗୀତାରେ କୁହାଯାଇଛି :

ସର୍ବେନ୍ଦ୍ରିୟ ଗୁଣାଭାସଂ ସର୍ବେନ୍ଦ୍ରିୟ ବିବର୍ଜିତମ୍
ଅସକ୍ତଂ ସର୍ବଭୃଚ୍ଚୈବ ନିର୍ଗୁଣଂ ଗୁଣଭୋକ୍ତୃ ଚ (ଗୀତା-୧୩/୧୫)

ଦେହ – ମନ – ଆତ୍ମାର ପ୍ରତ୍ୟେକ ଧାରାରେ ଯେଉଁ ଶ୍ୱାଶତ ପୂଜାର୍ହ ପ୍ରେରଣା ରହିଛି ତାର ସୂଚନା ଦେଇଥିଲେ କୃଷ୍ଣ ସାର୍ । ସେହି ବେଦୀ ପୁରୁଷ ଏବେ ବିଦାୟ ନେଇଛନ୍ତି । ତାଂକୁ ମୁଁ କଥା ଦେଇଥିଲି ଅନ୍ୟ ଏକ 'ବେଦୀ' ନାମରେ ତିନୋଟି ଗଛ ରଚନା ପାଇଁ । ଇତି ମଧ୍ୟରେ ଦୁଇଟି ପ୍ରକାଶ ପାଇପାରିଛି ' ପ୍ରେମ ପୃଥିବୀରେ' । ତୃତୀୟଟି ପ୍ରକାଶ ପାଇଲେ ଏହା ହେବ ବେଦୀ-ପୁରୁଷକୁ ମୋର ଗୁରୁ ଦକ୍ଷିଣା ।



ବିଜ୍ଞାନ ବିହାର, ଜଗନ୍ନାଥପୁର, ଭଦ୍ରକ

# ମୋ ଗୁରୁ, ମୋ ଭଗବାନ

**ମନ୍ଦାକିନୀ ଦାସ**

ଭଗବାନ ନିଜେ ଉଭା ହୋଇ ମଣିଷପାଇଁ କିଛି କରନ୍ତି ନାହିଁ- କିନ୍ତୁ କାହା ମାଧ୍ୟମରେ ସେ ମଣିଷକୁ ସାହାଯ୍ୟ କରନ୍ତି । ମୋ ଜୀବନରେ ଏ କଥାର ତାତ୍ପର୍ଯ୍ୟ ରହିଛି ।

୧୯୭୨-୭୩ ମସିହା କଥା । ସେତେବେଳେ ମୁଁ ଏମ୍.ପି.ସି. କଲେଜ ବାରିପଦାରେ ଆଇ.ଏସ୍‌ସି. ପଢ଼ା ସରିଥାଏ । ସବୁ ବାପାମା'ଙ୍କ ଇଚ୍ଛା ଥାଏ ଝିଅ ଡାକ୍ତରୀ ପଢ଼ିବ । କିନ୍ତୁ ଥାର୍ଡ ଡିଭିଜନରେ ପାଶ୍ କଲାପରେ ସେ ଇଚ୍ଛାର ପୂର୍ଣ୍ଣଚ୍ଛେଦ ପଡ଼ିଲା । ସାଇନ୍‌ସରୁ ଆର୍ଟସ୍‌କୁ ପରିବର୍ତ୍ତନ କରି ବି.ଏ.ରେ ନାମ ଲେଖାଇଲି । ଅର୍ଥନୀତି ଅନର୍ସ ନେଇ ପଢ଼ିବାପାଇଁ ଫର୍ମ ପକାଇଲି । ନାମ ମଧ୍ୟ ନୋଟିସ୍‌ବୋର୍ଡରେ ବାହାରିଲା । କିନ୍ତୁ କଲେଜରେ ପୂର୍ବରୁ ଆର୍ଟସ୍ ପଢୁଥିବା ଛାତ୍ରଛାତ୍ରୀ ଅଙ୍କସିଟ୍ ଥିବାହେତୁ ସେମାନେ ବଂଚିତ ହେବାରୁ ଷ୍ଟ୍ରାଇକ୍ କଲେ- ଆର୍ଟସ୍ ଦୁଇବର୍ଷ ପଢ଼ି ଇକୋନୋମିକ୍ସ ଅନର୍ସ ନପାଇବାରୁ ପ୍ରିନ୍‌ସିପାଲଙ୍କୁ ଘେରାଉ କଲେ । ପୂର୍ବ ନୋଟିସ୍ ଚିରାଗଲା । ପୁଣି ସିଲେକ୍‌ସନ୍ ହେଲା ଅନର୍ସ ପାଇଁ । କିନ୍ତୁ ସେଥିରେ ଅର୍ଥଶାସ୍ତ୍ର ଅନର୍ସରେ ମୋ ନାମ ନଥିଲା । ସବୁ ବିଷୟରେ ୧୬ଟା ମାତ୍ର ସିଟ୍ । ଫାଙ୍କା ଥାଏ କେବଳ ଓଡ଼ିଆ ଅନର୍ସ ଓ ଦର୍ଶନଶାସ୍ତ୍ରରେ । ସେ ସମୟରେ ସାର୍ ଭଦ୍ରଖରୁ ବଦଳିହୋଇ ଆମ କଲେଜକୁ ଆସିଥାନ୍ତି । ଓଡ଼ିଆ ନେଇଥିବା ମୋର ଜଣେ ସାଙ୍ଗ ଦ୍ୱାରା ଖବରଦେଲେ ମନ୍ଦାକିନୀ ଦାସ, ରୋଲନମ୍ବର ଅମୁକ- ତାକୁ କହିବ ଆଜି ମୋତେ ଦେଖାକରିବ । ସେ ସମୟରେ ସାର୍‌ଙ୍କୁ ତାଙ୍କ କମନ୍‌ରୁମ୍ ବାହାରେ ଦେଖାକରିବା ପିଲାଙ୍କ ମନରେ ଭୟ ଥିଲା । ଭାବିଲି କିଛିବି ସେମିତି ଭୁଲ୍ କରିନି- ସାର୍‌ଙ୍କୁ ଦେଖାନକରି ଘରକୁ ଚାଲିଗଲି । ତହିଁ ଆରଦିନ ଲେକଚର କମନ୍‌ରୁମ୍ ପିଅନକୁ ପଠାଇ ଲେଡିଜ୍ କମନ୍‌ରୁମ୍‌ରୁ ମୋତେ ଡକାଇ ଓଡ଼ିଆ ଅନର୍ସ ନେବାକୁ କହିଲେ । ମୁଁ କହିଲି, "ସାର୍ ମୁଁ ପାରିବି ନାହିଁ । ପୂର୍ବରୁ ସାଇନ୍‌ସ ଥିଲା । ଓଡ଼ିଆ ଅର୍ନସ୍ ପାଇଁ ଭୟ ଲାଗୁଛି ।" ସାର୍ ଅଭୟବାଣୀ

ଶୁଣାଇ ଆଶ୍ୱାସନା ଦେଲେ । "ସାଇନ୍‌ସରୁ ଆସିଥିବା ପିଲାମାନେ ହିଁ ଭଲ କରନ୍ତି । ଏ ବିଶ୍ୱାସ ମୋର ରହିଛି ।" ସାର୍ ମୋ'ଠାରୁ ନାସ୍ତିବାଣୀ ଶୁଣିବାକୁ ନାରାଜ । ଏଥିରୁ ସାର୍‌ଙ୍କୁ ନିବୃତ୍ତ କରିବାପାଇଁ ସାର୍‌ଙ୍କୁ କହିଲି, "ସାର୍ ବାପାଙ୍କୁ ପଚାରି କାଲି କହିବି ।" ବାପା ସେତେବେଳେ କେନ୍ଦୁଝରରେ ସରକାରୀ କାର୍ଯ୍ୟରେ ଥାଆନ୍ତି । ଏବେକାର ଭଳି ସେତେବେଳେ ଫୋନ୍ ବା ମୋବାଇଲ୍ ତ ନଥିଲା । ଭାବିଥିଲି ମିଛରେ ଏପରି କହିଦେଇ ସାରଙ୍କଠାରୁ ରକ୍ଷାପାଇବି । କିନ୍ତୁ ମୋର ଏ କଥାରେ ହଠାତ୍ ସେ ଟିକେ ରାଗିଯାଇ ମୋ ଉପରେ ଅଧିକାର ସାବ୍ୟସ୍ତ କରି ଅଭିଭାବକ ଢଙ୍ଗରେ କହିଲେ, "ତୁମେ ପାଠ ପଢ଼ିବ ନାଁ ତୁମ ବାପା ପାଠ ପଢ଼ିବେ; କାଲି ଅଫିସ୍ ଯାଇ ଓଡ଼ିଆ ଅନର୍ସରେ ନାମ ଲେଖାଇବ । ତୁମ ନାଁ ମୁଁ ସିଲେକ୍‌ସନ୍ ଲିଷ୍ଟରେ ଅଫିସ୍‌କୁ ପଠାଇ ଦେଇଛି ।" ଏ ଆଦେଶ ଦେଇ ସେ କମନରୁମ୍ ଭିତରକୁ ଚାଲିଗଲେ ।

ସତକଥା କହିବାକୁ ଗଲେ ସେତେବେଳେ ଓଡ଼ିଆ ପଢ଼ିବାରେ ମୋର ସ୍ପୃହା ନଥିଲା । ତେଣୁ ସାର୍‌ଙ୍କ କଥାକୁ ଗୁରୁତ୍ୱ ନଦେଇ ଘରକୁ ଚାଲିଗଲି । ଭାବିଲି ସାର୍ ମୋତେ ଜାଣିନାହାନ୍ତି । ନୂଆ ହୋଇ କଲେଜକୁ ଆସିଛନ୍ତି । ତାଙ୍କର ଅନର୍ସ ସିଟ୍ ୨ଟା ଖାଲି ଅଛି ବୋଲି ମୋତେ ବାଧ କରୁଛନ୍ତି । ସତରେ ଯେମିତି ଏଥିରେ ସାର୍‌ଙ୍କର କ'ଣ ସ୍ୱାର୍ଥ ଥିଲା । ସେତେବେଳେ ମୁଁ ମଧ୍ୟ ଜିଦ୍‌ଖୋର ଥିଲି । ତହିଁ ଆରଦିନ ଶେଷ ତାରିଖ ଅନର୍ସ ନାମ ଲେଖାଇବାର । ସେଦିନ ଏଗାରଟା ସମୟର ଇଂରାଜୀ କ୍ଲାସ୍ କରି ଘରକୁ ଚାଲିଗଲି । ଭାବିଲି, କଲେଜରେ ରହିଲେ ସିନା ଡାକି ପଠାଇବେ ଓ ନାମ ଲେଖାଇବାକୁ ବଧ୍ୟ କରିବେ । ମୁଁ କିନ୍ତୁ ଯାହା ଭାବିଲି ଭଗବାନଙ୍କ ଉଦ୍ଦେଶ୍ୟ ଭିନ୍ନ ଥିଲା । ତହିଁଆରଦିନ କଲେଜ ଗଲାବେଳକୁ ଦେଖାହେଲା ଓଡ଼ିଆ ଅନର୍ସ ନେଇଥିବା ଝିଅଟି ସହିତ । ସେ ପୁଣି କହିଲା; "ସାର୍ ତୁମକୁ ଆଜି ଅନର୍ସ କ୍ଲାସ୍ କରିବାକୁ କହିଛନ୍ତି । ଅନର୍ସରେ ତୁମର ନାମ ଲେଖା ହୋଇଯାଇଛି ।" ଆଶ୍ଚର୍ଯ୍ୟ ଲାଗିଲା କିଏ ମୋ' ନାଁ ଲେଖାଇଲେ । ବାପା ତ ନୁହନ୍ତି କି ମୁଁ ମଧ୍ୟ ନୁହେ । କିରାଣୀକୁ ଯାଇ ପଚାରିଲି ସେ କହିଲେ, "କୃଷ୍ଣଚରଣ ବେହେରା ନାମଲେଖାର ଶେଷ ସମୟ ପୂର୍ବରୁ ଆସି ଦେଖିଲେ ତୁମେ ନାମ ଲେଖାଇ ନାହଁ । ସେ ନିଜେ ପଇସା ଦେଇ ତୁମ ନାମ ଲେଖାଇଛନ୍ତି ।" ପରେ ଏକଥା ହଜାରେ ଥର ଭାବିଛି କେତେ ତାତ୍ପର୍ଯ୍ୟପୂର୍ଣ୍ଣ ବିଷୟଟି ଏହା ମୋ ଜୀବନରେ ଥିଲା । ଭଗବାନ ଯଦି ତାଙ୍କ ମାଧ୍ୟମରେ ମୋ ଜୀବନର ଏ ନିଷ୍ପତ୍ତି ନେଇ ନଥାନ୍ତେ ତେବେ ମୋ ପରିବାରର ପରିସ୍ଥିତି ଭିନ୍ନ ରୂପ ନେଇଥାନ୍ତା । ସେତେବେଳେ କ'ଣ ମୋ ଭବିଷ୍ୟ ମୁଁ ଦେଖି

ଜାଣିଥିଲି । ମୁଁ ଅଧିକ ପଢ଼ିବି, ପିଏଚ୍.ଡି କରିବି, ପି.ଏସ୍.ସି ପାଇ ଅଧ୍ୟାପିକା ହେବି । ଆଉ ବାପା ଶୀଘ୍ର ଚାଲିଯିବେ ଘରର ସାନଭାଇଭଉଣୀମାନଙ୍କର ଦାୟିତ୍ୱ ମୁଁ ବଡ଼ ଝିଅ ଭାବରେ ବହନ କରିବାକୁ ପଡ଼ିବ ବୋଲି । କିନ୍ତୁ ସାର୍, ମୋର ଭଗବାନ ହୋଇ ମୋ ଭବିଷ୍ୟତ ଦେଖିପାରି ରାସ୍ତା କଢ଼େଇ ନେଇଥିଲେ ମୋ ଜୀବନର ।

ସାର୍‌ଙ୍କ ଆଦେଶରେ ସବୁଦିନ କ୍ଲାସ୍ କଲି । ସାର୍ ନିଜେ ଲାଇବ୍ରେରୀରୁ 'ଓଡ଼ିଆ ସାହିତ୍ୟର ଇତିହାସ' ବହି ବିଭିନ୍ନ ଲେଖକଙ୍କର ବାଛିବାଛି ଦିଅନ୍ତି । କହନ୍ତି, 'ତୁମେ ଆଗ ଏହାକୁ ପଢ଼, ତା'ପରେ ମୁଁ ପଢ଼ାଇ ସାରିଲେ ନୋଟ୍ କରିବ । ବି.ଏ. ଫାଇନାଲ୍ ପରୀକ୍ଷା ବର୍ଷ ୧୯୭୫ ଟେଷ୍ଟ ପରୀକ୍ଷା ସରିଲେ କ୍ଲାସ୍ ବନ୍ଦ ହେବା ନିୟମ ଥିଲା । କୋର୍ସ ସବୁ ସରିନଥିଲା । ସାର୍ ସବୁ ପିଲାଙ୍କୁ ଡାକି କଲେଜ ସମୟ ପରେ ତାଙ୍କ ଘରେ ଆମକୁ ପାଠ ପଢ଼ାନ୍ତି । ପ୍ରାୟ ୨୦, ୨୫ ଦିନ କାଳ ସବୁଦିନ ଦେଢ଼ଘଣ୍ଟାରୁ ଊର୍ଦ୍ଧ୍ୱ ସମୟ ଆମପାଇଁ ଦିଅନ୍ତି । ଏବେ ତ ଏପରି ଜଣେ ଗୁରୁ ମିଳିବା ଦୁର୍ଲ୍ଲଭ । ବି.ଏ. ଅନର୍ସ ନେଇ ପାଶ୍ କରିବାପରେ ଏମ୍.ଏ. ପଠାଇବାକୁ ବାପାଙ୍କ ଆର୍ଥିକ ସାମର୍ଥ୍ୟ ନଥିବା ହେତୁ ବାପା ରାଜି ନଥିଲେ । କାରଣ ମୋ ତଳ ଦୁଇଭାଇ ବାହାରେ ପଢୁଥିଲେ । ସାର୍ ବାରିପଦା ରହଣି କାଳରେ ବାପାଙ୍କ ସହ ପରିଚିତ ହୋଇ ଯାଇଥିଲେ, ସେ ବାପାଙ୍କୁ ବୁଝାଇଲେ । ସାର୍‌ଙ୍କ ପ୍ରେରଣା ଓ ମୋ ମାମୁଙ୍କ ଆର୍ଥିକ ସହାୟତାରେ ଏମ୍.ଏ. ପଢ଼ିଲି । ସେତେବେଳକୁ ସାର୍‌ଙ୍କର ବାରିପଦାରୁ ରେଭେନ୍‌ସାକୁ ବଦଳି ହୋଇଯାଇଥିଲା । ଏହା ଭଗବାନଙ୍କ ଆଶୀର୍ବାଦ ଭାବି ବାଣୀବିହାର ପରିବର୍ତ୍ତେ ରେଭେନ୍‌ସାରେ ପଢ଼ିଲି । ଏମ୍.ଏ. ପରେ ଏମ୍.ଫିଲ୍ କଲି ପୁଣି ସାର୍‌ଙ୍କ ତତ୍ତ୍ୱାବଧାନରେ ଗବେଷଣା ଆରମ୍ଭ କଲି ।

ପ୍ରତ୍ୟେକଙ୍କ ଜୀବନ ପୁସ୍ତକରେ ତିନିଟି ଅଧ୍ୟାୟରୁ ଦୁଇଟି ଅଧ୍ୟାୟ ପୂର୍ବରୁ ଲେଖା ସରିଥାଏ । ପ୍ରଥମ ଅଧ୍ୟାୟ ଜନ୍ମ ତୃତୀୟ ଅଧ୍ୟାୟ ମୃତ୍ୟୁ । କିନ୍ତୁ ମଧ୍ୟବର୍ତ୍ତୀ ଅଧ୍ୟାୟ ହେଉଛି କର୍ମ । କର୍ମ କିପରି ମହନୀୟ କହି ଗଢ଼ା ଯାଇପାରେ ସେ ରାସ୍ତା ମୋତେ ଦେଖାଇଥିଲେ ସାର୍ । ମୋର ଗଳ୍ପ ସଂକଳନଟିଏ କି ଗବେଷଣାନିବନ୍ଧ ପୁସ୍ତକ ରୂପେ ଦେଖି ମୋ'ଠାରୁ ସେ ଅଧିକ ଖୁସି ହୋଇଥିଲେ ।

ଗୁରୁ ଆଉ କାହାକୁ କହନ୍ତି ? ଯିଏ ଅନ୍ଧାରରେ ଆଲୋକ ଦେଖାନ୍ତି ଦ୍ୱନ୍ଦ୍ୱମନକୁ ସମାଧାନର ଥାନ ଦେଖାଇଦିଅନ୍ତି । ବାପାଙ୍କ ମୃତ୍ୟୁ ପରେ ମୋ ପିତାଙ୍କ ସ୍ଥାନ ମୁଁ ତାଙ୍କୁ ଦେଇଛି । ମୋ ପରିବାରର ଶୁଭେଚ୍ଛୁ ହୋଇ ସବୁବେଳେ ମୋ ବୋଉ କଥା ଭଲମନ୍ଦ ବୁଝନ୍ତି । ଅନେକ ସ୍ୱୀକୃତି, ପ୍ରଶଂସା, ପୁରସ୍କାରରେ ଭୂଷିତ ହେବାପରେ

ମଧ୍ୟ ସେ ଥିଲେ ଜଣେ ସାଧାରଣ, ସରଳ, ନିରାଡମ୍ବର ମଣିଷ । ସ୍ୱାଧୀନ ଭାବନା, ସ୍ୱାଧୀନ ଚେତନା ତାଙ୍କ ସାହିତ୍ୟର ମାନଦଣ୍ଡ ଥିଲା ।

ସମାଜର ହେୟ, ଅବହେଳିତ, ଦଳିତ ଜୀବନକୁ ସେ ଚିହ୍ନିଥିଲେ । ତାହାହିଁ ଥିଲା ତାଙ୍କ ସାଧନାର ଭିତ୍ତିଭୂମି । ମୁଁ ତାଙ୍କୁ ଦୀର୍ଘ ୪୫ବର୍ଷ ଧରି ଦେଖିଆସିଛି ମଶିଣାଟି ଉପରେ ବସି ଗପ ଲେଖନ୍ତୁ ବା ସମାଲୋଚନା ଲେଖନ୍ତୁ ବା ଏଷଣାପାଇଁ ଲେଖନ୍ତୁ; ସେ ମଶିଣାଟି ତାଙ୍କ ପାଇଁ ତୀର୍ଥକ୍ଷେତ୍ର ପାଲଟି ଯାଇଥିଲା । ଶେଷରେ ମଶିଣା ଗଲା ତାଙ୍କ ସହ ମଶାଣି ଭୂଇଁକୁ । ସଦାସର୍ବଦା ଏକ ସକାରାତ୍ମକ ଦୃଷ୍ଟିଭଙ୍ଗୀରେ ବଂଚୁଥିଲେ । ବଡ଼ ବଡ଼ ଦୁଃଖ ଓ ସୁଖରେ ସେ ଥିଲେ ଅବିଚଳିତ । ପିତୃସୁଲଭ ଭଲ ପାଇବାର ସେ ଥିଲେ ଅସରନ୍ତି ଭଣ୍ଡାର । ସେଥିପାଇଁ ଶାନ୍ତିନିକେତନରେ ଫେଲୋସିପ୍ ମିଳିବା କଥା ଆନନ୍ଦରେ ସାର୍‌ଙ୍କୁ ଜଣାଇବାରୁ ସେ ସେତେବେଳେ ଅଭିଭାବକ ସାଜି କହିଥିଲେ ତୁମପାଇଁ ତାହା ଅନୁକୂଳ ହେବନାହିଁ । ତୁମେ ସେଠାକୁ ଯାଅନାହିଁ । ପରବର୍ତ୍ତୀ ସମୟରେ ଏକଥାର ରହସ୍ୟ ହୃଦୟଙ୍ଗମ କରିଥିଲି । ତା'ପରେ ଅବଶ୍ୟ ପି.ଏସ୍.ସି ପାଇଲି ।

ସାର୍ ତାଙ୍କ ସାରସ୍ୱତ ପୃଥିବୀରେ ମଗ୍ନରହି ଅନେକ କଥା ଘରର ବୁଝୁ ନଥିଲେ । ସେଥିପାଇଁ ତାଙ୍କ ସ୍ତ୍ରୀ ଦୁଃଖ କରୁଥିଲେ । ସାର୍ ଚାକିରିରୁ ଅବସର ନେବାପରେ ମଧ୍ୟ ରହିବାପାଇଁ ଘରଟିଏ କରିନଥିଲେ । ଭଡ଼ାଘରେ ରହୁଥିଲେ । ତାଙ୍କ ଘରେ ଛାତ୍ରଛାତ୍ରୀଙ୍କ ଅବାଧ ପ୍ରବେଶ ଥିଲା । ମୁଁ ସ୍ୱଚକ୍ଷୁରେ ଦେଖିଛି ରେଭେନ୍‌ସାରେ ଥିବାବେଳେ ପ୍ରଫେସରପଡ଼ା ଭଡ଼ାଘରେ ଏମ୍.ଏ. ପଢ଼ିବାପାଇଁ ହଷ୍ଟେଲରେ ସିଟ୍ ନପାଇ ବାରିପଦାର ସାଙ୍ଗଟି ବେଶ୍ କିଛିମାସ ତାଙ୍କ ଘରେ ରହି ପଢୁଥିଲା । ଅନେକ ଛାତ୍ରଛାତ୍ରୀ ତାଙ୍କ ଦ୍ୱାରା ଉପକୃତ ହୋଇଛନ୍ତି । ଗୁରୁ-ଶିଷ୍ୟ ପରମ୍ପରା କ'ଣ ସାରଙ୍କ ଘରୁ ହିଁ ମୁଁ ଶିଖିଛି- ଗୁରୁକୁଳ ଯିବାର ଆବଶ୍ୟକତା ନାହିଁ । ସବୁବେଳେ ଛାତ୍ରଛାତ୍ରୀ ଅତିଥି ଅଭ୍ୟାଗତଙ୍କ ଯିବାଆସିବା ଲାଗୁଥିଲା ତାଙ୍କ ଘରକୁ । ତାଙ୍କ ସ୍ତ୍ରୀ ମଧ୍ୟ ସାର୍‌ଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ସମସ୍ତଙ୍କୁ ଚା' ଜଳଖିଆରେ ଆପ୍ୟାୟିତ କରୁଥିଲେ । ତା'ପରେ ତାଙ୍କ ପୁଅ-ବୋହୂ ମଧ୍ୟ ସେ ଭୂମିକାକୁ ଏପର୍ଯ୍ୟନ୍ତ ତୁଲାଇ ଆସିଛନ୍ତି ।

ସାରଙ୍କର ଅନେକ କୃତି, କିନ୍ତୁ ତାଙ୍କ ସଂପର୍କରେ କେହି ଛାତ୍ର ଗବେଷଣା କରି ନଥିବେ ଦୀର୍ଘବର୍ଷ ପର୍ଯ୍ୟନ୍ତ । ଏ କଥା ଭାବି ମୁଁ ଢେଙ୍କାନାଳ କଲେଜରେ ଥିବାବେଳେ କମନ୍‌ରୁମ୍‌ରେ ଦୁଃଖ ପ୍ରକାଶ କରିଥିଲି । ସୌଭାଗ୍ୟକୁ ସେହି କଲେଜର ଅଧ୍ୟାପକ ଥିବା ଗୋପାଳକୃଷ୍ଣ ଆଚାର୍ଯ୍ୟ ଏଥିରେ ଇଚ୍ଛା ପ୍ରକାଶ କଲା । ସେ ସାର୍‌ଙ୍କ

ସମାଲୋଚନା ସାହିତ୍ୟ ସଂପର୍କରେ ଗବେଷଣା ନିବନ୍ଧ ପ୍ରସ୍ତୁତ କଲା । ମୁଁ ତାର ତତ୍ତ୍ୱାବଧାରିକା ଥିଲି । ୨୦୧୫ରେ ପିଏଚ୍.ଡି. ପାଇଲା ମୁଁ ଖୁବ୍ ଆନନ୍ଦିତ ହେଲି ଏଇଥିପାଇଁ ଯେ ସାର୍ ଜୀବିତ ଅବସ୍ଥାରେ ଏ କାମଟି ଦେଖିଲେ । କିନ୍ତୁ ଏବେ ଦୁଃଖ ଲାଗୁଛି ତା'ର ପୁସ୍ତକରୂପ ଦେଖିବା ପୂର୍ବରୁ ସେ ଚିରନିଦ୍ରାରେ ଶୋଇ ପଡ଼ିଲେ ।

ଆଜି ମୁଁ ଯାହାକିଛି ସାର୍‌ଙ୍କ ପାଇଁ । ଗୁରୁଋଣ ଜନ୍ମଜନ୍ମାନ୍ତରରେ ଶୁଝି ପାରିବିନାହିଁ । ସେଥିପାଇଁ ମୋର ବନ୍ଧୁ ସୁଧୀର ବେହେରା ଓ ମୁଁ ମିଶି ଛୋଟିଆ ପ୍ରୟାସଟିଏ ୨୦୧୪ ମସିହାରେ କରିଥିଲୁ । ସେଥିପାଇଁ କିଛି ପ୍ରତିରୋଧର ସମ୍ମୁଖୀନ ହୋଇଥିଲୁ । କିଏ ପ୍ରକାଶ୍ୟ ଭାବରେ ବିରୋଧ କଲା ତ କିଏ ପଛରେ ପ୍ରତିବାଦ କଲା । ସାର୍ ବଞ୍ଚିଥିବା ଅବସ୍ଥାରେ "କୃଷ୍ଣଚରଣ କାବ୍ୟପୁରୁଷ ପୁରସ୍କାର" ଏହାକୁ ନେଇ ପ୍ରଶ୍ନ ଉଠିଲା । ଯା'ହେଉ ତାହା କାର୍ଯ୍ୟସିଦ୍ଧ ହେଲା । ସେଦିନ ସାର୍ ଖୁସି ହେଲେ କି ନା ମୁଁ ଜାଣେନା, ଏବେ କିନ୍ତୁ ସେ ସବୁ ମୂଲ୍ୟହୀନ- ଅସାର ।

ଶେଷରେ ଦୀର୍ଘ ଏକୋଇଶ ଦିନ ଆପୋଲ ହସ୍‌ପିଟାଲରେ ରହି କଷ୍ଟ, ଯନ୍ତ୍ରଣା ପାଉଥିବାର ମୁଁ ସବୁଦିନ ପ୍ରାୟ ଦେଖିଛି କିନ୍ତୁ ଶେଷ ସମୟ ପର୍ଯ୍ୟନ୍ତ ସେ ମାନସିକ ସ୍ତରରେ ଥିଲେ ସଚେତନ । ଶରୀରର ଅସୁସ୍ଥତା ତାଙ୍କ ମାନସିକ କ୍ଷମତାକୁ କେବେ ଭାଙ୍ଗି ପାରିନଥିଲା । ସେଇଥିପାଇଁ ବୋଧହୁଏ ତାଙ୍କପରି ଜଣେ କର୍ମତତ୍ପର ମଣିଷ 'ଏଷଣା' ଛପା ହେଉଛି ଶୁଣି ଜୀବନର ଅନ୍ତିମ ସମୟରେ ଶାନ୍ତିରେ ଦୀର୍ଘ 'ହୁଁ'ଟିଏରେ ସର୍ବନିୟନ୍ତାଙ୍କ ନିକଟରେ ନିଜକୁ ସମର୍ପି ଦେଇ ଚିରନିଦ୍ରାରେ ଶୋଇପଡ଼ିଲେ । ସେ ଉପରେ ଥାଇ ପ୍ରେରଣା ଦିଅନ୍ତୁ ଅନ୍ୟମାନଙ୍କୁ ତାଙ୍କ ପରି କର୍ମନିଷ୍ଠ ହେବାକୁ । 'ଗବେଷଣା ପରିଷଦକୁ', 'ଏଷଣା'କୁ ଆଗେଇ ନେବାକୁ । ତାଙ୍କ ପରି ଜଣେ ଗୁରୁଙ୍କ ଦ୍ୱାରା ମୋର ଓଡ଼ିଆ ଅନର୍ସର ଖଡ଼ିଛୁଆଁ କଥା ସେ ଭୁଲି ଯାଇଥିଲେ- ଏହା ତାଙ୍କ ମହତପଣିଆ, ତାଙ୍କର ଉଦାରତା । ସେ ମୋ'ପାଇଁ କେବଳ ମୋ ଗୁରୁ ନୁହନ୍ତି, ମୋ ପାଇଁ ସେ ଭଗବାନ୍ । ତାଙ୍କ ପଦତଳେ ମୋର ଶତକୋଟି ପ୍ରଣାମ ।



ପ୍ରଶାନ୍ତି ବିହାର, ଭୁବନେଶ୍ୱର

# ସାହିତ୍ୟର ମଗ୍ନ ତପସ୍ୱୀ

## ସଂଯୁକ୍ତା ମହାନ୍ତି

୧୯୭୫ ମସିହା। ମୁଁ ଫୋର୍ଥ ଇୟର ବୋଟାନି ଅନର୍ସର ଛାତ୍ରୀ। ଆମ ଅନର୍ସ କ୍ଲାସକୁ ଗୋଟିଏ ନୂଆ ଝିଅ ଆସିଥାଏ। ଆମେ ଥିଲୁ ଦୁଇଜଣ। ଗୀତାଞ୍ଜଳି ଆଚାର୍ଯ୍ୟ ଆଉ ମୁଁ। ଗୀତା ଲାଗିପଡ଼ିଥାଏ ମେଡ଼ିକାଲ ଏଣ୍ଟ୍ରାନ୍ସ ପାଇଁ। କ୍ଲାସ୍ କମ୍ କରେ। ମୁଁ ଏକୁଟିଆ ହୋଇଯାଉଥାଏ। ଏଇ ସମୟରେ ଯେଉଁ ଝିଅଟି ପହଂଚେ ସେ କହେ ମୁଁ ବାରିପଦା କଲେଜରୁ ଆସିଛି। ମୋ ବାପାଙ୍କ ଟ୍ରାନ୍ସଫର ରେଭେନ୍ସା କଲେଜକୁ ହେଲା। ମୁଁ ଡକ୍ଟର କୃଷ୍ଣଚରଣ ବେହେରାଙ୍କ ଝିଅ। ଓଡ଼ିଆ ଗିଡ଼ର। ମୋ ନାଁ ମଧୁଶ୍ରୀ ବେହେରା, ଡାକନ୍ତି- ଚୁନି।

ମୋ ଭିତରେ ଗୋଟିଏ ଚମକ ଆସିଲା ସେଦିନ। ଓଡ଼ିଆ ବିଭାଗ ମାନେ ସାହିତ୍ୟ। ଓଃ ! କି ସୁନ୍ଦର। ମୋ ଲେଖା ଅନ୍ତତଃ ଦେଖେଇ ପାରିବି। ଆଉ ବହୁତ ବହି ମିଳିବ ପଢ଼ିବାକୁ।

ଏବେ ଅନର୍ସ କ୍ଲାସ୍‌ରେ ଆମେ ତିନିଜଣ। ପରେ ଗୀତା ମେଡ଼ିକାଲ ପାଇ ଚାଲିଗଲା। ଆମେ ରହିଲୁ ସେହି ଦୁଇଜଣ। କଲେଜ କ୍ୟାମ୍ପସ୍‌ରେ ସେମାନେ କ୍ୱାର୍ଟର ପାଇଲେ। ଚୁନିଙ୍କ ଘରକୁ ଯାଏ ତ ସତରେ ବହିର ବିଶାଳ ଭଣ୍ଡାର ଲାଇବ୍ରେରି ପରି। ମୁଁ ସେଦିନ ଉଲ୍ଲସିତ ହେଲି। ମୋର ଲେଖିକା ଜୀବନର ଆରମ୍ଭ ନହେଉଣୁ, ମାତ୍ର କେତେଟା କବିତା ଲେଖୁଲେଖୁ ମୁଁ ଯେପରି ସେଦିନ ଅନୁଭବ କରିଥିଲି କେହି ଜଣେ ସାହିତ୍ୟ ସାଗରର ଅଥଳ ଜଳରେ ମୋ ପରି ଏକ କ୍ଷୁଦ୍ର ଏଇମାତ୍ର ସାହିତ୍ୟ ଆରମ୍ଭ କରୁଥିବା ମଣିଷଟିଏ ସହାୟକ ଏ। ସେଦିନ ଟିନ୍ ଏଜ୍‌ରେ ଥାଇ ବିଜ୍ଞାନର ଛାତ୍ରୀ ଥାଇ ମୁଁ ସାହିତ୍ୟର ଅଥଳ ପାରାବାରରେ ମଗ୍ନ ଥିଲି। ଆଉ ସାହା ଭରସା ପାଇଗଲି ବୋଲି ଭାବିନେଲି ମଉସାଙ୍କୁ। ହେଲେ ପରବର୍ତ୍ତୀ ସମୟରେ ମୁଁ କ'ଣ ଲେଖିଲି, କ'ଣ ବାହାରିଲା, କେମିତି ବାହାରିଲା ସେସବୁ ତା ଗତିରେ ଚାଲିଲା।

ମଉସାଙ୍କ ଗମ୍ଭୀର ବ୍ୟକ୍ତିତ୍ୱ ତଳକୁ ମୁହଁ ପୋତି କଲେଜ ଯିବା, ଏସବୁ ଭିତରେ ମୁଁ ସବୁବେଳେ ଦୂରରେ ରହିଲି । ଆଉ ଘରକୁ ଗଲେ ବି କେବଳ ଝିଅର ସାଂଗ ହିସାବରେ ଯାଏ । ପରବର୍ତ୍ତୀ ସମୟରେ ମଉସା ଆସି ପ୍ରଫେସରପଡ଼ାରେ ରହିଲେ । ନାରଣ ମିଶ୍ର ଲେନ୍ ଯେଉଁଠି ଆରମ୍ଭ ହୋଇଛି । ମଝିରେ ନାଳଟାଏ । ଆରପଟେ ଆମ ଘର ।

ସେ ଘରେ ବି ସେହି ଗଦା ଗଦା ବହି । ଗୋଟାଏ ବହି ଭର୍ତି ଘରେ ମଉସା ତଳେ ବସି ପଢୁଥିବେ । ଲେଖୁଥିବେ । କେତେ ଗବେଷକ ଆସନ୍ତି । କେତେ ବଡ଼ ବଡ଼ ସାହିତ୍ୟିକଙ୍କୁ ଦେଖିବାର ସୁଯୋଗ ମିଳେ । ହେଲେ କଥା କହିପାରେନା । ମାଉସୀ ଥା'ନ୍ତି ପ୍ରଚଣ୍ଡ ସାହିତ୍ୟ ପ୍ରେମୀ । ଭୋରାସିଅସ୍ ରିଡ଼ର । ସେ ମୋ ସାଙ୍ଗରେ ଘଂଟା ଘଂଟା ଧରି ଆଲୋଚନା କରନ୍ତି । ମୁଁ ଚୁନି ସାଙ୍ଗରେ ସାଧାରଣ କଥା ବା କେତେ ସମୟ ହେବି ? ମାଉସୀଙ୍କ ସାଙ୍ଗରେ ବେଶି କଥା ହୁଏ । ମାଉସୀ ସ୍ପଷ୍ଟବାଦୀ, ତାଙ୍କ କ୍ରିଟିସିଜିମ୍ ବାଟୁଲିଖାଡ଼ା ପରି ତୀବ୍ରବେଗରେ ଯାଇ ଭେଦକରେ । ସାନପୁଅ ଶୁଭକାନ୍ତ(ଟୁଟୁ) କଲେଜବେଳରୁ ଭଲ କବିତା ଲେଖୁଥିଲା । ସେ ଖୁବ୍ ମିଶେ, ଆଲୋଚନା କରେ । ମଉସା ଘରେ ବସି ଅହରହ ପଢ଼ନ୍ତି । କେବଳ ନ୍ୟୁଜ୍ ଶୁଣିବାକୁ ରେଡ଼ିଓରୁ ଛ'ଟା କୋଡ଼ିଏରେ ଡାଇନିଂ ଟେବୁଲ ପାଖକୁ ଆସନ୍ତି । ସେଠି ମାଉସୀ ବସିଥାନ୍ତି । ସେତିକି ବେଳିଆ ମୁଁ ତାଙ୍କୁ ଦେଖିବାକୁ ପାଏ । ତାଙ୍କ ସହ କେତେ ସୁଖଦୁଃଖର ମୁହୂର୍ତ୍ତ କଟିଛି । ତା ବର୍ଣ୍ଣନାଗୀତ । ଏଇ କ୍ଷୁଦ୍ର ପରିସରରେ ଲେଖିବା ସମ୍ଭବ ନୁହେଁ । କିନ୍ତୁ ସେହି ନିରବିତ ମଣିଷଟି, ତଳକୁ ମୁହଁ ପୋତି ଚଳୁଥିବା ମଣିଷଟି ସମସ୍ତ ଗମ୍ଭୀରତାକୁ ଭାଙ୍ଗି ହସି ଉଠନ୍ତି । ନାଳ ଆରପାଖରେ ଥାଇ ବି ଡାକନ୍ତି ସଂଯୁକ୍ତା । ତମ ଗପ ଗଳ୍ପଝରରେ ବାହାରିଛି । ସେ ବର୍ଷ ନଭେମ୍ବର-ଡିସେମ୍ବର ସଂଖ୍ୟା ୧୯୭୯ରେ ମୋର ଗପ ବାହାରିଥାଏ । ମୁଁ ଜାଣିନଥାଏ, କିନ୍ତୁ ମଉସା ଜାଣିଥାନ୍ତି । ସେ ଗପ ପଢ଼ି ଏତେ ଖୁସି ହେଲେ ଯେ କଲେଜ ଯିବା ବାଟରେ ନାଳ ଆରପାଖୁ ମୋତେ ଡାକି କହିଲେ । ସେଦିନ ମୁଁ ଉଲ୍ଲସିତ ଆଉ ଆତ୍ମମଗ୍ନ ।

କିଛି ବର୍ଷ ପରେ ସେ ସେହି ଘରଟା ଛାଡ଼ି ଦେଇ ଆସି ରହିଲେ ଆମେ ଯେଉଁ ପଟେ ରହୁଥିଲୁ । ମାଲିକ ଏକା । ବିରାଟ୍ କ୍ୟାମ୍ପସ । ମାଉସୀଙ୍କ ସାଙ୍ଗରେ ଏବେ ସିନେମା, ସାହିତ୍ୟ ଆଲୋଚନା ବଢ଼ିଗଲା । ଚୁନି ବହୁତ ବହିପଢ଼େ, ଲେଖେନି । ମଉସା ଗାଳି କରନ୍ତି ତାକୁ । ମୁଁ ସେତେବେଳେ କବିତା ଲେଖାଛାଡ଼ି ଗୋଟିଏ

ଗୋଟିଏ ଗପ ଲେଖି ଛାଡ଼େ । ଆଉ ବାହାରେ । ଚାକିରି ଚାପରେ ବ୍ୟସ୍ତ ରୁହେ । ଓଡ଼ିଶା ବାହାରକୁ ଯାଏ । ଚୁନି ଭଦ୍ରକ ଚାଲିଯାଏ । ୨୦୦୬ କି ୨୦୦୭ ମସିହା ହେବ । ତିନିଟି ଗଳ୍ପ ସଂକଳନ ଦେଇ ଆସିଥିଲି । ଏକ୍ଷଣାରେ ସମୀକ୍ଷା କରିବେ ବୋଲି କହିଲେ । ମାତ୍ର ତା ପରବର୍ତ୍ତୀ ଖବର ମୁଁ ରଖିପାରି ନଥିଲି । ତେବେ ଜୀବନର ପରମ ଦୁଃଖଦ ସମୟ ଟୁଟୁର ମୃତ୍ୟୁରେ । ୨୦୧୩ରେ ତାକୁ ଦେଖା କରିଥିଲି । ସେ କଥା କହୁକହୁ ହସୁଥିଲେ କାନ୍ଦିବା ପରି । କହୁଥିଲେ- ସ୍ତ୍ରୀର ମୃତ୍ୟୁ, ଟୁଟୁର ମୃତ୍ୟୁ ସବୁ ଭିତରେ ମୁଁ ବଂଚିଛି ସାହିତ୍ୟିକୁ ନେଇ । ସାହିତ୍ୟ ଦେଇଛି ମୋତେ ବଂଚିବାର ସାହସ ।

ସାହିତ୍ୟକୁ ପ୍ରାଣଭରି ଭଲପାଉଥିବା ମଣିଷଟି ଭିତରେ ଜୀବନକୁ ଅତିକ୍ରମି ଯିବାର ନିଶା କେତେ ପ୍ରବଳ ତା ଜାଣିଲି । ସାହିତ୍ୟର କେଉଁ ମଗ୍ନ ତପସ୍ୱୀ ଅବା । ସାହିତ୍ୟର ସବୁ ବିଭାଗରେ ଲେଖନୀ ଚାଳନା କରିଛନ୍ତି ସେ । ଜଣେ ମହାନ ସାରସ୍ୱତ ସାଧକ । ମୋର ସେ ନମସ୍ୟ, ଏ ଜାତିର ନମସ୍ୟ । ହେ ମହାନ୍! ଆପଣଙ୍କୁ କୋଟି କୋଟି ପ୍ରଣାମ ।



ରାଜାବଗିଚା, କଟକ-୭୫୩୦୦୯

# ପ୍ରବନ୍ଧର ମଥା ଓ ନିବନ୍ଧର ପୁଚ୍ଛକାଟକରି ଯିଏ ମୋତେ ସମୀକ୍ଷକ ଓ ଗବେଷକ ସ୍ୱୀକୃତ କରାଇଦେଇଥିଲେ

ପ୍ରକାଶ କୁମାର ପରିଡ଼ା

ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରଫେସର ଡ଼କ୍ଟର ବଂଶୀଧର ମହାନ୍ତିଙ୍କ ପ୍ରକୋଷ୍ଠରୁ - 'ଓଡ଼ିଆରେ ଏମ୍.ଏ. ପଢ଼ି କ'ଣ କରିବ ? ଯାଅ ଗାଁରେ ପାନଦୋକାନ ଦେଲେ ଲାଭ ଅଛି' - ଶୁଣି କ୍ୟାରିଅର ମାର୍କିଂ (ଥାର୍ଡ଼ + ଥାର୍ଡ଼ + ସେକେଣ୍ଡ୍ କ୍ଲାସ ଅନର୍ସ ଉଇଥ୍ ଡ଼ିଷ୍ଟିଂସନ)ରେ ଅଯୋଗ୍ୟ ସାବ୍ୟସ୍ତ ହୋଇ ଏକମାତ୍ର ବିକଳ୍ପ ରେଭେନ୍ସା କଲେଜରେ ଆଡ଼୍‌ମିସନ୍ ସ୍ଥିତି କ'ଣ ବୁଝିବାକୁ ପହଞ୍ଚି ଓଡ଼ିଆ ଡିପାର୍ଟମେଣ୍ଟ୍ ସଂଲଗ୍ନ ଷ୍ଟାଫ୍ କମନ୍‌ରୁମ୍‌ରେ ଯାହାଙ୍କୁ ଭେଟିଥିଲି ସେ'ହିଁ ଥିଲେ ପ୍ରଫେସର ଇନ୍‌ଚାର୍ଜ ଆଡ଼୍‌ମିସନ୍ ଓ ତାଙ୍କ ଶୁଭନାମ ଥିଲା - ଡ଼କ୍ଟର କୃଷ୍ଣଚରଣ ବେହେରା ।

ନିଜ ନାମଟି କହିବାରୁ ସାମନାରେ ଥିବା ଦରଖାସ୍ତ ପୁଳିନ୍ଦା ଖେଳେଇ ମୋ ଦରଖାସ୍ତ ସଂଲଗ୍ନ କାଗଜପତ୍ର ଦେଖି କହିଲେ - "ତୁମର ମାର୍କ୍‌ସିଟ୍‌ରେ ୟୁନିର୍ଭସିଟି ମାର୍କ୍ ଓ ଇଣ୍ଟରନାଲ୍ ମାର୍କ୍ ଅନର୍ସ୍ ସବ୍‌ଜେକ୍ଟରେ ମିଶିକରି ଅଛି, ଆମେ କେବଳ ୟୁନିଭର୍ସିଟି ମାର୍କ ବେସିସ୍‌ରେ ସିଲେକ୍ସନ୍ କରୁଛୁ, ତୁମେ ତୁମ କଲେଜରୁ ଲେଖେଇ ଆଣିପାରିବ ତୁମର ୟୁନିଭର୍ସିଟି ମାର୍କ୍ ଓ କଲେଜ ମାର୍କ ପୃଥକ କରି ? ତାହେଲେ ତୁମ ଦରଖାସ୍ତ ବିଚାରକୁ ଯିବ ।"

ମୁଁ କହିଲି - ଆଜ୍ଞା ହଁ ପାରିବି ।

ଯାଅ । ମୁଁ ପାଞ୍ଚଟାଯାଏ ଅପେକ୍ଷା କରିଛି ।

ଦୌଡ଼ିଲି ଓ.ଏମ୍.ପି. ଛକ, ଚଣ୍ଡିଖୋଲ ଦେଇ ଦୁହୁରିଆ ଓ ଧନିଛକ, ଡ଼ବଲ୍ ମାର୍ଚ୍ଚରେ କଲେଜ ଏମ୍.ବି. ସେଠୁ ଏକ୍‌ଜାମିନେସନ୍ ସେକ୍ସନ୍ ଓ ବୁଝିଲି ଯେ କାର୍ତ୍ତିକ

ସାର୍ ଦାୟିତ୍ୱରେ ଅଛନ୍ତି ଓ ସେ ଏଇନେ ଖାଇବା ବିରତିରେ ବସାକୁ ଚାଲି ଯାଇଛନ୍ତି ବୋଧେ ।

ଅଫିସ୍ ପରିସରରୁ ପୁଣି ଏମ୍.ବି. ସାମନା । ଆକସ୍ମିକ ଅନପେକ୍ଷିତ ଭାବେ ସାର୍ ଦେଖାହେଇଗଲେ, ସମସ୍ୟା ବୁଝିଲେ, ଅଫିସ୍ ଗଲେ ଓ ମାର୍କସିଟ୍‌ରେ ଅନର୍ସ୍ ମାର୍କ୍ ଡ଼ାହାଣରେ ଲେଖାଥିବା ୩୪୩କୁ ଲେଖିଲେ (୨୪୧ + ୧୦୨) ଓ ମୋତେ ବଢ଼େଇ ଦେଲେ । ମୁଁ ଦୌଡ଼ିଲି ଧନିଛକ, ବସ୍ ଧରିଲି ଓ.ଏମ୍.ପି. ଦୌଡ଼ିଲି ରେଭେନ୍ସା କଲେଜ, ଟ୍ରେନ୍ ଲାଇନ୍ ଟପି ପାଚେରୀ କଡ଼େକଡ଼େ ଯାଇଯାଇ ଷ୍ଟାଫ୍ କ୍ୱାର୍ଟର ବାଟଦେଇ ପଶ୍ଚିମ ଛାତ୍ରାବାସ କଟେଇ ଆର୍ଟସ୍ ବ୍ଲକ ଓ ସେଠୁ ୨ୟ ମହଲାରେ ଷ୍ଟାଫ୍ କମନ୍‌ରୁମ୍‌ରେ ପହଞ୍ଚିଲାବେଳକୁ ମୁହଁ ଅନ୍ଧାର ସମୟ ୫.୩୦ରୁ ଅଧିକ ଓ ଦେଖିଲି ସାର୍ ସେଇଠି ସେମିତି ବସିଛନ୍ତି । ସାରାଟା ରୁମ୍ - କରିଡ଼ର ଫାଙ୍କା ।

ମୋତେ ଦେଖି କହିଲେ - ଆସିଗଲ । ତୁମକୁ ଅପେକ୍ଷା କରୁଥିଲି, ୬ଟା ଯାଏ ଅପେକ୍ଷା କରିଥାନ୍ତି । ଦେଖାଅ ।

ମୁଁ ମାର୍କସିଟ୍ ବଢ଼େଇଦେଲି । ସାର୍ ଦେଖିଲେ ଓ କହିଲେ - କାଲି ୧୦ଟାପରେ ୟାର ଗୋଟାଏ ଆଟେଷ୍ଟେଡ୍ ନକଲ ସହିତ ପଇସା ଧରି ଆସିବ, ଆଡ୍‌ମିସନ୍ ହେଇଯିବ । କହିଲେ ଓ ଉଠିଲେ । ତମେ ଯାଅ । କୋଉଠି ରହିବାର ସୁବିଧା ଅଛି ? - ପଚାରିଲେ ।

କହିଲି - ବକ୍ସିବଜାରରେ ମାମୁଙ୍କ ଘର ।

ତାହେଲେ ଯାଅ, କାଲି ଏଇଠି ଭେଟିବ । - କହି କଳା ଫୋଲିଓ ବ୍ୟାଗ୍‌ଟି ଉଠାଇ ଷ୍ଟାଫ୍ କମନ୍‌ରୁମ୍‌ରୁ ବାହାରି ଆସିଲେ ।

ସେତେବେଳେ ଦେଖିଲି ମୋ ବାପାଙ୍କ ପରି ଦିଶୁଥିବା ମଣିଷ ଜଣେ ।

ପରଦିନ ଆଡ୍‌ମିସନ୍ ହୋଇଗଲା, ରୋଲ୍ ନଂ ମିଳିଲା ୪୮ । ଆଇଡେ଼ଣ୍ଟିଟି ଓ ଲାଇବ୍ରେରୀ କାର୍ଡ଼ ସଂଗ୍ରହ କରି ଡ଼ିପାର୍ଟମେଣ୍ଟ ଆସିଲି, ଆଡ୍‌ମିସନ୍ ହେଇଗଲା ଜଣାଇବାକୁ ଓ ଶୁଣିଲି - କ୍ଲାସ୍ ଯାଅ ହଲ ନଂ - ୩୨ ।

କ୍ଲାସ୍‌ରେ ପହଞ୍ଚି ହଲଭର୍ତ୍ତି ପିଲାଙ୍କୁ ଚାହିଁଲି । ଗୋଟିଏ ଚିହ୍ନାମୁହଁ ଦିଶିଲା ! ଅଜୟ ସ୍ୱାଇଁ । ଗଲାକାଲି ବାଣୀବିହାରରେ ଯିଏ ମୋରି ପରି ୱେଟିଂରେ ଥାଇ ମୁଁ ଉଠିଯାଇଥିବା ସିଟ୍‌ରେ ବସିପଡ଼ିଥିବାରୁ ତା ସହିତ ଝଗଡ଼ା କରିଥିଲି - ସେହି ।

ଆସ ଆସ ବଂଧୁ - ସେ ହିଁ କହିଲା ଓ ସାଙ୍ଗ ହେଇଗଲା । ପିରିୟଡ଼ ବେଲ୍ ବାଜିଲା । ଆସିଲେ ଡ଼କ୍ଟର ବେହେରା ।

ଶ୍ରୀରାମଚନ୍ଦ୍ର ଭବନ ଦେଖିଛ ? ସତୀ ଚଉରା ? ଖାନ୍ ନଗର ? ଗୋରା କବର ? ଆଗେ ଏ ଯାଗା ଗୁଡ଼ାକ ଦେଖିବ ତା'ପରେ ପାଠପଢ଼ା ହବ । ପଢ଼ିଆରୀ ପାଠାଗାର, ସମାଜ ଅଫିସ୍, ପ୍ରଜାତନ୍ତ୍ର କାର୍ଯ୍ୟାଳୟ, ମାତୃଭୂମି ଅଫିସ୍, ଅନ୍ନପୂର୍ଣ୍ଣା ରଂଗମଂଚ, ବାରବାଟୀ ଗଡ଼, ଗଡ଼ଗଡ଼ିଆ ଘାଟ ନିଶ୍ଚେ ଦେଖିବ । ବାଲୁ ବଜାର, ବାଙ୍କାବଜାର, ବିନୋଦବିହାରୀ ଆଡ଼େ ଯିବ । କଟକର ଏଇ ଯାଗା ସବୁରେ ଓଡ଼ିଆ ସାହିତ୍ୟିକ - ସାହିତ୍ୟ ବହି - ସାହିତ୍ୟ ସଭା ମୋଟ୍ ଉପରେ ସାହିତ୍ୟ ପରିବେଶ ଅଛି ।

ଏମ୍.ଏ. ପାଠ ପଢ଼ା ସହିତ ଏଇ ସ୍ଥାନ ଗୁଡ଼ିକର ସଂପର୍କ କ'ଣ ଜରୁରୀ ? - ସବୁଛାତ୍ର ଭାବିଲେ ।

ସେଇ ଅପରାହ୍ଣରେ (କ୍ଲାସ୍ ଥାଏ ୧୧ଟାରୁ ୩ଟାଯାଏ) ମାମୁପୁଅ ସାନଭାଇ ସଚ୍ଚି ସହିତ ସାଇକେଲରେ ବୁଲା ହେଇଗଲା ସବୁଗୁଡ଼ିକ ଯାଗା, କେବଳ ଗୋରାକବରକୁ ଛାଡ଼ି ।

ପରଦିନ କ୍ଲାସ୍‌ରେ ସାର୍ ପଚାରିଲେ - ଶ୍ରୀରାମଚନ୍ଦ୍ର ଭବନ ଦେଖିଲ ?

ସାର୍ ସବୁ ଯାଗା ଦେଖିଦେଲି - ମୁଁ ଠିଆହୋଇ କହିଲି ।

କ'ଣ ଦେଖିଲ ? - ରାଧାନାଥ ରାୟଙ୍କ ସମାଧୀ, ଫକୀରମୋହନ ଇତ୍ୟାଦିଙ୍କ ଫଟୋ, ଗ୍ରନ୍ଥମନ୍ଦିର - ବିଦ୍ୟାପୁରୀ ବହି ଦୋକାନ । ମୁଁ ମନେ ପକାଇ ପକାଇ କହିଲି ।

ତାହେଲେ - ସତୀ ଚଉରା, ଶ୍ରୀରାମଚନ୍ଦ୍ର ଭବନ, ବିନୋଦ ବିହାରୀ ଯାଇଛ । ଭଲ । ସେସବୁ ଜାଗା ସାହିତ୍ୟ ଛାତ୍ରଙ୍କ ତୀର୍ଥ । ସମସ୍ତେ ଯିବ । ନିଶ୍ଚୟ ଯିବ ।

ଫାଷ୍ଟ୍ ସେମିଷ୍ଟର୍ ପରୀକ୍ଷା ହୋଇଗଲା । ରେଜଲ୍ଟ ବାହାରିଲା । ୬୧% । ସାର୍ ଜାଣିଲେ । ବାଲୁବଜାରରେ ଦେଖାଗଲା ଛାତ୍ରମାନଙ୍କ କାମରେ ଲାଗିବାପରି ଅନେକ ବହି ସାର୍‌ଙ୍କର ଅଛି । କଥାବାର୍ତ୍ତା ଯେପରି ବହିର ଲେଖା ମଧ୍ୟ ସେହିପରି । ସିଧାସଳଖ, ଯୁକ୍ତି ସମ୍ମତ, ଅତିକଥନ ମୁକ୍ତ, ସିଦ୍ଧାନ୍ତ ଦେଲାପରି । କୌଣସି ଲେଖକକୁ ଅତି ପ୍ରଶଂସା ନାହିଁ କି ଆବେଗ ଆପ୍ଲୁତ ବିଶେଷଣ ପ୍ରୟୋଗ ନାହିଁ । ଇଂରାଜୀ ଉଦ୍ଧୃତି ଓଡ଼ିଆ ଭାଷା ଓ ହରଫ୍‌ରେ ଲିଖିତ । ଫୁଟ୍‌ନୋଟ୍ କଣ୍ଟକିତ ନୁହେଁ । ଗବେଷଣା ନିବନ୍ଧ 'ଓଡ଼ିଆ ଉପନ୍ୟାସ' ବ୍ୟତୀତ କ୍ୱଚିତ ବହିର କ୍ୱଚିତ ଆର୍ଟିକ୍‌ଲ୍ ତଳେ ମାଳେ ବହି - ଲେଖକ - ପୃଷ୍ଠାଙ୍କ ଉପଦ୍ରବ ଖୋଜିଲେ ମିଳିପାରେ ।

ସାହିତ୍ୟିକ ଅଭିଭାଷଣ ବହି ଦେଖି ତ ମୁଗ୍ଧ ହୋଇଗଲି । ବିଭିନ୍ନ କଲେଜ, ବିଭିନ୍ନ ସାରସ୍ୱତ ଅନୁଷ୍ଠାନରେ ଉପସ୍ଥାପିତ ଲିଖିତ ଅଭିଭାଷଣ । ଉପଲକ୍ଷ୍ୟ ଓ ତାରିଖ ସୂଚନା ସହିତ ।

ସେହି ସମୟରେ ଫକୀରମୋହନଙ୍କ କଥାସାହିତ୍ୟରେ ସାମାଜିକ ଚିତ୍ର ନିବନ୍ଧ ପାଇଁ ଅସିତ କବିଙ୍କ ପିଏଚ.ଡ଼ି. ଡ଼ିଗ୍ରୀଲାଭ ଉପଲକ୍ଷ୍ୟେ ଆୟୋଜିତ ବିଭାଗୀୟ ସମ୍ବର୍ଦ୍ଧନା ସଭାରେ ସାର୍‌ଙ୍କ ତାତ୍ତ୍ୱିକ ଆଲୋଚନା ସମ୍ବଳିତ ଭାଷଣ ଶୁଣିଥିଲି ।

ସେକେଣ୍ଡ ସେମିଷ୍ଟର୍ ବେଳକୁ ମାମୁଘର ଛାଡ଼ି ହଷ୍ଟେଲ ଚାଲି ଆସିଥାଏ । ସାର୍‌ଙ୍କ କ୍ଲାସ୍ ପଢ଼ାକୁ ଡ଼ାଇରୀରେ ସର୍ଟ ହାଣ୍ଡ୍‌ରେ ଲେଖି ତାକୁ ଦିନେ ଦୁଇଦିନ ବ୍ୟବଧାନରେ ନିଜ ବିଚାର ଓ ବହିର ସାହାଯ୍ୟ ନେଇ ପୂରାପୃଷ୍ଠା କାଗଜରେ ୪ ଫର୍ଦ୍ଦ ଲେଖି ସାର୍‌ଙ୍କ ବସାରେ ପହଞ୍ଚେ । ସାର୍ ଲେଖା ଦେଖିଦିଅନ୍ତି ଓ କହନ୍ତି – ଯାଅ ।

ସେତିକି ମଧ୍ୟ ଲାଗେ ପ୍ରଶଂସା ପାଇବାପରି । କାରଣ ଛାତ୍ରର ଲେଖା (ତାଙ୍କ କୁହା) ସାର୍‌ଙ୍କ ଦ୍ୱାରା ଅଗ୍ରାହ୍ୟ ହୋଇଯାଉନାହିଁ, ସେତିକି ଖୁବ୍ ବଡ଼ କଥା ଯେ କୌଣସି ଛାତ୍ର ପାଇଁ ।

୧୯୮୧ ମସିହା ଜାନୁଆରୀ ପହିଲାରେ ମୋର ପ୍ରଥମ ବହିର ଉନ୍ମୋଚନ ଉତ୍ସବରେ ଡ଼ଗରପ୍ରେସ୍ ପରିସରରେ ପହଞ୍ଚିବାକୁ ଅନୁରୋଧ କରିବାକୁ ଯାଇ ଆଉଜଣେ ଭିନ୍ନ ମଣିଷଙ୍କୁ ଭେଟିଲି । ୧୯୮୦ ଡ଼ିସେମ୍ବର ୩୧ ତାରିଖ ରାତି ୮ଟା ପାଖାପାଖିହେବ ।

ତୁମେ ବହିଟିଏ ଲେଖିଛ ?

ଆଜ୍ଞା ।

କି ବହି ?

ଗପ ବହି ।

ନା କ'ଣ ରଖିଛ ?

ଶୂନ୍ୟ ସଂହିତା

ସାର୍ ହସିଲେ । ଶୂନ୍ୟ ସଂହିତା କାହାର ରଚନା ଜାଣିଛ ? ଅଚ୍ୟୁତାନନ୍ଦ ଦାସଙ୍କ ଗୋଟିଏ ପୋଥି । ତତ୍ତ୍ୱ ଗ୍ରନ୍ଥଟିଏ । ସେମିତି ନାଁଟିଏ ଗପବହିପାଇଁ ବାଛିଲାବେଳେ ଟିକିଏ ଚିନ୍ତା କଲନାହିଁ ? କାହାର ପରାମର୍ଶ ନେଇଥିଲ ? ଏଥିରେ କେତେଟା ଗପ ଅଛି ? ପୂର୍ବରୁ ପ୍ରକାଶ ପାଇଛି କି ସେସବୁ ?

ମୋର ଉତ୍ତର ତିଆରିହେବା ପୂର୍ବରୁ ପ୍ରଶ୍ନଟିଏମାନ ଆସିଯାଉଥାଏ । ମୁଁ କହିବାକୁ ଯାଉଛି - ସାର୍ ଏହା ଏକ ମିନିଗପ ବହି । ଏଥିରେ ୮୫ଟି... ।

ପ୍ରଶ୍ନ ହେଲା - ଅଫ୍‌ପ୍ରିଣ୍ଟ୍ ଆଣିଛ ?

ଅଫ୍‌ପ୍ରିଣ୍ଟ୍ ଶବ୍ଦଟି ହିଁ ମୋ ପାଇଁ ନୂଆ ଥିଲା । ମୁଁ ବୋକାଙ୍କ ପରି ଠିଆହିଁରହିଲି ।

ଆରେ ସେ ବହିର ଗୋଟିଏ କପି, କଭର ଲାଗିନଥିଲେ ମଧ୍ୟ ଚଳିବ, ମୋତେ ଦେଇପାରିବ ? ଆଣିଛ ?

ମୁଁ କହିଲି - ସାର୍ କାଲି ଉନ୍ମୋଚନ ହେବ ।

ସାର୍ ପୁଣି ହସିଲେ । କହିଲେ - ଆଗରୁ ଦେଖିଥିଲେ ମୁଁ ସଭାରେ ବହି ବିଷୟରେ କିଛି କହିଥାନ୍ତି । ହଉ । ମୁଁ ଯିବି । ଯାଅ ।

ପରଦିନ ସାର୍ ରିକ୍ସାଯୋଗେ ଯଥାସମୟରେ ପହଂଚିଥିଲେ । ବହିଟି ଉନ୍ମୋଚନ ପରେ ବହି ସଂପର୍କରେ ମତାମତ ରଖିଥିଲେ । ମତାମତ କିନ୍ତୁ ଉତ୍ସାହପ୍ରଦ ଥିଲା । ସେଇଠୁ ମୁଁ ଜାଣିଥିଲି ଯେ, ମିନିଗପ ବହି ଆକାରରେ ପ୍ରକାଶ ପାଇବାରେ ଏହା ମାତ୍ର ୪ର୍ଥ କିମ୍ବା ୩ୟ ମଧ୍ୟ ହୋଇପାରେ । ବ୍ରହ୍ମାନନ୍ଦ ପଣ୍ଡାଙ୍କ ଆଭାସଗଳ୍ପ 'କଳା ଓ କଳ୍ପନା', ପ୍ରସନ୍ନ ପାଟ୍ଟଶାଣୀଙ୍କ 'ନିଆଁର ବିନ୍ଦୁ ଓ ରକ୍ତବୃତ୍ତର ପରିଧି', ରତ୍ନାକର ଚଇନିଙ୍କ ନିଷିଦ୍ଧ ଶୃଙ୍ଗାର (୧୯୮୦)ରେ ୧୦ ଟି ମିନିଗପ ଓ କେତୋଟି କ୍ଷୁଦ୍ରଗଳ୍ପ ଏକତ୍ର, ରବି ସ୍ୱାଇଁଙ୍କ 'ସଂବିତ' ପରେ ଏହାକୁ ୪ର୍ଥ ପୁସ୍ତକ କୁହାଯାଇପାରେ । ଯଦି ଇତିମଧ୍ୟରେ ଓଡ଼ିଶାର ପୃଥକ୍ ପ୍ରାନ୍ତରେ କେହି ଏପରି ଉଦ୍ୟମ କରିନଥାଏ ।

ମୁଁ ମିନିଗପ ଲେଖିଲାବେଳେ, ଛାପିଲାବେଳେ ଆଦୌ ଏ ଦିଗରେ ଧ୍ୟାନ ଦେଇନଥିଲି । ସାର୍ କିନ୍ତୁ ମିନିଗପର ଧାରା ଓ ମିନିଆନ୍ଦୋଳନର ଇତିହାସ ଓ ତତ୍କାଳୀନ ସ୍ଥିତି (ଅବକ୍ଷୟ) ବିଷୟରେ କେବଳ ଜାଣିନଥିଲେ ସେ ବିଷୟରେ ତଦ୍‌ବିତ୍ ଥିଲେ । ଏପରିକି ରେଭେନ୍ସାଭିଆନ୍‌ରେ ମୋ ଲିଖିତ ଦୁଇଟି ମିନିଗପ ପ୍ରକାଶ ପାଇଥିବା କଥା ସ୍ମରଣ ରଖିଥିଲେ ।

ସଂକଳିତ କେତୋଟି ମିନିଗପ ଆଦୌ 'ଗପ' ହୋଇନାହିଁ, କେତୋଟି ଅତି ଚମତ୍କାର ହୋଇଛି ବୋଲି ମତାମତ ରଖିଥିଲେ ।

ସେତିକିରେ ମୁଁ କୃତକୃତ୍ୟ ହୋଇଯାଇଥିଲି ।

ପାଠପଢ଼ା ବେଳେ ଯେଉଁ ସ୍ମରଣୀୟ ଘଟଣାଟି ମୋତେ ସାର୍‌ଙ୍କ ପାଖରେ ଚିରକୃତଜ୍ଞ କରିଦେଲା । ତାହା ବିସ୍ତାରରେ କହେ ।

୧୯୮୧ ଜାନୁଆରୀ ସଂଖ୍ୟାଟିକୁ ଓଡ଼ିଶା ସାହିତ୍ୟ ଏକାଡ଼େମୀର କୋଣାର୍କ ପତ୍ରିକା ଫକୀରମୋହନ ବିଶେଷାଙ୍କ ଭାବେ ପ୍ରକାଶ କରିବାକୁ ସମାଜରେ ଲେଖାପାଇଁ ବିଜ୍ଞାପନ ଦେଇଥାନ୍ତି । ମୁଁ ମୋର ପେଟେଣ୍ଟ୍ ମେଡ଼ିସିନ୍ ଲେଖାଟି ପଠାଇ ଖୁବ୍ ଆଶାବାଦୀ ଥାଏ । ସଂପୃକ୍ତ ପତ୍ରିକାଟି ମୋ ହାତରେ ପଡ଼ିଲାବେଳକୁ ମାର୍ଚ୍ଚ ମାସ ହୋଇଯାଇଥାଏ । ମୁଁ ଦେଖିଲି ତହିଁରେ ମୋର ଲେଖା ସ୍ଥାନ ପାଇନାହିଁ । ସଂପାଦକୀୟ ଲେଖିଥିଲେ, ସାହିତ୍ୟ ଏକାଡ଼େମୀର ତତ୍କାଳୀନ ଉପସଭାପତି ଗାଳ୍ପିକ ରାଜ କିଶୋର ରାୟ । ତହିଁରେ ଗୋଟିଏ ବାକ୍ୟ ଥିଲା - କେତେକ ଆଲୋଚକ ଫକୀରମୋହନଙ୍କ ଲେଖାରେ ତାଙ୍କ ଜୀବନର ପ୍ରତିଫଳନ ଦେଖନ୍ତି, ମାତ୍ର ସ୍ରଷ୍ଟା ବ୍ୟକ୍ତିଗତ ଜୀବନର ଊର୍ଦ୍ଧ୍ୱରେ .... ଇତ୍ୟାଦି (ଏହା ଉଦ୍ଧୃତି ନୁହେଁ) ଯାହା ମୋତେ ଲାଗିଲା - ସଂପାଦକୀୟର ଏହି ପାରାଗ୍ରାଫ୍‌ଟି ମୋରି ଲେଖାର ପ୍ରତିକ୍ରିୟା ! ମୋତେ ହିଁ ପରୋକ୍ଷରେ ଗାଳି ଦିଆଯାଇଛି ।

କାହିଁକି କେଜାଣି ଦିନେ ଅପରାହ୍ଣରେ ଲେଖାଟି ସହିତ ସାର୍‌ଙ୍କୁ ଭେଟିଲି ଷ୍ଟାଫ୍ କମନ୍‌ରୁମ୍‌ରେ, ସେଇଠି ଯୋଉଠି ୧୯୭୯ ଜୁଲାଇ-ଅଗଷ୍ଟ ମାସରେ ପ୍ରଥମେ ଭେଟିଥିଲି ଆଡ୍‌ମିସନ୍ ସଂକ୍ରାନ୍ତରେ ।

ସାର୍‌ଙ୍କ ଚେୟାର ପଛପଟେ ଠିଆହେଲି । ନମସ୍କାର କରି କହିଲି - ସାର୍, କୋଣାର୍କ ଫକୀରମୋହନ ବିଶେଷାଙ୍କ ଦେଖିଲେଣି ?

ହଁ । କ'ଣ ହେଲା କୁହ ।

ସାର୍, ତା'ର ସଂପାଦକୀୟ ପଢ଼ିଛନ୍ତି ?

ହଁ । ତମେ କ'ଣ କହିବାକୁ ଚାହୁଁଛ ?

ସେଥିରେ ଗୋଟିଏ ବାକ୍ୟ ଅଛି ଯାହା ମୋର ମନେହୁଏ ମୋରି ଲେଖାପାଇଁ କୁହାଯାଇଛି ।

ସାର୍ ସଶବ୍ଦ ହସିଲେ । ଯୁଆଡ଼େ ଚାହିଁଥିଲେ ସିଆଡ଼େ ସେମିତି ଚାହିଁରହି କହିଲେ - ସଂପାଦକୀୟରେ ସମାଲୋଚିତ ହେବା ମଧ୍ୟ ଗୋଟିଏ ଯୋଗ୍ୟତା । ବଡ଼ବଡ଼ ଲେଖକଙ୍କୁ ବି ସଂପାଦକୀୟରେ ନିର୍ଘାତ ସମାଲୋଚନା କରାଯାଏ । ହଉ, ତୁମ ଲେଖା ଆଣିଛ ?

ଆଜ୍ଞା । ସଂକୋଚରେ କହିଲି ମୁଁ ।

ପଢ଼ । ସାର୍ କହିଲେ । କମନ୍‌ରୁମ୍‌ରେ ସାର୍ ଓ ମୁଁ, ବାରଣ୍ଡାରେ କମନ୍‌ରୁମ୍ ପିଅନ ଚା' କେଟ୍‌ଲି ଧୋଉଥାଏ । ବିଳମ୍ବିତ ଅପରାହ୍ଣ ।

୧୨-୧୩ ପୃଷ୍ଠାର ସେହି ଦୀର୍ଘ ଲେଖାଟିକୁ ଧାଡ଼ିଧାଡ଼ିକରି ପଢ଼ିଗଲି । ସେମିତି ଠିଆଠିଆ, ସେହି ଅଙ୍କ ଆଲୁଅରେ । ପଢ଼ା ସରିଗଲା ।

ଏଇ ଲେଖାଟି ସଂପାଦକ ରିଜେକ୍ଟ କରି ଠିକ୍ କରିଛନ୍ତି । – ସାର୍ ସେମିତି କାନ୍ଥମୁହାଁ ଥାଇ କହିଲେ ।

ବଜ୍ର ପଡ଼ିଗଲା କି ? ମୁଁ ସ୍ତବ୍ଧ ହୋଇଗଲି । ଭାବିଥିଲି ଲେଖାଟି ଶୁଣି ସାର୍ କହିବେ – ଏ ତ ବଢ଼ିଆ ହେଇଛି, ଏହା କାହିଁକି ସ୍ଥାନ ପାଇଲାନାହିଁ ? ତମ ଲେଖା ପହଞ୍ଚି ନାହିଁ ବୋଧେ । କିନ୍ତୁ ସାର୍‌ଙ୍କ କଥା ଶୁଣି ମୋତେ ଲାଜ ଲାଗିଲା, କାନ୍ଦ କାନ୍ଦ ଲାଗିଲା, ଅପମାନୀତ ବି ।

ସାର୍ ପଚାରିଲେ – ଜୀବନ କ'ଣ ?

ମୁଁ କଣ ଯାଡୁ ସାଡୁ କହିଲି । ପଚାରିଲେ – ଦର୍ଶନ କ'ଣ ?

ମୁଁ ବି ସେମିତି ଯାହାବୁଝେ କହି ପକାଇଲି । ସାର୍ ପଚାରିଲେ – ଜୀବନଦର୍ଶନ କ'ଣ ?

ମୁଁ ଜୀବନ ଓ ଦର୍ଶନ ମିଶାଇ ଗୋଟିଏ ବାକ୍ୟରେ ଉତ୍ତର ଫାନ୍ଦିଦେଇ କହିଲି ।

ସାର୍ ପଚାରିଲେ – ତୁମ ଆଲୋଚନାରେ ସେ କଥା ଅଛି ?

ଏବେ ମୁଁ ବୁଝିପାରିଲି ମୋ ଲେଖାର ଶିରୋନାମ ଠିକ୍ ନାହିଁ । ମୋ ଲେଖାରେ ଜୀବନ ଦର୍ଶନର ଚିହ୍ନବର୍ଣ୍ଣ ନାହିଁ ।

ସାର୍ କହୁଥିଲେ – କିନ୍ତୁ ଲେଖାଟି ଭଲ ହୋଇଛି ।

ମୋ ମୁହଁ ଉଜ୍ଜ୍ୱଳ ହେଇଗଲା । ଲେଖାଟି ଭଲ ହେଇଛି, ସାର୍ କହୁଛନ୍ତି !

ସାର୍ କହିଲେ – ତୁମେ ଲେଖାର ନାମ ଅନୁଯାୟୀ ନୂଆ ଲେଖାଟିଏ ଲେଖିବ ନା ଲେଖାଟି ରଖି ତା'ର ମୁଣ୍ଡ କାଟ୍ କରିଦେବ ?

ମୁଁ କହିଲି – ମୁଣ୍ଡ ପଛେ କଟୁ ମୁଁ ଆଉ ଦ୍ୱିତୀୟ ଲେଖା ଲେଖିପାରିବିନି; କାରଣ ଜୀବନ ଦର୍ଶନ କଥାଟା ମୁଁ ଠିକ୍ ବୁଝିନାହିଁ ।

ସାର୍ କହିଲେ – ତାହେଲେ ଲେଖ, "ଫକୀରମୋହନଙ୍କ ଆତ୍ମଜୀବନଚରିତ ଭିତ୍ତିରେ ପେଟେଣ୍ଟ ମେଡ଼ିସିନ୍‌ର ଐତିହାସିକ ଅନ୍ୱେଷା ।"

ମୋର ଶିରୋନାମ ଥିଲା – 'ପେଟେଣ୍ଟ ମେଡ଼ିସିନ୍‌ରେ ଫକୀରମୋହନଙ୍କ ଜୀବନ ଦର୍ଶନ ।' ମୁଁ ସେହି ଲେଖା ଉପରେ କାଟି ସାର୍‌ଙ୍କ କଥାନୁଯାୟୀ ନୂଆ ଶିରୋନାମ ଲେଖିଦେଲି ।

ସାର୍ କହୁଥାନ୍ତି – ଏବେ ଏଇ ଲେଖା ଯୋଉଠିକି ପଠେଇବ ସେଠି ବାହାରିବ ।

ମୁଁ ପଚାରିଦେଲି – ଏପରିକି ଝଙ୍କାରରେ ?

ସାର୍ କହିଲେ – ଏପରିକି ଝଙ୍କାରରେ ?

ଲେଖାଟି ୧୯୮୧ ଡ଼ିସେମ୍ବର ଝଙ୍କାରରେ ପ୍ରକାଶ ପାଇଥିଲା । ଛାତ୍ରାବସ୍ଥାରେ ବଂଧୁମାନଙ୍କ ମଧ୍ୟରେ ସମସ୍ତଙ୍କ ଆଗରୁ ଝଙ୍କାରରେ ସ୍ଥାନୀତ ହେବାର ଗୌରବରେ ସ୍ଫୀତହୋଇଗଲି ମୁଁ ।

ପ୍ରିୟ ବଂଧୁ ଅଜୟ ସ୍ୱାଇଁ ଇତିମଧ୍ୟରେ ମୋର ଭିଣୋଇ (କାଞ୍ଚନିକ ଭଉଣୀର ସ୍ୱାମୀ) ହୋଇସାରିଥାନ୍ତି । ଚିଠି ପାଇଲି ୧୯୮୨ ଜାନୁଆରୀ/ଫେବୃଆରୀରେ । ଲେଖିଥିଲେ – ଝଂକୃତ ଶଳାମୋର !

(ସେଇଠୁ ଜାଣିଲି ଲେଖାଟି ଝଙ୍କାରରେ ପ୍ରକାଶ ପାଇଛି । ସେତେବେଳେ ମୁଁ ଶେଷ ସେମିଷ୍ଟର ପରୀକ୍ଷା ଦେଇ ମା'ର ସେବା କରିବାକୁ ଗାଁରେ ହିଁ ଥାଏ ।)

୧୯୭୯ ଡ଼ିସେମ୍ବର ଓଡ଼ିଶା ସାହିତ୍ୟ ଏକାଡ଼େମୀର 'କ୍ଷୁଦ୍ରଗଳ୍ପ ଲେଖକ କର୍ମଶାଳାରେ ସର୍ବକନିଷ୍ଠ ପ୍ରତିନିଧି ଭାବେ ମୋ ଗପଟି ପଢ଼ି ଛାତି ଧକଧକ ଅବସ୍ଥାରେ ତାହାର ଆଲୋଚନା (ସେହି ଅଧିବେଶନରେ ପଠିତ ୪ଟି ଗଳ୍ପର) ଶୁଣିଲାବେଳେ ଆଲୋଚକ ମାନେ କିଏ ଓ ତାଙ୍କ ନାମ ଯୋଗ୍ୟତା ଜାଣିବା ସେତେବେଳର ପରିସ୍ଥିତି ଦୃଷ୍ଟିରୁ ସମ୍ଭବ ନଥିଲା । ତେବେ ଏକାଡ଼େମୀର ସଭାପତି ଭାବେ ସୁରେନ୍ଦ୍ର ମହାନ୍ତି, ମୁଖ୍ୟ ଅତିଥିଭାବେ ସଚ୍ଚି ରାଉତରାୟ, ମହିଳା ଭାବେ ବୀଣାପାଣି ମହାନ୍ତି, ପ୍ରଫେସର ଜାନକୀ ବଲ୍ଲଭ ମହାନ୍ତି (ସେହିଦିନ ସୁରେନ୍ଦ୍ର ମହାନ୍ତିଙ୍କ ଠାରୁ ଜୟକୃଷ୍ଣ ମିଶ୍ରଙ୍କ ସଂପର୍କରେ ସ୍ମୃତିଲିପିଟିଏ ଶ୍ରୁତଲିଖନ ଆଣିବାକୁ ତାଙ୍କ ସହ ପରିଚିତ କରାଇଦେଇଥିବା ଦୃଷ୍ଟିରୁ) ମନେଅଛନ୍ତି । ତେବେ କଥା ସାହିତ୍ୟର ଗବେଷକ ହୋଇଥିବାରୁ ଡ଼ଃ ବେହେରା ଓ ବୈଷ୍ଣବଚରଣ ସାମଲ ସେ ସଭାରେ ମଧ୍ୟ ଉପସ୍ଥିତ ଥିଲେ ଏମିତି ଏକ ଛାଇଛାଇଆ ସ୍ମରଣ ଅଛି । ଏହାପରେ ଯୁବବାଣୀରେ ଟକ୍ ପ୍ରସାରଣ, ରେଭେନ୍ସାଭିଆନ୍‌ରେ ମିନିଗପ ଓ ଗପ ପ୍ରକାଶ, ୱାଲ୍ ମାଗାଜିନ୍‌ର ସଂପାଦନା, ରବିବାସରୀୟ ସାହିତ୍ୟ ସଂସଦ ଗଠନ, ଝଙ୍କାର ପ୍ରବନ୍ଧ ପ୍ରକାଶ (୧୯୮୨ ମାର୍ଚ୍ଚରେ ପୁଣି ଝଙ୍କାରରେ ପ୍ରକାଶ ପାଏ 'ମନୋଜଦାସଙ୍କ ଗଳ୍ପରେ ଅସହାୟତାବୋଧ' – ଏହା ଥିଲା ବି.ଏ. କ୍ଲାସ୍‌ରେ ମନୋଜ ଦାସଙ୍କ ଗଳ୍ପ ଆଧାରରେ ମୋ ଉପସ୍ଥାପିତ ଦୀର୍ଘ ରଚନାର ସଂପାଦିତ ସ୍ୱୟଂସଂପୂର୍ଣ୍ଣ ଅଂଶ) ଫକୀର ମୋହନ ସାହିତ୍ୟପରିଷଦ

- ବାଲେଶ୍ୱର ଓ କାନ୍ତକବି ସାହିତ୍ୟପରିଷଦ - ଭଦ୍ରକ ଆୟୋଜିତ ବିଶ୍ୱବିଦ୍ୟାଳୟ ସ୍ତରୀୟ ପ୍ରବନ୍ଧ ପ୍ରତିଯୋଗିତାରେ କୃତିତ୍ୱଲାଭ, ଇତ୍ୟାଦି ନାନା ଘଟଣାରେ ସାର୍‌ଙ୍କଠାରୁ ପ୍ରଶଂସା ପାଇଛି; ମର୍ଡ଼ର୍ଣ୍ଣ ସ୍ପେଶାଲ ପେପର୍ ନେଇ ମଧ ଏ+ ଗ୍ରେଡ୍ ପାଇବାରେ ସାର୍‌ଙ୍କ ସ୍ନେହାଶୀର୍ବାଦ ମଧ ପାଇଛି ।

ଏସବୁ ଏମ୍.ଏ. ପଢ଼ାବେଳର କଥା । ଗୁରୁଭାବେ ସାର୍‌ଙ୍କୁ ପ୍ରଣିପାତ କରିବାକୁ ଏତିକି କଥା ମଧ ଅନ୍ୟ ଛାତ୍ରଙ୍କ ତୁଳନାରେ ମୋର କେଇଗୁଣ ଅଧିକ ଅତିରିକ୍ତ ପ୍ରାପ୍ତି ବୋଲି ମୁଁ ବୁଝେ ।

୧୯୭୯ରୁ ୨୦୧୬ ଡ଼ିସେମ୍ବର ସୁଦ୍ଧା ଆଉଯେତେ କଥା ସେସବୁ ଆତ୍ମଜୀବନ ଚରିତ ପାଇଁ ରଖାଯାଉ । ମୋର ପିଏଚ.ଡ଼ି.ଡ଼ିଗ୍ରୀ ପ୍ରାପ୍ତି ସହିତ ସଂପୃକ୍ତ ଅନୁଭୂତିଟି ଏଇଠି ନିଶ୍ଚୟ କହେ ।

ଡ଼ିସେମ୍ବର ୧୯୮୬ ମସିହାରେ ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟରେ ଉପସ୍ଥାପିତ ମୋର ଗବେଷଣା ନିବନ୍ଧ ଲିଖିତ ପରୀକ୍ଷା ଅତିକ୍ରମ କରି ମୌଖିକ ପରୀକ୍ଷା ପାଇଁ ମୋତେ ଡ଼ାକରେ ଡ଼ାକରା ଆସିଥାଏ ଓ ମୁଁ ଦିନଟିଏ ହାତରେ ରଖି ଶାନ୍ତିନିକେତନରେ ପହଞ୍ଚିଯାଇଥାଏ । ମୋର ହଷ୍ଟେଲ କୋଠରୀ ଏ/୨ ଥାଏ ଜଣେ ଓଡ଼ିଆ ଗବେଷକ (ବୋଧହୁଏ ପ୍ରିୟ ଅର୍ଜୁନ)ଙ୍କ ଅଧିକାରରେ । ସେଇଠି ରହି ପରଦିନ ସକାଳ ୧୦ଟାରେ ମୋ ନିଜ ନକଲ ନିବନ୍ଧ ଖାତା, ୟୁନିଭର୍ସିଟି ଚିଠି ସହିତ ୟୁନିଭର୍ସିଟିର ମୁଖ୍ୟକାର୍ଯ୍ୟାଳୟର ଆଲୋଚନା କକ୍ଷରେ ପହଂଚେ ବଂଧୁ ମନୋରଂଜନ ପ୍ରଧାନ କିମ୍ବା ଅଶୋକ ରଥ କିମ୍ବା ଅନୁଜ ପ୍ରତିମ ମିହିରଙ୍କ ସାଙ୍ଗରେ ।

ହଲ୍ ଭିତରୁ ମୋତେ ଡ଼ାକରା ଆସେ । ଭିତରକୁ ଯାଇଦେଖେ ମୋ ଗାଇଡ୍‌ଙ୍କ ସହିତ ୟୁନିଭର୍ସିଟି କଣ୍ଟ୍ରୋଲର୍ ବା ତାଙ୍କ ପ୍ରତିନିଧି ଓ ଡ଼କ୍ଟର କୃଷ୍ଣଚରଣ ବେହେରା ।

ସାର୍‌ଙ୍କୁ ନେଇ ଯେତେ କଥା ଏଯାଏ ଲେଖିଲିଣି, ସେଥିରୁ ଯଦି ମନେ ହେଉଥାଏ ଯେ ମୁଁ ତାଙ୍କର ପ୍ରିୟ ଛାତ୍ର ଥିଲି ତାହା ଭୁଲ୍ । ସାର୍‌ଙ୍କ ପ୍ରିୟ ତ ଦୂରର କଥା ପସନ୍ଦର ହୋଇପାରିବା ଏକ ସାଧନା । ତହିଁକୁ ସାର୍‌ଙ୍କ ଜ୍ଞାନଗର୍ଭ ଗମ୍ଭୀର ମୂର୍ତ୍ତି, ଆବଶ୍ୟକରୁ ପଦିଏ ଅଧିକ ନ କହିବା, ଛାତ୍ରଙ୍କ ପିଲାଳିଆ କଥାକୁ ପ୍ରଶ୍ରୟ ନଦେବା ଆଦି ଲକ୍ଷଣ କାରଣରୁ ତାଙ୍କଠାରୁ ଉଚିତ ଦୂରତ୍ୱ ରକ୍ଷାକରିବାରେ ମୁଁ ଥିଲି ଅଭ୍ୟସ୍ତ । ତହିଁକୁ ୧୯୮୨ ଡ଼ିସେମ୍ବର ଓଡ଼ିଶା ସାହିତ୍ୟ ଏକାଡ଼େମୀ ରଜତ ଜୟନ୍ତୀ ଉତ୍ସବ ପରେ ତାଙ୍କ ସହ ୧୯୮୬ ଡ଼ିସେମ୍ବର ସୁଦ୍ଧା ସାକ୍ଷାତ ଘଟିନଥିଲା କହିଲେ ଚଳେ ।

ମୋଟ୍ ଉପରେ ସାର୍‌ଙ୍କୁ ଡ଼ର ଥାଏ (ସେଇଜଣେ ସାର୍‌ଙ୍କୁ ମୁଁ ଡ଼ରୁଥିଲି, ଡ଼ରେ, ଆଜି ମଧ୍ୟ ଡ଼ରୁଛି) । ଡ଼ର ଥାଏ ପିଏଚ.ଡ଼ି. ଭାଇଭା କହିଲେ ବ୍ୟାପାରଟି କେମିତି ଘଟେ, ମୋ କ୍ଷେତ୍ରରେ କ'ଣ ହେବ, କିଛି ପ୍ରସ୍ତୁତି ଦରକାର ହୁଏ କି ? ଆଦି ଜାଣି ନଥିବାରୁ । ଏପରିକି ଗାଇଡ଼୍‌ଙ୍କ ସହ ଦେଖା ମଧ୍ୟ ହୋଇନଥାଏ - କାରଣ ମୌଖିକ ପରୀକ୍ଷାରେ ଯେ ତାଙ୍କର ଭୂମିକା ଥାଏ, ତାହା ସୁଦ୍ଧା ମୁଁ ଜାଣିନଥାଏ ।

ଏବେ ଦୁଇଜଣ ବିଶିଷ୍ଟ ଅଧ୍ୟାପକ - ଗବେଷକ - ଗବେଷଣାଗୁରୁଙ୍କ ସାମନାରେ ମୁଁ । ଛାତି ଧକ ଧକ ନୁହେଁ, ଧଡ଼ଧଡ଼ ହେଉଥାଏ । ଭୟରେ ମୁଁ ହଲ୍‌ଭିତରେ ମଥାଝୁଙ୍କାଇ ପ୍ରଣାମ କରିବାଠାରୁ ଅଧିକ ନମ୍ରତା କି ଭକ୍ତି ମଧ୍ୟ ଦେଖାଇପାରିନଥାଏ । ପରିବେଶଟି ଥାଏ - ସଂପୂର୍ଣ୍ଣ ଅପରିଚିତ ଦୁଇଜଣ ରେଫରୀ/ପରୀକ୍ଷକଙ୍କ ସାମନାରେ ଏକମାତ୍ର ଫୁଟ୍‌ବଲ୍ ଖେଳାଳୀ ଡ୍ରିବ୍‌ଲିଙ୍ଗ୍, କ୍ୟାରି, ପାସ୍, ଚେକ୍, ଥ୍ରୋ, କିକ୍, ସଟ୍, ହେଡ୍, ସ୍କୋର୍ ଆଦି ଦେଖାଇବାକୁ ପଡ଼ିଆରେ ସେଣ୍ଟର ଲାଇନ୍ ପାଖରେ ଠିଆହେଇଥିବା ବେଳର (ମଣିଷଟିର) ଅବସ୍ଥା ପରି । ମୁଁ ୟୁନିଭର୍ସିଟି ଚିଠିଟି ବଢ଼େଇଦେଇ ଗାଇଡ଼୍‌ଙ୍କ ଅନୁମତିରେ ଚେୟାରଟିରେ ବସିଥାଏ ଜୁରିଙ୍କ ସାମନାରେ । ବିନା ଗୌରଚନ୍ଦ୍ରିକାରେ, କାଗଜପତ୍ରରେ କ'ଣ ଟିକେ ଦେଖାଦେଖି ଲେଖାଲେଖି କରି ସାର୍ ପଚାରିଲେ - ତୁମ ନିଜ ନକଲ ସାଙ୍ଗରେ ଧରିଛ ? ବାହାର କର ।

ଆଜ୍ଞା ! କହି ମୁଁ ଖାତାଟି ଟେବୁଲ ଉପରେ ଥୋଇଲି । ସାର୍ ଗୋଟିଏ ଚିଠାକାଗଜ ଖୋଲି ଧରି କହିଲେ - ପୃଷ୍ଠା 'କ' ବାହାର କର । ମୁଁ ତାହା କଲି । ଭାବିଲି 'କ' ପୃଷ୍ଠାରେ କ'ଣ ବା ଭୁଲ୍ ଥାଇପାରେ ?

ସେହି 'କ'ରୁ 'ଙ' ପୃଷ୍ଠା ଭିତରେ ତ୍ରୁଟି ଚିହ୍ନଟ ଓ ସ୍ୱୀକାରରେ ମୋର ପ୍ରାଣ କଣ୍ଠାଗ୍ରତ । ଙ ପୃଷ୍ଠାର ଶେଷପୂର୍ବ ପାରାଗ୍ରାଫ୍ - "ଦିଗ୍‌ଦର୍ଶକ ଡ଼ଃ ...... ଏହି ସନ୍ଦର୍ଭର ସବୁକିଛି ଓ ସବୁକିଛିର ଉର୍ଦ୍ଧ୍ୱରେ ।" ଦିଗ୍‌ଦର୍ଶକ ଯଦି ସବୁକିଛି ଓ ସବୁକିଛିର ଉର୍ଦ୍ଧ୍ୱରେ, ତେବେ ତୁମେ କ'ଣ କରୁଥିଲ ? - ସାର୍ କଠୋରଭାବେ ପଚାରିଲେ । ଥାପଡ଼ଟାଏ ପଡ଼ିଲା କି ? ତାହା ପୁଣି ଦିଗ୍‌ଦର୍ଶକଙ୍କ ସାମନାରେ ।

ସାର୍ କହୁଥାନ୍ତି - ତୁମେ ତୁମ ଗାଇଡ଼୍‌ଙ୍କୁ ଯଥାମାନ୍ୟ ଦେଇପାର, ମାତ୍ର ଏପରି ଲେଖାଯାଏ କି ? ଅବଶ୍ୟ ତମେ କୃତଜ୍ଞତା ପ୍ରକାଶ କରିବାକୁ ଏଢ଼ା ଲେଖିଛ,ଜଣାପଡୁଛି । ତଥାପି ... ।

ମୁହଁ ଶୁଖିଯାଇଥାଏ ମୋର । ତାପରେ ଆରମ୍ଭ ହେଲା ଅସଲ ନିବନ୍ଧର ୧ମ ପରିଚ୍ଛେଦ ।

ମୁଁ ହତୋତ୍ସାହିତ ହୋଇସାରିଥାଏ । ମୁଖବନ୍ଧ/ ନିଜକଥାରେ ଯଦି ଏତିକି ତ୍ରୁଟି ବାହାରେ  ତେବେ ଅସଲ ପାଠରେ ?

ଅସଲପାଠରେ ମଧ ବର୍ଣ୍ଣାଶୁଦ୍ଧି ସମେତ ବାକ୍ୟଗଠନଜନିତ ଅସ୍ୱଚ୍ଛତା ନିମ୍ନ ରେଖାଙ୍କିତ । କେତେକ ପ୍ରଶ୍ନ - ମୋର ଉତ୍ତର, ପରିଚ୍ଛେଦ ପରେ ପରିଚ୍ଛେଦ ଓ ଶେଷ ପରିଚ୍ଛେଦ ଅର୍ଥାତ ନିଷ୍କର୍ଷ । ନିଷ୍କର୍ଷରେ ମୋତେ ବୁଝାଇବାକୁ ହେଲା । ୧୯୮୦ ସମୟ ସୀମାରେ ୭୮ ବେଳୁ ପୁଣି ଗପକୁ ଫେରିଥିଲା, କାହାଣୀଟିଏ କୁହ, ସଂସ୍କୃତି ପ୍ରତି ଦୃଷ୍ଟି ଫେରାଅ, ସାଧାରଣ ମଣିଷର ଅସାଧାରଣ ତ୍ୟାଗର କଥାକୁହ, ଯାହା କଲେ ପରୀକ୍ଷା ନିରୀକ୍ଷା ଓ ଅତିଆଧୁନିକତା ନାମରେ ଆମର (ଗଳ୍ପର) ଯୋଉ ମୂଳଭୂମି ଉତ୍‌ଖାତ ଘଟିଥିଲା, ବ୍ୟକ୍ତିଚେତନା ନାମରେ ଅତିବ୍ୟକ୍ତିଗତ ଅନୁଭୂତି ଲେଖାଯାଉଥିଲା, ସେହି ସ୍ୱରରେ ପରିବର୍ତ୍ତନ ତ ଘଟିଆସିଲାଣି; ତାହାହିଁ ପ୍ରତିଷ୍ଠା ପାଇବ ।

ସାର୍ ସବୁ ଶୁଣିଲେ । କହିଲେ ତାହାହେଲେ ତୁମ ଟାଇଟ୍‌ଲକୁ ତୁମେ କଣ୍ଟ୍ରାଷ୍ଟ କରିବ । ନବଚେତନାର ପ୍ରୟୋଗ ଓ ତା ଫଳରେ ଓଡ଼ିଆଗପ ବିଶ୍ୱଗପ ହୋଇପାରିଛି ଦର୍ଶାଇ ତୁମର ୨୫୦ ପୃଷ୍ଠା ବ୍ୟାପୀ ଆଲୋଚନାର କ'ଣ ହେବ ? ଥିସିସ୍‌ର ଆବଶ୍ୟକତା ଦୃଷ୍ଟିରୁ ଏହି ପାରାଗ୍ରାଫ୍‌ଟିକୁ ବାଦ୍ ଦେଇପାରିବ ? ସ୍ୱଷ୍ଟଭାବରେ କୁହ ।

ମୁଁ କହିଲି - ପ୍ରସ୍ତାବନାମତେ କାମ ଚାଲି ଯଦି ଶେଷରେ ସେହି ସମୟ ପରିଧି (୧୯୬୦-୮୦) ଭିତରେ ପରିବର୍ତ୍ତନ ପରିଲକ୍ଷିତ ହେଲା ତାହାକୁ ଗବେଷକ ଅଣଦେଖା କରିବ କି ? ସମସ୍ୟା ହେଉଛି ସମୟ ପରିଧି ୧୯୬୦-୮୦, ଗବେଷଣା ଆରମ୍ଭ ହେଉଛି ୧୯୮୩ରେ ଓ ପରୀକ୍ଷା ହେଉଛି ୧୯୮୬ରେ । ଏତେ ନିକଟ ଅତୀତର ପ୍ରସଂଗ ଯେ, ଏହି ରଚନା ହିଁ ସେହି ସମୟର ଗଳ୍ପ ଭିତ୍ତିକ ପ୍ରଥମ ଓ ନୂଆ ଆଲୋଚନା । ଏପରି ସ୍ଥଳେ ଗବେଷକ କ'ଣ କରିବ ?

ସାର୍ କହିଲେ - 'ନବମ ଦଶାବ୍ଦୀର ଗଳ୍ପ' ଶିରୋନାମରେ ଏହି କଥା ଓ ତଥ୍ୟ ଆଧାରିତ ପ୍ରବନ୍ଧ ଲେଖିବ । (୧୯୯୨ ମସିହାରେ ଏହି ଶିରୋନାମରେ ଉତ୍କଳ ବିଶ୍ୱବିଦ୍ୟାଳୟରେ ଡ଼ି.ଲିଟ. ପାଇଁ ରେଜିଷ୍ଟ୍ରେସନ୍ କରିଥିଲି)

ଏତେ ସବୁ ଆଲୋଚନାପରେ ମୁଁ ଧରିନେଲି ଯେ ଥିସିସ୍‌ଟି ପୁନର୍ଲିଖନ ସୁପାରିଶରୁ ଅଧିକ ପାଇବ ନାହିଁ (ଯଦି ପାଏ) ମାତ୍ର ସଂପୂର୍ଣ୍ଣ ପ୍ରତ୍ୟାଖ୍ୟାତ ହେବନାହିଁ କାରଣ ନବଚେତନାର ବ୍ୟାଖ୍ୟା ଓ ନବ୍ୟଧାରାର ବିଶେଷତ୍ୱ ଏବଂ ତାର ପ୍ରୟୋଗ ପକ୍ଷ ସନ୍ତୋଷଜନକ ହୋଇଛି - ମନେହେଉଛି ।

ଫେଲ୍ ହେବାକୁ ଯାଉଥିବା ଛାତ୍ରଟିର ମୁହଁ ଯେତିକି ଶୁଖିଯିବାକଥା ତାହା ମୋର ଘଟିଥିବ । ମୁଁ ତଳକୁ ମୁହଁ କରି ବସିଥାଏ, 'ଯାଅ' ଶୁଣିବା ଅପେକ୍ଷାରେ ।

ଶୁଭିଲା - ନୀଳାଦ୍ରି ! ତାହେଲେ ଏବେ ଆମେ ଡ଼କ୍ଟର ପ୍ରକାଶଙ୍କୁ ଅଭିନନ୍ଦନ ଜଣାଇବା ।

ମୋ କାନକୁ ମୁଁ ବିଶ୍ୱାସ କରିପାରିଲିନାହିଁ ।

ସାର୍ କହୁଥିଲେ - ଏବେ ତୁମେ ଯାଅ, ଆମେ କିଛି କନ୍‌ଫିଡ଼େନ୍‌ସିଆଲ କାମ କରିବୁ ।

ଉଭୟଙ୍କୁ ପ୍ରଣାମ କରି ବାହାରକୁ ଆସିଲି । ଶେଷପୂର୍ବ ବାକ୍ୟ ମୋ ମୁହଁକୁ ସତେଜତା ଫେରାଇ ଆଣିଥିଲା । ବଂଧୁ ଧରଣୀଧର କହିଲା - ଗୁଡ଼୍‌ମର୍ଣ୍ଣିଂ ଡ଼କ୍ଟର ପରିଡ଼ା ! କଂଗ୍ରାଚୁଲେସନ୍ ।

ମୁଁ ମୋର ସୀମିତ ସମ୍ବଳରେ ରତନପଲ୍ଲୀ ଗେଷ୍ଟ୍ ହାଉସ୍‌ରେ ୬ଟି ମିଲ୍ସର ବରାଦ କରିଥାଏ । ସୁପରଭାଇଜର୍ ଓ ପରୀକ୍ଷକଙ୍କ ସହିତ ବଂଧୁ ମନୋରଞ୍ଜନ, ଅଶୋକ ଓ ଧରଣୀଧରଙ୍କ ସହିତ ମୁଁ ।

ଗୋଟାଏ ବଡ଼ ଟେବୁଲ୍‌ରେ ଖାଇ ବସିଲୁ । ୱେଟର ବିଲ୍ ଚିଠାଟିଏ ମୋତେ ବଢ଼ାଇଲା । ମୁଁ ହାତ ବଢ଼ାଇଲି ଚିଠାଟି ଧରିବାକୁ । ୱେଟର ଥିଲା ସାର୍‌ଙ୍କ ସିଟ୍ ପାଖରେ । ସାର୍ ତାଠାରୁ ଚିଠାଟି ଧରିନେଲେ । ଦେଖିଲେ ନାହିଁ । ମୋତେ କହିଲେ-

ତୁମେ ପରା ଗୋଟାଏ ପ୍ରାଇଭେଟ୍ କଲେଜ୍‌ରେ ଅଛ ?

ଆଜ୍ଞା ।

ସେଠି ପରା ଦରମା ଦିଅନ୍ତି ନାହିଁ ।

ଅଛ ।

ୱେଟର୍‌କୁ ଚିଠାଟି ଫେରାଇ କହିଲେ - ମୋ ବିଲ୍‌ରେ ଆଡ଼୍‌ଜଷ୍ଟ୍ କରିଦବ ।

ମୁଁ ବିସ୍ମିତ, ସ୍ତମ୍ଭୀଭୂତ, ମୁଗ୍ଧ, ଉପେକ୍ଷିତ, ଦୟନୀୟ, ଅନୁଗୃହୀତ, ପୁରସ୍କୃତ, ସମ୍ବର୍ଦ୍ଧିତ ସବୁ ଅନୁଭବ ଏକାଠି ପାଇଲି ଓ ପ୍ରକୃତ ଅନୁଭବ କ'ଣ ହେବା ଉଚିତ ତାହା ମୋ ମୁହଁରେ ଫୁଟିଲା ନାହିଁ ।

ମୁଁ କୃତଜ୍ଞ ହୋଇଗଲି । ଏବେ ସାର୍ ବାପା ପରି ଲାଗିଲେ ।

ପୁନର୍ନବା ସାହିତ୍ୟ ସଂସଦର ଏକାଧିକ ଥର ଅତିଥି ଭୂମିକା ନିର୍ବାହ, ତାଙ୍କ ପ୍ରତିଷ୍ଠିତ (ସଭାପତି ଭାବେ) ଓଡ଼ିଆ ଗବେଷଣା ପରିଷଦର ସଦସ୍ୟଭାବେ ମୋତେ

ଗ୍ରହଣ, ସୁରେନ୍ଦ୍ର ଗବେଷଣା ଅକାଦେମୀ (ମୋ ପ୍ରତିଷ୍ଠିତ)ର ଉପଦେଷ୍ଟା ପଦ ସ୍ୱୀକାର ଓ ୧ମ 'ନିରନ୍ତର ଗବେଷଣା ସମ୍ମାନ' ଗ୍ରହଣ, ମୋ ବହିର (ପ୍ରତ୍ୟୟର ପୃଥିବୀ) ମୁଖବନ୍ଧ ଲିଖନ, 'ଜନସୁଧା' ପତ୍ରିକାରେ ପ୍ରକାଶ ପାଇଁ ମୋର ସାକ୍ଷାତ୍କାର ପ୍ରଶ୍ନାବଳୀର ଉତ୍ତର ଦାନ, ଓ.ଗ.ପର ୨୦୧୨ ମସିହା ବାର୍ଷିକୋତ୍ସବରେ ପ୍ରବନ୍ଧ ଉପସ୍ଥାପନାପାଇଁ ଆମନ୍ତ୍ରଣ ଏମିତି ଶହଶହ ଘଟଣାରେ ସାର୍‌ଙ୍କ ଗୁରୁପଣର କେତେ ସ୍ମରଣଯୋଗ୍ୟ ଅନୁଭୂତି ସବୁ ଅଛି, କେଉଁଟି ମଧ ଉପେକ୍ଷଣୀୟ ନୁହେଁ ।

ଲେଖାର ମୁଣ୍ଡକାଟ କରି ଛାତ୍ରକୁ 'ଝଙ୍କାର' ପ୍ରାବନ୍ଧିକ ଓ ଥିସିସ୍‌ର ପୁଚ୍ଛକାଟ୍ କରି ଗବେଷକକୁ ଡ଼କ୍ଟରେଟ୍ ଡ଼ିଗ୍ରୀ ପ୍ରାପକ କରାଇଦେଇଥିବା ପୂଜ୍ୟ ଗୁରୁ ଡ଼କ୍ଟର କୃଷ୍ଣଚରଣ ବେହେରାଙ୍କୁ ଆଭୂମ ପ୍ରଣତି ନିବେଦନ କରୁଛି ।

ସାର୍ ! 'ପ୍ରକାଶ ପ୍ରକାଶ' ଅଭିନନ୍ଦନିକା ଗ୍ରନ୍ଥରେ ଆପଣ ହାତକାଟି ଲେଖିଦେଲେ ଯେ – "ତାଙ୍କ ଗବେଷଣା ମୋତେ ମୁଗ୍ଧ କରିଥିଲା ।"

ମୋତେ ଲାଗିଲା ୧୯୮୬ରେ ନୁହଁ ୨୦୦୮ ମସିହାରେ ହିଁ ମୁଁ ଡ଼କ୍ଟରେଟ୍ ପାଇଲି ।

ଆପଣଙ୍କ ପାଦପଦ୍ମରେ ପିତାଞ୍ଜାନରେ ମୋର ପ୍ରଣାମ ବାଢୁଛି ।



(୧୯.୧୨.୨୦୧୬) ବଡ଼ସଲାର, ଚାନ୍ଦୋଳ, କେନ୍ଦ୍ରାପଡ଼ା

# ଗୁରୁଭ୍ୟଃ ନମଃ

ଅଭୟ ଦ୍ୱିବେଦୀ

ଗୁରୁ ହେଉଛନ୍ତି ପଥ ପ୍ରଦର୍ଶକ । ଗୁରୁ ହିଁ ଜୀବନର ରାଜପଥକୁ ପ୍ରଶସ୍ତ ଓ ଆଲୋକିତ କରନ୍ତି । ଅନ୍ଧାରରୁ ଆଲୋକକୁ ବାଟ କଢ଼େଇ ନିଅନ୍ତି । ସେଇଥି ପାଇଁ ଆମ ଶାସ୍ତ୍ରରେ ଗୁରୁଙ୍କୁ ଈଶ୍ୱରଙ୍କ ସମତୁଲ ଆସନ ପ୍ରଦାନ କରାଯାଇଛି । ମୋ ଭଳି ଅଗଣିତ ଶ୍ରଦ୍ଧାଭାଜନଙ୍କ ବ୍ୟକ୍ତିଗତ ଓ ସାରସ୍ୱତ ଜୀବନରେ କୃଷ୍ଣ ସାର୍ ଥିଲେ ଗୁରୁ । ହାତ ଧରି ବାଟ ଚଲେଇଛନ୍ତି । ଭୁଲ୍ ଠିକ୍‌ର ପରଖ ଶିଖେଇଛନ୍ତି ।

ସନ୍ଧ୍ୟା ପ୍ରାର୍ଥନା ସରିବା ପରେ ଗୁରୁ ଜଣେ ଶିଷ୍ୟଙ୍କୁ କହିଲେ – 'ତୁମକୁ ଏବେ ଆରପାରି ଗାଁକୁ ଯିବାକୁ ପଡିବ । କେହି ଜଣେ ଶିଷ୍ୟ ମୋତେ ସ୍ମରଣ କରୁଛନ୍ତି । ତାଙ୍କ ପାଖରୁ ସନ୍ଦେଶ ଆଣିବ ।' ଶିଷ୍ୟ ଆଶ୍ରମ ବାହାରକୁ ଆସି ଦେଖିଲେ କିଟିମିଟି ଅନ୍ଧାର । ନିଜକୁ ବି ଦେଖି ହେଉନି । ଘଞ୍ଚ ଜଙ୍ଗଲ । ଗୁରୁଙ୍କର ଆଦେଶ । ଅମାନ୍ୟ କରିବା ସମ୍ଭବ ନୁହେଁ । ବିଷର୍ଣ୍ଣ ବଦନରେ ଗୁରୁଙ୍କୁ ପ୍ରଣାମ କରି ଯିବା ପାଇଁ ପ୍ରସ୍ତୁତ ହେଲେ । ଗୁରୁ ବୁଝିଗଲେ । କହିଲେ – 'ସାଥିରେ ଲଣ୍ଠନ ନେଇ ଯାଅ ।' ଶିଷ୍ୟ ବିକଳରେ ଚାହିଁଲେ – ଅତି ବେଶିରେ ପାହୁଣ୍ଡେ ରାସ୍ତା ଦେଖିବା ସମ୍ଭବ । ଗୁରୁ ଭରସା ଦେଇ କହିଲେ – 'ପାହୁଣ୍ଡେ ପକେଇକି ତ ଦେଖ । ସେତିକି ପାଇଁ ଆଲୁଅ ମିଳିଗଲେ କୋଶ କୋଶ ଅନ୍ଧାର ଦୂର୍ ହେଇଯିବ ।' ଶିଷ୍ୟଙ୍କର ଭୟ ଅପସରିଗଲା ।

କୃଷ୍ଣ ସାର୍‌ଙ୍କ ସହିତ ମୋର ସଂପର୍କ ଦୀର୍ଘ ବର୍ଷର । ଭଦ୍ରକସ୍ଥ ପଦ୍ମନାଭ ସ୍ମୃତି ସଂସଦର ସେ ଥିଲେ ପ୍ରତିଷ୍ଠାତା ସଭାପତି । ସୁଧାଂଶୁ ସାର୍ ଥିଲେ ଉପ-ସଭାପତି । ତାଙ୍କ ଦେହାନ୍ତ ପରେ ମୁଁ ହେଲି ଉପ-ସଭାପତି । ସେବେଠାରୁ ସଂପର୍କ ଆହୁରି ଘନିଷ୍ଠ ହେଲା । ବର୍ଷରେ ଥରୁଟିଏ ସଭା ହେବ । ଦୁଇ ମାସ ଆଗରୁ ଦୁଇଟି ପ୍ରସ୍ତୁତି ସଭା ବସେ । କିନ୍ତୁ ବର୍ଷ ସାରା ସେ ପାଇଁ ଟିକିନିଖି ପ୍ରସ୍ତୁତି ଚାଲିଥାଏ । ତାହା ହିଁ ହେଉଛି ତାଙ୍କ ନିଆରା ପଣ ।

'ଏଷଣା' ପତ୍ରିକା ପାଇଁ ସେ ମୋତେ ଗୋଟିଏ ସ୍ୱତନ୍ତ୍ର ଦାୟିତ୍ୱ ଦେଇଥିଲେ - ପ୍ରତି ସଂଖ୍ୟାରେ ଗୋଟିଏ ଇଂରାଜୀ ବହିର ସମୀକ୍ଷା ଲେଖିବି । ଅନେକ ପୁସ୍ତକର ସମୀକ୍ଷା ଲେଖିଛି । ତନ୍ମଧ୍ୟରୁ ଶୁଭକାନ୍ତ ବେହେରାଙ୍କ ଞଷର ଟଭଲକ୍ସ୍କଷ୍ପଙ୍କଭବଷ୍ପର ଉରକ୍ଷରଭକ୍ଷସଷ୍ପଛ : ଞଷର ଖସଲର ଌ ଞସଙ୍କରଷ୍ପ କ୍ଟଲ ଈଙ୍କଘସ ଔବଂଶବଢବଢଭୟଷଙ୍କ ଏବଂ ଉପନ୍ୟାସ 'ଅସରନ୍ତି ଅନୁରାଗ' ଅନ୍ୟତମ । ଞଷର ଟଭଲକ୍ସ୍କଷ୍ପଙ୍କଭବଷ୍ପର ଉରକ୍ଷରଭକ୍ଷସଷ୍ପଛ  ର ଓଡ଼ିଆ କରିଥିଲି 'ଅଭିଶପ୍ତ ମଉଡ଼ମଣି' । ଭାରି ଖୁସି ହେଇ କହିଥିଲେ - ବାଃ, ଭାରି ବଢ଼ିଆ । ଥରେ ଜଣେ ପ୍ରଫେସରଙ୍କର ଗୋଟିଏ ଇଂରାଜୀ ପୁସ୍ତକ ପଠାଇ କହିଲେ - ଆସନ୍ତା ସଂଖ୍ୟା ପାଇଁ ଏହାର ସମୀକ୍ଷା ଲେଖିବ । ବହିଟି ସଂପୂର୍ଣ୍ଣ ପଢ଼ି ସାରିବା ପରେ କ୍ଷୋଭରେ ତାଙ୍କୁ ଜଣାଇଲି - ପୁସ୍ତକ ସଂପର୍କରେ ଲେଖିବା ପାଇଁ ଆପଣ ସଂପୂର୍ଣ୍ଣ ସ୍ୱାଧୀନତା ଦେବେ ତ ? ହସି ହସି କହିଲେ - ଏଷଣା ଲେଖକଙ୍କର ସେ ସ୍ୱାଧୀନତା ରହିଛି । ପଚାରିବା ନିଷ୍ପ୍ରୋୟଜନ । ମୁଁ ଆଗ୍ରହୀ ହୋଇ ପଚାରିଲି - ଏ ପୁସ୍ତକ ସଂପର୍କରେ ମୁଁ ଅତି କଠୋର ଶବ୍ଦ ପ୍ରୟୋଗ କରିବି । ସେ ସେହିଭଳି ହସି ହସି କହିଲେ - ଅଭୟ ! ମୋର ବିଶ୍ୱାସ ଥିଲା, ତୁମ ଶବ୍ଦର ଭଣ୍ଡାର ପରିପୂର୍ଣ୍ଣ ରହିଛି । କିନ୍ତୁ ତୁମ କଥାରୁ ତ ତାହା ଲାଗୁନାହିଁ । ତୁମେ ଯାହା ଲେଖିବାକୁ ଚାହୁଁଛ, ତାହା କ'ଣ ନରମ ଶବ୍ଦରେ ଲେଖି ହେବ ନାହିଁ ? ମୁଁ ହଠାତ୍ ନିର୍ବାକ ହୋଇଗଲି । ସତେ ଯେମିତି - 'ପାହୁଣ୍ଡେ ପକେଇ କି ତ ଦେଖ । ସେତିକି ପାଇଁ ଆଲୁଅ ମିଳିଗଲେ କୋଣ କୋଣ ଅନ୍ଧାର ଦୂର ହେଇଯିବ ।' ସେହି ମୁହୂର୍ତ୍ତରୁ ମୋ ସାଧନାର ମୋଡ ବଦଳିଗଲା । ସତରେ ଗୁରୁବାଣୀ ।

ଆତ୍ମଜୀବନୀ ପ୍ରକାଶ ପାଇବା ପରେ ସାର୍‌ଙ୍କର ଗୋଟିଏ ସାକ୍ଷାତକାର ନେଇଥିଲି । ସାର୍‌ଙ୍କ ବଳିଷ୍ଠ ବ୍ୟକ୍ତିତ୍ୱର ନିଦର୍ଶନ ନିମନ୍ତେ ଗୋଟିଏ ପ୍ରଶ୍ନ- ଉତ୍ତର ଏଠାରେ ଉଲ୍ଲେଖ କରୁଛି ।

ପ୍ରଶ୍ନ : ବ୍ୟକ୍ତିଗତ ଜୀବନକୁ ଆସିବି । ସେଥି ସକାଶେ ଆପଣଙ୍କର ଅନୁମତି ଲୋଡୁଛି ।

ଉତ୍ତର : ବିନା ସଂକୋଚରେ ପଚାରିପାର ।

ପ୍ରଶ୍ନ : ଆପଣଙ୍କର ପ୍ରିୟ ପୁତ୍ର ଶୁଭକାନ୍ତ ଇଂରାଜୀ ଏବଂ ଓଡିଆ ଭାଷାରେ ଅନେକ ପୁସ୍ତକ ରଚନା କରିଛନ୍ତି ଏବଂ ଉଚ୍ଚକୋଟୀର ସାହିତ୍ୟିକ ଭାବେ ପ୍ରତିଷ୍ଠା ଅର୍ଜ୍ଜନ କରିଛନ୍ତି । ନିକଟ ଅତୀତରେ ତାଙ୍କର ଆକସ୍ମିକ ମୃତ୍ୟୁ

ଅନେକଙ୍କୁ ଦାରୁଣ ଆଘାତ ଦେଇଛି । ଆପଣ ଏବଂ ଆପଣଙ୍କ ପରିବାର ନିମନ୍ତେ ଏ ଦୁଃଖର ଗଭୀରତା ଆକଳନ କାହାରି ପକ୍ଷେ ସମ୍ଭବ ନୁହେଁ । କିନ୍ତୁ ମୁଁ ଆପଣଙ୍କୁ ସେହି ସମୟରେ ବହୁ ନିକଟରୁ ଦେଖିଛି, ଅନୁଭବ କରିଛି । ସେ ସମୟରେ ଆପଣ ଧୈର୍ଯ୍ୟର ଯେଉଁ ପରାକାଷ୍ଠା ପ୍ରଦର୍ଶନ କରିଥିଲେ, ଜଣେ ସାଧାରଣ ମଣିଷ ପକ୍ଷେ ତାହା ସମ୍ଭବ ନୁହେଁ । ସେଭଳି ମଣିଷଙ୍କ ସଂପର୍କରେ ଆମେ ପୁରାଣ, ଇତିହାସ ଏବଂ ସାହିତ୍ୟରେ ଅଧ୍ୟୟନ କରିଛୁ । ଏତେ ଶକ୍ତି କେଉଁଠୁ ପାଇଲେ ?

ଉତ୍ତର : ଅଭୟ, ତୁମେ ମୋତେ ଦୁଃଖରେ ଛଳଛଳ କରିଦେଲ । ମୃତ ଦେହ ପହଞ୍ଚିଲା । ଶୁଭକାନ୍ତର ପତ୍ନୀ ଏବଂ ସନ୍ତାନମାନେ ମୋ କୋଳରେ ମଥା ରଖି ଭୋ ଭୋ ରଡି ଛାଡୁଛନ୍ତି । ମୋ ଆଖପାଖ, ଆତ୍ମୀୟସ୍ୱଜନ, ସାଇ ପଡିଶା ଏବଂ ବହୁ ସରକାରୀ ପଦସ୍ଥ ଅଧିକାରୀ ସମସ୍ତେ ଗୁଣ୍ଡ ହୋଇ କାନ୍ଦୁଛନ୍ତି । ସେ ଦୃଶ୍ୟ ଚିତ୍ରଣ ସହଜ ନୁହେଁ । ଘରର ମୁରବୀ ହିସାବରେ ସେହି ପରିସ୍ଥିତିରେ ଯଦି ମୁଁ ଧୈର୍ଯ୍ୟ ଧରି ନ ଥାନ୍ତି, ସମସ୍ତେ ଭାଙ୍ଗି ପଡିଥାନ୍ତେ । ଆଗରୁ ପତ୍ନୀ ଯାଇଥିଲେ । ଏକୁଟିଆ ମଣୁଥିଲି । ଶୁଭକାନ୍ତ ପରେ ଆହୁରି ଏକୁଟିଆ ହେଇଗଲି । କେତେ ବଡ ପ୍ରତିଭାବନ୍ତ । ସବୁ କିଛି ଆକସ୍ମିକ ସମାପ୍ତ ହୋଇଗଲା । ନିବିଡ଼ ନିକାଞ୍ଚନ ମୁହୂର୍ତ୍ତରେ ଶୁଭକାନ୍ତକୁ ସ୍ମରଣ କରି ଲୁହ ଝରେଇଛି । ହୃଦୟ ଭରି କାନ୍ଦିଛି । କିନ୍ତୁ ପ୍ରକାଶ୍ୟରେ କେବେ ନୁହେଁ ।

ଶକ୍ତି କେଉଁଠୁ ପାଇଲି - ଏହି ପ୍ରସଙ୍ଗ ଉଠେଇଛ । ସେହି ମୁହୂର୍ତ୍ତରେ ରବୀନ୍ଦ୍ର ସଙ୍ଗୀତ ମୋତେ ବହୁ ସାନ୍ତ୍ୱନା ଦେଇଛି । ସାହିତ୍ୟ ପ୍ରତି ଅନୁରକ୍ତି ଏବଂ ମୋର ସୃଜନୀ ଶକ୍ତି , ମୋତେ ବହୁ ଭାବରେ ସଳଖି ଠିଆ ହେବା ପାଇଁ ପ୍ରେରଣା ଦେଇଛନ୍ତି ।"

ସାର୍‌ଙ୍କ ଅବର୍ତ୍ତମାନରେ ଆମେ ସମସ୍ତେ ଲୁହ ଝରେଇବା । କିନ୍ତୁ ପ୍ରକାଶ୍ୟରେ ନୁହେଁ । ଏଥି ନିମନ୍ତେ ତାଙ୍କ ସୃଜନୀ ଶକ୍ତି ଆମକୁ ଅସରନ୍ତି ପ୍ରେରଣା ଯୋଗାଇବ ।



ସାଳନ୍ଦୀ ନଗର, ଭଦ୍ରକ
ସେଲ୍ -୯୪୩୭୧୯୧୩୫୦

# ଅଭୁଲା ସ୍ମୃତି

## ରମେଶ ଚନ୍ଦ୍ର ମଲ୍ଲିକ

ନିମାପଡ଼ା କଲେଜରେ ବି.ଏ(ସମ୍ମାନ) ପଢ଼ିଲା ବେଳେ ମୁଁ ଡକ୍ଟର କୃଷ୍ଣଚରଣ ବେହେରାଙ୍କ ନାଁ ଶୁଣିଥିଲି । ଯେତେବେଳେ ମୁଁ ବାଣୀବିହାରରେ ଏମ୍.ଏ. ପଢ଼ିଲି ସେତେବେଳେ ତାଙ୍କୁ ପାଠଚକ୍ର ଓ ଆଲୋଚନାଚକ୍ରରେ ଦେଖିବାକୁ ପାଇଥିଲି । ତା'ପରେ ମୁଁ ତାଙ୍କ ବ୍ୟକ୍ତିତ୍ୱ ଓ ସାହିତ୍ୟିକ ଜ୍ଞାନରେ ଅନୁପ୍ରାଣିତ ହୋଇ ତାଙ୍କ ଆଡ଼କୁ ଆକର୍ଷିତ ହୋଇ 'ଓଡ଼ିଆ ଗବେଷଣା ପରିଷଦ'ର ସଭ୍ୟ ହେଲି । ମୋର କାଲି ଭଳି ମନେ ପଡୁଚି । ମୁଁ ଏମ୍.ଏ. ପାଶ୍ ପରେ 'ଭାଷାବିଜ୍ଞାନ' ପଢ଼ିବା ପାଇଁ ବ୍ୟାକୁଳ ହେଉଥାଏ । ଦିନେ ତାଙ୍କ ଘରକୁ ଯାଇ ମନକଥା କହିଲି । ସେ ତତ୍କ୍ଷଣାତ୍ ତାଙ୍କ ଟିପାଖାତାରୁ ଡକ୍ଟର ପଞ୍ଚାନନ ମହାନ୍ତିଙ୍କ ଠିକଣା ଓ ଫୋନ୍ ନମ୍ବର ମୋତେ ଦେଇ କହିଲେ ତୁମେ ମୋ ନାଁ ଉଲ୍ଲେଖ କରି ଚିଠି ଲେଖ; ତୁମ ସମସ୍ୟା ସମାଧାନ ହେଇଯିବ । ମୁଁ ତାଙ୍କ କଥା ମାନି ପଞ୍ଚାନନ ସାର୍‌ଙ୍କୁ ଚିଠି ଲେଖିଲି ଓ ତାଙ୍କଠାରୁ ସଙ୍ଗେ ସଙ୍ଗେ ସନ୍ତୋଷଜନକ ଉତ୍ତର ପାଇ ଖୁସି ହେଲି ଓ ତାପରେ ହାଇଦ୍ରାବାଦ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟର 'ପ୍ରାୟୋଗିକ ଭାଷାବିଜ୍ଞାନ ଓ ଅନୁବାଦ ଅଧ୍ୟୟନ କେନ୍ଦ୍ର'ରେ ଅନୁବାଦ ବିଜ୍ଞାନରେ ଏମ୍.ଫିଲ୍ ଗବେଷକ ଭାବେ ନାମ ଲେଖାଇଲି । ତା' ପରଠୁଁ ମୁଁ ଆଉ ପଛକୁ ଚାହିଁନି । ଯେତେବେଳେ ଓଡ଼ିଶା ଆସୁଥିଲି ନିଶ୍ଚୟ ଡକ୍ଟର ବେହେରାଙ୍କୁ ଭେଟୁଥିଲି ଓ ପରାମର୍ଶ ନେଉଥିଲି । ମୋ ଗବେଷଣାର ଅଗ୍ରଗତି ଶୁଣି ସେ ଖୁବ୍ ଆନନ୍ଦିତ ହେଉଥିଲେ । 'ଏଷଣା' ପାଇଁ ପ୍ରବନ୍ଧ ଓ ପୁସ୍ତକ ସମୀକ୍ଷା କରିବା ପାଇଁ ଉତ୍ସାହିତ କରୁଥିଲେ । ତାଙ୍କ ସହିତ ମୋର ଅନେକ ଥର ଓଡ଼ିଆ ଦଳିତ ସାହିତ୍ୟକୁ ନେଇ ତର୍କ ବିତର୍କ ହୋଇଛି । ସେ ମୋତେ ଦଳିତ ସାହିତ୍ୟ ସଂପର୍କରେ ଅଧିକ ଲେଖିବା ପାଇଁ ବାରମ୍ବାର ତାଗିଦ୍ କରୁଥିଲେ । ତାଙ୍କ ଘରକୁ ଗଲେ ଖାଇବାକୁ ଦେଉଥିଲେ । ପିଲାଛୁଆଙ୍କ କଥା ପଚାରି ବୁଝୁଥିଲେ । ନୂଆ ଲେଖା କ'ଣ ଲେଖିଛ ଓ କେଉଁଠି ଛପା ହୋଇଛି ଏ ସବୁ କଥା ଟିକିନିକି କରି ପଚାରୁଥିଲେ ।

ମୋତେ ସେ ବହୁତ ସ୍ନେହ କରୁଥିଲେ, ମୁଁ ବାଣୀବିହାରରେ ଅଧ୍ୟାପକ ଭାବେ ଯୋଗ ଦେବା କଥା ଶୁଣି ଖୁବ୍ ଆନନ୍ଦିତ ହୋଇଥିଲେ । ମୁଁ ଓ ଡକ୍ଟର ବିଷ୍ଣୁପ୍ରିୟା ଓତାଙ୍କ ଆବାହକତ୍ୱରେ ଉତ୍କଳ ବିଶ୍ୱବିଦ୍ୟାଳୟ ଓ ଓଡ଼ିଆ ଗବେଷଣା ପରିଷଦର ମିଳିତ ଅନୁକୂଲ୍ୟରେ ଏକ ପାଠଚକ୍ର ଅନୁଷ୍ଠିତ ହୋଇଥିଲା । ସେ ଉକ୍ତ ସଭାରେ ଉପସ୍ଥିତ ରହି ଆମ ଛାତ୍ରଛାତ୍ରୀମାନଙ୍କୁ ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତି ଗବେଷଣା ସଂପର୍କରେ ଅଭିଭାଷଣ ପ୍ରଦାନ କରି ଉତ୍ସାହିତ କରିଥିଲେ । ଆଜି 'ଓଡ଼ିଆ ଗବେଷଣା ପରିଷଦ'ର ଭବିଷ୍ୟତ ବିଷୟରେ ଆମେ ସମସ୍ତେ ଚିନ୍ତିତ । ତାଙ୍କ ଭଳି ନିଷ୍ଠାପର ଓ କର୍ତ୍ତବ୍ୟନିଷ୍ଠ ସାହିତ୍ୟିକ ଓ ସଭାପତି ପଇବା ଆଦୌ ସହଜ କଥା ନୁହେଁ; କିନ୍ତୁ ତାଙ୍କ ପ୍ରେରଣା ଓ ସାହସ ଆମକୁ ଉତ୍ସାହିତ କରୁ ଓ 'ଏଷଣା'ର ବିକାଶ ଘଟୁ ।

ଈଶ୍ୱରଙ୍କ ପାଖରେ ତାଙ୍କର ମହାନ୍ ଆତ୍ମାର ସଦ୍‌ଗତି କାମନା କରି ରହୁଛି ।



# ଶ୍ରୀହରିଙ୍କ ପ୍ରିୟ କୃଷ୍ଣଚରଣ

**ପରୀକ୍ଷିତ ମିଶ୍ର**

ଭଦ୍ରକ ଜିଲ୍ଲାର ତିହିଡ଼ିଥାନା ଅନ୍ତର୍ଗତ ଅର୍ଜୁନବିନ୍ଧା ଗାଁରେ ପିତା ପୀତାମ୍ବର ଏବଂ ମାତା ପବିତ୍ରାଙ୍କ ଔରସରୁ ୧୯୩୨ ମସିହା ଜୁନ ୨ ତାରିଖରେ ଜନ୍ମିତ କୃଷ୍ଣଚରଣ ବେହେରା । ବିଶ୍ୱଭାରତୀ ଶାନ୍ତିନିକେତନରୁ ଓଡ଼ିଆରେ ଏମ.ଏ. ଏବଂ ଉତ୍କଳ ବିଶ୍ୱବିଦ୍ୟାଳୟରୁ ପିଏଚ.ଡି. ଉପାଧି ଲାଭ କରି ୧୯୫୫ ମସିହାରେ ଭଦ୍ରକ ମହାବିଦ୍ୟାଳୟରେ ଅଧ୍ୟାପନା କାର୍ଯ୍ୟରେ ଯୋଗାଇଥିଲେ । ଏହିଠାରୁ ତାଙ୍କର ଦୀର୍ଘ ସାହିତ୍ୟିକ ଏବଂ ବୌଦ୍ଧିକ ଯାତ୍ରା ଆରମ୍ଭ । ପ୍ରତିଭାର ଅର୍ନ୍ତନିହିତ ବିକାଶ ଘଟିଲା । ସେ କେବଳ ନିଜ ପାଇଁ ନଥିଲେ । ସେ ଥିଲେ ଅସଂଖ୍ୟ ଛାତ୍ରଛାତ୍ରୀ, ନିଜ ପରିବାର, ସମାଜ, ନିଜ ଗାଁ ପ୍ରତି ଅନୁବନ୍ଧିତ । ସେ ଥିଲେ ଅତ୍ୟନ୍ତ ଉଦାର, ଦୟାଳୁ, ସମ୍ବେଦନଶୀଳ । ତାଙ୍କର ମୁଖ ସର୍ବଦା ହସ ହସ ।

ତାଙ୍କଦ୍ୱାରା ରଚିତ କବିତା, ଗଳ୍ପ, ସମାଲୋଚନା, ନିବନ୍ଧ ପୁସ୍ତକ ପାଠକଙ୍କ ଦ୍ୱାରା ଆଦୃତ ଏବଂ ପ୍ରଶଂସିତ ହେଉଥିଲା । ବିଦଗ୍ଧ ପାଠକମାନଙ୍କ ମଧ୍ୟରେ ଥିଲେ ଉତ୍କଳକେଶରୀ ଡକ୍ଟର ହରେକୃଷ୍ଣ ମହତାବ ଜୀବନ ଯାତ୍ରା ମଧ୍ୟରେ କୃଷ୍ଣଚରଣ ରଚନା କରିଥିଲେ ୨୦ରୁ ଉର୍ଦ୍ଧ୍ୱ କବିତା, ଏକାଙ୍କିକା ଏବଂ ଗଳ୍ପ ସଂକଳନ, ଅସଂଖ୍ୟ ସମୀକ୍ଷା ଏବଂ ସଂପାଦନ ପୁସ୍ତକ । ଶେଷ ପର୍ଯ୍ୟନ୍ତ ସେ ଓଡ଼ିଆ ଭାଷା ଗବେଷଣା (ଏବଂ ଅନ୍ୟମାନେ ଗବେଷଣା ପରିଷଦ)ର ମୁଖ୍ୟ ରୂପେ କାର୍ଯ୍ୟ କରୁଥିଲେ । ତାଙ୍କ ଜୀବନ କେବେବି ସ୍ଥାଣୁ ନଥିଲା । କେବଳ ତାଙ୍କର ନୁହଁ ଉତ୍କଳ ମାଟିର ଜଣେ ସୁପୁତ୍ର ଶୁଭକାନ୍ତ ବେହେରାଙ୍କ ଅସମୟ ବିୟୋଗ ତାଙ୍କୁ ଗଭୀର ଆଘାତ ଦେଇଥିଲା ।

କୃଷ୍ଣଚରଣଙ୍କ ଅନ୍ତଃ ଏବଂ ବହିଃ ଦୃଷ୍ଟି ଶାଣିତ, ନିରପେକ୍ଷ, ଦରଦୀ, ଅଭିବ୍ୟକ୍ତି ସ୍ପଷ୍ଟ । ଏହା ତାଙ୍କ ଲେଖାରେ ପ୍ରତିଫଳିତ ହେଉଥିଲା 'ଫକ୍କଡ୍' ଗଳ୍ପର ଅନ୍ତିମ ଦୁଇଧାଡ଼ି ଏହିପରି : କିନ୍ତୁ ଅତି ଆଶ୍ଚର୍ଯ୍ୟର କଥା ତା' ପରଦିନ ସନ୍ଧ୍ୟାରେ ଯାଇ

ଦେଖିଲି- ସେ ପଲା ମୁହଁରେ ସେହି ପୁରୁଣା ଦୃଶ୍ୟ ଅଭିନୀତ ହେଉଛି । ମୋ ଜାତି, ମୋ ଶାସକ, ସରକାର ଖାଲି ଜଳଜଳ କରି ଚାହିଁ ଦେଖୁଛି- ଏହାର କୌଣସି ପ୍ରତିକାର କରିପାରୁ ନାହିଁ ।"

ଆମ ସମୟର ମାନ୍ୟଗଣ୍ୟ ପୁରୁଷ, ସ୍ୱାଭିମାନୀ, ପ୍ରତିଥଯଶା, ଶିକ୍ଷାବିତ୍, ପ୍ରତିଭାଦୀପ୍ତ ସାହିତ୍ୟିକ ଆମ ଜନ୍ମଭୂମିର ସୁଯୋଗ୍ୟ ସନ୍ତାନ, ପୂଜ୍ୟ କୃଷ୍ଣଚରଣଙ୍କର ଇହଜଗତର ବିଦାୟ ନେବା ପୀଡ଼ାଦାୟକ । ସେ ଈଶ୍ୱରଙ୍କର ପ୍ରିୟ ହୋଇଗଲେ :

ଅନପେକ୍ଷଃ ଶୁଚିଦର୍କ୍ଷି ଉଦାସୀନୋ ଗତବ୍ୟଥଃ
ସର୍ବାରମ୍ଭପରିତ୍ୟାଗୀ ଯୋମଭକ୍ତସମେ ପ୍ରିୟଃ ।

ନିକଟରେ ଥାଇ ବି ୨୦ ଘଣ୍ଟା ବିଳମ୍ବରେ ଦୁଃସମ୍ବାଦ ପାଇ ମ୍ରିୟମାଣ ହୋଇପଡ଼ିଲି । ସେତେବେଳକୁ ସବୁ ଶେଷ ହୋଇଯାଇଥିଲା । ମୁଁ ପୂଜ୍ୟ କୃଷ୍ଣଚରଣଙ୍କ ଅମର ଆତ୍ମାର ସଦ୍‌ଗତି କାମନା କରୁଛି ଏବଂ ମୋର ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।



ରାଜେନ୍ଦ୍ରନଗର, କଟକ

# ଦୁଃଖ ରହିଗଲା

**ବିପିନ ବିହାରୀ ବିଶ୍ୱାଳ**

ମୋର ଦୁଃଖ ରହିଗଲା ଯେ, ତାଙ୍କୁ ଶେଷ ଦର୍ଶନ କରିବାର ସୁଯୋଗ ପାଇପାରିଲି ନାହିଁ । ମୃତ୍ୟୁ ଏକ ରହସ୍ୟମୟ ପ୍ରହେଳିକା । ତାହା ଧ୍ରୁବ । ତାକୁ ଟାଳିବାର କ୍ଷମତା କାହାରି ନାହିଁ । ସେଥିପାଇଁ ରାଧାନାଥ ଲେଖିଛନ୍ତି, "ବଡ଼ କ୍ରୂର କାଳ ବଡ଼ ଅବିଶ୍ୱାସୀ / ହାବୋଡ଼ି ଯିବ ସେ ଆଚମ୍ବିତେ ଆସି ।" ବହୁ ବର୍ଷ ପୂର୍ବରୁ ମୋ ବାପା ଚାଲିଯାଇଥିଲେ । ମୋର ଦିଗ୍‌ଦର୍ଶକ ସାରଙ୍କୁ ମୁଁ ମୋର ପିତା ବୋଲି ଗ୍ରହଣ କରି ନେଇଥିଲି । ଚିରଦିନ ପାଇଁ ତାଙ୍କ ପିତୃସ୍ନେହରୁ ମୁଁ ଏବେ ବଞ୍ଚିତ ହେଲି । ତାଙ୍କ ଭଳି ଛାତ୍ରବତ୍ସଳ, ସ୍ନେହୀଗୁରୁ ବିରଳ । ତାଙ୍କର ସ୍ନେହର 'ବିପିନ' ଡାକ ମୋ ପାଇଁ ଅଶ୍ରୁତ ହୋଇଯିବ । ତାଙ୍କର ପ୍ରତ୍ୟକ୍ଷ ପ୍ରେରଣା ଯୋଗୁଁ ହିଁ ମୁଁ ସାମାନ୍ୟ ଯାହା କିଛି ହୋଇଛି । ସେସବୁ ମୋ ଗୁରୁଙ୍କର ଆଶୀର୍ବାଦ ।

ପୂର୍ବରୁ ଗୁରୁମା' ଚାଲିଯାଇଥିଲେ । କାଳଚକ୍ରରେ ତୁମ ଭାଇଙ୍କୁ ମଧ୍ୟ ଯମ ଛଡ଼ାଇ ନେଇଥିଲା । ଏବେ ସାରଙ୍କ ନେଇଗଲା । ସାରଙ୍କର ଅନେକ ଅଧୁରା ସ୍ୱପ୍ନ ସାକାର କରିବା ଏବେ ତୁମର ଦାୟିତ୍ୱ । ଧୈର୍ଯ୍ୟଧରି ସାହସ ସହକାରେ ଏ ବାରଣ ବିପଦବେଳେ କର୍ମ କରି ଚାଲ, ଈଶ୍ୱର ସହାୟ ହେବେ । ମୁଁ ଈଶ୍ୱରଙ୍କଠାରେ ପ୍ରାର୍ଥନା କରୁଛି ତାଙ୍କ ଅମର ଆତ୍ମାର ସଦ୍‌ଗତି ହେଉ ଓ ସେ ଅମରଧାମରେ ରହି ଆମ୍ଭମାନଙ୍କୁ ଆଶୀର୍ବାଦ କରନ୍ତୁ ।



# କୃଷ୍ଣ ଚରଣ ବେହେରା : ସାର୍ଥକ ଓ ସଫଳ ଜୀବନ

ଗୋବିନ୍ଦ ଚନ୍ଦ୍ର ଚାନ୍ଦ

"ନାଟକ ଲେଖିବା ଓ ନାଟ୍ୟାଭିନୟରୁ ମୁଁ ସାହିତ୍ୟ କର୍ମ ଆରମ୍ଭ କରିଥିଲି । ଗ୍ରାମଫୋନ୍ ରେକର୍ଡ କମ୍ପାନୀରେ 'କାଞ୍ଚି କାବେରୀ' ନାଟକ ଶୁଣି ଶୁଣି ମୁଁ ଗୋଟିଏ ଛୋଟକାଟର 'କାଞ୍ଚି କାବେରୀ' ନାଟକ ଲେଖି ପକାଇଥିଲି ଏବଂ ଆମର ବାଡି ଖଳାରେ ମା' ମାଉସୀଙ୍କର ଶାଢି ସଂଗ୍ରହ କରି ଗୋଟିଏ ମଞ୍ଚ ତିଆରି କରି ସେଥିରେ ତା'ର ଅଭିନୟ କରାଇଥିଲି । ତା'ର ଦର୍ଶକ ଥିଲେ ଗାଁର କେତେକ ସିଙ୍ଗାଣି ନାକା ଲଙ୍ଗଳା ପିଲା ଏବଂ ମୋର ମା' ମାଉସୀମାନେ । ସେ ସ୍ମୃତି ଭୁଲିବାର ନୁହେଁ ।

"ମୁଁ ହାଇସ୍କୁଲରେ ପଢୁଥିଲାବେଳେ ଆଗରପଡାର ସ୍ୱର୍ଗୀୟ ଗଗନ ବିହାରୀ ମହାନ୍ତି ମୋର ଶିକ୍ଷକ ଥିଲେ । ପରେ ସେ କଲେଜରେ ମୋର ଅଧ୍ୟାପକ ମଧ୍ୟ ହୋଇଥିଲେ । ତାଙ୍କରିଠାରୁ ମୁଁ ଲେଖାଲେଖି କରିବାର ପ୍ରେରଣା ପାଇଥିଲି । ସେ ବି ମୋତେ ଶାନ୍ତିନିକେତନରେ ପଢିବା ପାଇଁ ପରାମର୍ଶ ଦେଇଥିଲେ ।

"ସ୍ୱର୍ଗତ ସୁରେନ୍ଦ୍ର ମହାନ୍ତିଙ୍କ ଭଳି କେତେକ ଆଲୋଚକ ମୋ ଗଳ୍ପରେ ରମ୍ୟରଚନା ଓ ପ୍ରବନ୍ଧର ଛାପ ପଡିଛି ବୋଲି କହିଛନ୍ତି । ହୋଇପାରେମୁଁ ବେଶୀ ପରିମାଣରେ ପ୍ରବନ୍ଧ ରମ୍ୟରଚନା ଆଦି ଲେଖିଥିବାରୁ ମୋର ଗଳ୍ପ, ଲିମେରିକ୍ ଆଦି ସର୍ଜନଶୀଳ ଲେଖାରେ ତା'ର ପ୍ରଭାବ ପଡିଥିବ । କିନ୍ତୁ ମୋ ବିଚାରରେ ସର୍ଜନଶୀଳ ସାହିତ୍ୟ ଓ ସମାଲୋଚନାତ୍ମକ ସାହିତ୍ୟ ପରସ୍ପର ବିରୋଧୀ ନୁହଁନ୍ତି ।

"ଭଦ୍ରକ କଲେଜରେ ଇଣ୍ଟରମିଡିଏଟ୍ ପଢୁଥିଲାବେଳେ (୧୯୪୮-୫୦) ପ୍ରଥମେ ମୋଗଲ ତାମସାର ଅଭିନୟ ଦେଖିଲି । ସେ ଅଭିନୟ ଭଦ୍ରକର ବିଭିନ୍ନ ସ୍ଥାନରେ ଯଥା 'ସଂଗଡ, 'କୁଆଁସ', 'ସାହାପୁର', 'ଜାନୁଗଞ୍ଜ' ପ୍ରଭୃତି ଅଞ୍ଚଳରେ ଅଭିନୀତ ହେଉଥିଲା । ବର୍ତ୍ତମାନ ବି ହେଉଛି । ପରେ ଭଦ୍ରକ କଲେଜକୁ କର୍ମସ୍ଥଳ ଭାବେ ବାଛିନେବାରୁ 'ମୋଗଲ

ତାମସା' ବିଷୟରେ କୌତୂହଳୀ ହୋଇ ସେ ବିଷୟରେ ଖୋଜା ଲୋଡା କଲି । ବନ୍ଧୁ କଷ୍ଟରେ ସଂଗତ ଓ ସାହାପୁର ଗ୍ରାମରୁ କିଛି ପାଣ୍ଡୁଲିପି ମିଳିଲା । ଏଠାରେ ସୂଚନାଯୋଗ୍ୟ ଯେ, ସଂଗତ ଗ୍ରାମରେ ମୋଗଲ ତାମସାର ରଚୟିତା ବଂଶୀବଲ୍ଲଭ ଗୋସ୍ୱାମୀ ଜନ୍ମଗ୍ରହଣ କରିଥିଲେ । ମୋଗଲ ତାମସା ସଂଗ୍ରହ କରି ତତ୍କାଳୀନ ତାମସାର ଅଭିନେତାମାନଙ୍କ ଦ୍ୱାରା ପରଖ କରାଇଥିଲି । ୧୯୬୬ ମସିହାରେ ପ୍ରଥମ ଥର ପାଇଁ 'ମୋଗଲ ତାମସା' ମୋ ସଂପାଦନାରେ ଗ୍ରନ୍ଥାକାରରେ ପ୍ରକାଶ ପାଇଥିଲା । ଡକ୍ଟର ହରେକୃଷ୍ଣ ମହତାବ, ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟ, କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ, ପ୍ରଫେସର ପ୍ରହ୍ଲାଦ ପ୍ରଧାନ ପ୍ରମୁଖ ବିଭିନ୍ନ ଗଣ୍ୟମାନ୍ୟ ବ୍ୟକ୍ତି ମୋର ଏ କାର୍ଯ୍ୟକୁ ପସନ୍ଦ କରିଥିଲେ ଏବଂ ନିଜ ନିଜର ମନ୍ତବ୍ୟ ମୋଗଲ ତାମସାରେ ଛାପିବା ପାଇଁ ଦେଇଥିଲେ । ପରେ ଏହା ଆକାଶବାଣୀ, ଦୂରଦର୍ଶନ ଜରିଆରେ ଅଭିନୀତ ହୋଇଥିଲା ଏବଂ ଯୁଗଳ କିଶୋର ପଟ୍ଟନାୟକ ମନ୍ତ୍ରୀ ଥିଲାବେଳେ ଏହାକୁ ଭାରତର ରାଜଧାନୀ ଦିଲ୍ଲୀ, ଆଜମୀର ପ୍ରଭୃତି ସ୍ଥାନରେ ଅଭିନୟ କରାଇଥିଲେ । ଏଥିପାଇଁ ଭୁବନେଶ୍ୱରରେ ଏକ ଅଭିନୟ ସଂସ୍ଥା ଗଢାଯାଇଥିଲା । ଡକ୍ଟର ମନୀନ୍ଦ୍ର ମହାନ୍ତି ପରେ ଆଉ ଛ'ଗୋଟି ତାମସା ଭଦ୍ରକ ଅଞ୍ଚଳରୁ ସଂଗ୍ରହ କରିଛନ୍ତି । ସେଗୁଡ଼ିକୁ ମୋଗଲ ତାମସା ସହିତ ମିଶାଇ ଆମେ ଓଡ଼ିଶା ସାହିତ୍ୟ ଏକାଡେମୀ ପକ୍ଷରୁ ଏକ ସଂକଳନ ପ୍ରକାଶ କରାଇଅଛୁ ।

"ପ୍ରଥମେ ଶାନ୍ତିନିକେତନରେ ପଢୁଥିଲାବେଳେ କଲିକତାରୁ, ସ୍ୱର୍ଗୀୟ ହୃଦାନନ୍ଦ ମଲ୍ଲିକଙ୍କ ସଂପାଦନାରେ ପ୍ରକାଶିତ 'ଅଗ୍ରଣୀ' ଗଳ୍ପ ପତ୍ରିକାର ସଂପାଦନା କାର୍ଯ୍ୟରେ ସହାୟତା କରୁଥିଲି । ସେହିଠାରୁ 'କବିତା' ନାମକ ଏକ ସ୍ୱତନ୍ତ୍ର 'କବିତା'ର ପତ୍ରିକା କବି ଦୁର୍ଗାଚରଣ ପରିଡା ଏବଂ ମୋର ମିଳିତ ସଂପାଦନାରେ ପ୍ରକାଶ ପାଇଥିଲା, ପରେ ୧୯୫୫ ମସିହାରେ 'ତଗର' ପତ୍ରିକାର ସଂପାଦନା କାର୍ଯ୍ୟରେ ନିତ୍ୟାନନ୍ଦ ମହାପାତ୍ରଙ୍କୁ ସହଯୋଗ ଦେଇଥିଲି । ସେହିଦିନଠାରୁ ବହୁ ସାହିତ୍ୟ ପତ୍ରିକାର ସଂପାଦନା ସହିତ ମୁଁ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବେ ଜଡିତ । ୧୯୮୦ ମସିହାରୁ ଓଡ଼ିଆ ଗବେଷଣା ପରିଷଦର ମୁଖପତ୍ର 'ଏଷଣା' ପତ୍ରିକାର ସଂପାଦନା କାର୍ଯ୍ୟରେ ଲାଗିଛି ।

ଏମିତି ସାଧନାମୟ ଜୀବନର ଅନେକ କଥା କହିଛନ୍ତି ଡକ୍ଟର କୃଷ୍ଣ ଚରଣ ବେହେରା । ଭିନ୍ନ ଭିନ୍ନ ଅବକାଶରେ ଏକାଧିକବାର ତାଙ୍କର ସାକ୍ଷାତ୍କାର ପ୍ରସ୍ତୁତ କରିବାର ସୁଯୋଗ ମିଳିଛି । ଖୁବ୍ ଶ୍ରଦ୍ଧାର ସହ ସେ ଏଥିପାଇଁ ସହଯୋଗ କରିଛନ୍ତି । ତାଙ୍କ ବକ୍ତବ୍ୟ ବେଶ୍ ମାପଚୁପ୍ । ନିଜକୁ ବଢ଼େଇ କରି କହିବାର ସାମାନ୍ୟତମ

ଉପକ୍ରମ ନଥିଲା । ଗୋଟିଏ ସାକ୍ଷାତ୍‌କାରରେ ଅନ୍ୟମାନଙ୍କୁ ପଚାରୁଥିବା ପ୍ରଶ୍ନଟିଏ ପଚାରିଥିଲି । ସେ ପ୍ରଶ୍ନଟି ଥିଲା "ପ୍ରଶ୍ନଟିଏ ନାହିଁ । କିନ୍ତୁ ଉତ୍ତରଟି ଅଛି । ସେ ଉତ୍ତରଟି କ'ଣ ?" ଏହାର ଉତ୍ତରରେ ସେ କହିଥିଲେ "ଜୀବନକୁ ସାର୍ଥକ ଓ ସଫଳ ଭାବେ ବଞ୍ଚିବା ।" ପ୍ରକୃତରେ ସାର୍ଥକ ଓ ସଫଳ ଜୀବନ ବଞ୍ଚିଥିଲେ ସେ । ସୁଖଦୁଃଖକୁ ଏକାକାର କରି ଜୀବନ ସଂଗ୍ରାମରେ ଅଗ୍ରସର ହେଉଥିଲେ । ବଞ୍ଚିଥିଲେ ଜଣେ ସାଧକର ଜୀବନ । ସାରସ୍ୱତ କାର୍ଯ୍ୟରେ ଜଣେ କେତେ ନିଷ୍ଠାପର ହୋଇପାରନ୍ତି; ତାହାର ଦୃଷ୍ଟାନ୍ତ ଥିଲେ ଡକ୍ଟର ବେହେରା । ପରିଣତ ବୟସରେ ମଧ୍ୟ ଏଥିରୁ ବିରତ ହୋଇନଥିଲେ ।

ପ୍ରଥମ ଦେଖାରେ ହସଟିଏ ଖେଳିଯିବ ତାଙ୍କ ଓଠରେ । ଜିଜ୍ଞାସୁ ମନ ନେଇ ଆସିବାର କାରଣ ସେ ପଚାରିବେ । ତା'ପରେ ଲେଖାଲେଖି କ'ଣ ଚାଲିଛି....ଇତ୍ୟାଦି ଇତ୍ୟାଦି ।

ଏବେ ସେ ନାହାଁନ୍ତି । ଆତ୍ମୀୟତା ଭରା କଥା କେହି ପଦ ଆଉ ଶୁଣିବାକୁ ମିଳିବ ନାହିଁ । ଏକାଠି ବସିବା ଭିତରେ ଅତୀତର କଥା କିଛି କହିବାର ଅବକାଶ ମିଳିବ ନାହିଁ । ଆଉ କଥାବାର୍ତ୍ତା ଭିତରେ 'ଏଷଣା' ପତ୍ରିକାରୁ ଖଣ୍ଡେ ଆଉ ବଢ଼ାଇ ଦେବ କିଏ । ନୂଆ ବହିଟେ ବାହାରିଲେ କିଏ କହିବେ, "ପ୍ରକାଶିତ ବହିରୁ ଖଣ୍ଡେ ଆଣିବ, ତା'ର ଆଲୋଚନା 'ଏଷଣା'ରେ କରିବା ।" ଆଗକୁ ବଢ଼ିବାକୁ ବାଟ ଦେଖାଉଥିବା ଆପଣାର ମଣିଷ ଆଉ ନାହାଁନ୍ତି । ସେ ହିଁ ଥିଲେ ଦୃଷ୍ଟାନ୍ତ ଅନେକଙ୍କ ପାଇଁ । ଓଡ଼ିଆ ଗବେଷଣା କ୍ଷେତ୍ରରେ ଗୁରୁ ଦ୍ରୋଣାଚାର୍ଯ୍ୟ । ତାଙ୍କ ପରଲୋକ ପୂରଣ ହେବା ଆଦୌ ସମ୍ଭବପର ନୁହେଁ ।



ବିର୍‌ଲା ଭବନ, ଆଦିତ୍ୟନଗର
ପୋତାପୋଖରୀ, କଟକ-୪

# ଶ୍ରଦ୍ଧାଞ୍ଜଳି : ଏଷଣାରସୂତ୍ରଧରଙ୍କୁ ....

ଦୀପକ କୁମାର ମିଶ୍ର

ଗୁରୁଣାଂଗୁରୁ ପୁଣ୍ୟାତ୍ମା ଓଡ଼ିଆ ଭାଷା-ସାହିତ୍ୟର କୀର୍ତ୍ତିମାନ ଯଶସ୍ୱୀ ସ୍ରଷ୍ଟା ପ୍ରାତଃସ୍ମରଣୀୟ ପ୍ରଫେସର କୃଷ୍ଣଚରଣ ବେହେରାଙ୍କ ସ୍ୱର୍ଗବାସ ପ୍ରକୃତିର ସତ୍ୟ ସନ୍ଦେଶ ହେଲେ ମଧ୍ୟ ଆଜିର ପରିପ୍ରେକ୍ଷୀରେ ଓଡ଼ିଆ ଭାଷାସାହିତ୍ୟର ସଙ୍କଟସ୍ଥିତିରେ ଏହି ମହାନ ବିଦ୍ୱାନଙ୍କ ଅବର୍ତ୍ତମାନ ଆମ ସମସ୍ତଙ୍କ ପାଇଁ ଦୁଃଖଦ ଏଲିଜିଟିଏ ସୃଷ୍ଟି କରିଛି, ଏଥିରେ ସନ୍ଦେହ ନାହିଁ । ଓଡ଼ିଆ ପାଠ୍ୟପୁସ୍ତକ, ପାଠାଗାରସମୂହ, ସଭା ସଂପାନ, ବିଦ୍ୟାର ମନ୍ଥନ, ସର୍ବୋପରି ଓଡ଼ିଆ ଭାବେ ଆମର ପରିଚୟକୁ ବିଭିନ୍ନ ବିଶ୍ୱବିଦ୍ୟାଳୟରେ ସାବ୍ୟସ୍ତ କଲାବେଳେ ମୁଁ ଏହି ମହାଜନଙ୍କ ଅମାପ ସାଧାନାର ପ୍ରସାରଣରେ ଯଥେଷ୍ଟ ମାତ୍ରାରେ ଗର୍ବିତ ହୋଇଛି ଏବଂ ସାର୍‌ଙ୍କ ସୃଷ୍ଟିସ୍ୱାକ୍ଷର ମଧ୍ୟ ଦେଇ ଓଡ଼ିଆ ଭାଷାସାହିତ୍ୟର ବିଭିନ୍ନ ବିଭବର ମୌଳିକ ରୂପକୁ ସନ୍ଦର୍ଶନ କରିଛି । ପ୍ରଫେସର କୃଷ୍ଣଚରଣ ବେହେରାଙ୍କୁ ଥରେ ପଢ଼ିଲେ, ଥରେ ବୁଝିନେଲେ ସାହିତ୍ୟ ସମାଲୋଚନାର ଗଭୀର ମନ୍ଥନର ସ୍ପନ୍ଦନକୁ ଜଣେ ସଚ୍ଚା ଛାତ୍ର ନିଜ ଭିତରେ ଅନୁଭବ କରିବ ଏଥିରେ ସନ୍ଦେହ ନାହିଁ । ଏହାସତ୍ୟ ଯେ ସଂପ୍ରତି ଉପଲବ୍ଧ ହେଉଥିବା ବିଭିନ୍ନ ସମାଲୋଚନା ସାହିତ୍ୟର ମୂଲ୍ୟାଙ୍କନ କଲେ ଯେଉଁ ତାରତମ୍ୟଟି ମନରେ ବିମର୍ଷ ଆଣେ ତାହାର ମୁଖ୍ୟ କାରଣ ହେଉଛି ସ୍ୱର୍ଗତଃ କୃଷ୍ଣଚରଣ ବେହେରାଙ୍କ ମାର୍ଗଦର୍ଶନ ପ୍ରତି ଆମେ ଯଥେଷ୍ଟ ଧ୍ୟାନ ଦେଇପାରିନହାଁନ୍ତି । ସାର୍ ଥିଲେ ନିର୍ମାଣର ସୂତ୍ରଧର, କଠୋର ସାଧନାର ପୁରୋଧା, ଶୈକ୍ଷିକ ଜଗତର ଜ୍ୟୋତିଷ୍କ, ଅସପତ୍ନ ବ୍ୟକ୍ତିତ୍ୱ, ମାନବବାଦର ପ୍ରଚାରକ, ଛାତ୍ରବତ୍ସଳ, ଭାଷା ଓ ସାହିତ୍ୟପ୍ରେମୀ ଜଣେ ଭଗିରଥ ।

ପ୍ରଜ୍ଞା ଓ ଆଲୋକର ସଂଧାନରେ, ସୁସ୍ଥ ଓ ନିରାମୟଜୀବନ ଧାରାରେ, ଶିକ୍ଷା, ଗବେଷଣା ତଥା ସୃଜନ ଛନ୍ଦରେ ବିଳସିତ ସାରଙ୍କ ଜୀବନବ୍ୟାପୀ ସାତ୍ତ୍ୱିକ ଯାତ୍ରାକୁ ମୃତ୍ୟୁ କେବେ ଅବଦମିତ କରିପାରିବ ନାହିଁ । ଦେଶ ପାଇଁ, ଜାତି ପାଇଁ ଜ୍ଞାନର ଦୀପ

ଜାଳିଥିବା 'ଏଷଣା'ର ସ୍ରଷ୍ଟା କୃଷ୍ଣଚରଣଙ୍କର ପବିତ୍ର ଆତ୍ମାର ସ୍ୱରଝଙ୍କାର ଆଜିବି ସେ ଗଢ଼ିଥିବା ଲକ୍ଷ ଲକ୍ଷ ଛାତ୍ରଛାତ୍ରୀଙ୍କ ହୃଦୟରେ ଅଲିଭା ସ୍ୱାକ୍ଷର ତଥା ଅମ୍ଳାନ ବିଭୂତି ହୋଇ ଶୋଭା ପାଉଛି । ପଥ ଏକ ପାଥେୟ ଅନେକ ନ୍ୟାୟରେ ଏ ବିଭୂତି ଆଜି ଆମ ପାଇଁ ସାଇତା ସମ୍ପତ୍ତି ହୋଇ ରହିବ ଏଥିରେ ସନ୍ଦେହ ନାହିଁ । ସ୍ମୃତିବିସ୍ମୃତିର ଜୀବନକକ୍ଷର ଏହି ମହାନ ଆତ୍ମାଙ୍କୁ ଆଜି ହୃଦୟର କଷଟି ପଥରରୁ ମୁଁ କୋଟି କୋଟି ପ୍ରଣାମ ପ୍ରଦାନ କରିବା ସହିତ ମୋ ନେତ୍ରର ଦୁଇଟୋପା ଲୋତକ ବର୍ଷାରେ ତାଙ୍କ ପାଦ ପ୍ରକ୍ଷାଳନ କରି ନିଜକୁ ଧନ୍ୟ ମନେ କରୁଛି ।



ଅଧ୍ୟାପକ, ଓଡ଼ିଆ ବିଭାଗ
ସୁଣଭଦ୍ରା ମହାବିଦ୍ୟାଳୟ, ବିତନା

# ଦିବ୍ୟ ପଥର ଦିଶାରୀ

## ବନପ୍ରଭା ପରିଡ଼ା

ସ୍ଥିତପ୍ରଜ୍ଞ ତପସ୍ୱୀ, ବାଣୀପୁତ୍ର, ସ୍ୱନାମଧନ୍ୟ ସାରସ୍ୱତ ସାଧକ ଡକ୍ଟର କୃଷ୍ଣ ଚରଣ ବେହେରା ଥିଲେ ବାସ୍ତବରେ ମୋ ପାଇଁ Friend, Philosopher and Guide । ମୁଁ କେବଳ ତାଙ୍କର ଛାତ୍ରୀ ନୁହେଁ କହିବାକୁ ଗଲେ ପୁତ୍ରୀ ଠାରୁ ବି ଅଧିକ ଆପଣାର । ରେଭେନ୍‌ସାରେ ପଢ଼ିଲାବେଳେ ମୋର ସାହିତ୍ୟ ପ୍ରତି ଦୁର୍ବାର ଆକର୍ଷଣ ଓ ସୁଲଳିତ କଣ୍ଠସ୍ୱରକୁ ଆଧାର କରି ସେ ପ୍ରଥମେ ମୋତେ ଆକଶବାଣୀରେ କଣ୍ଠ ପରୀକ୍ଷା ଦେବା ପାଇଁ ପ୍ରୋତ୍ସାହିତ କରିଥିଲେ । ତାଙ୍କର ଆଶୀର୍ବାଦ ଓ ପ୍ରେରଣାକୁ ପାଥେୟ କରି ମୁଁ ଆକାଶବାଣୀର ଯୁବବାଣୀ ବିଭାଗରେ ସାମୟିକ ଉପସ୍ଥାପିକା ଭାବରେ ୧୯୯୧ ମସିହାରେ ସଫଳ ସ୍ୱୀକୃତି ପାଇଲି । ସର୍ଜନା କ୍ଷେତ୍ରରେ ମୋ ପ୍ରତି ଥିବା ତାଙ୍କର ଗଭୀର ଆତ୍ମବିଶ୍ୱାସକୁ ପ୍ରମାଣିତ କରି ୧୯୯୩ ମସିହାରେ ଆକାଶବାଣୀ କଟକ ଯୁବବାଣୀ ବିଭାଗ ତରଫରୁ ସର୍ବଭାରତୀୟ ଯୁବ ପୁରସ୍କାର ପ୍ରାପ୍ତ ହେଲି । ଯାହକି କଟକ ଆକାଶବାଣୀ ଯୁବବାଣୀ ବିଭାଗ ପ୍ରଥମଥର ପାଇଁ ଏହି ଜାତୀୟ ସମ୍ମାନ ଲାଭ କରିବାର ଗୌରବ ଅର୍ଜନ କରିଥିଲା । ତାଙ୍କ ତତ୍ତ୍ୱାବଧାନରେ 'ଓଡ଼ିଆ କାବ୍ୟ ସାହିତ୍ୟରେ ଛନ୍ଦ' ସଂପର୍କରେ ଗବେଷଣା କରିବା ସମୟରେ ନାନାବି ତଥ୍ୟ ବିଶ୍ଳେଷଣ ସତ୍ତ୍ୱେ ମୁଁ ଅସନ୍ତୁଷ୍ଟ ଥିବା ସମୟରେ ସେ ସାନ୍ତ୍ୱନା ଦେଇ କହନ୍ତି 'ଏକାବେଳକେ କୋଣାର୍କଟାଏ ଗଢ଼ି ନପାରିଲେ ଚିତ୍ରିତ ଶିଳା ଖଣ୍ଡେ ତ ଗଢ଼ !' ବାସ୍ତବରେ ସେ ଶିଳ୍ପ ସୌନ୍ଦର୍ଯ୍ୟ ଦେଖାଇ ବିମୋହିତ କରିବା ବ୍ୟକ୍ତି କେବଳ ନୁହନ୍ତି ବରଂ ଗଢ଼ିପାରିବାର ଶକ୍ତି ସଂଚରଣ କରାଇ ସମର୍ଥ ମଣିଷଟିଏ ଗଢ଼ି ଦେବାର ବିନ୍ଧାଣୀ । ମୋର ଶିକ୍ଷା, ଗବେଷଣା, ଲେଖାଲେଖି ସବୁକିଛିର ପଛରେ ବୋଧହୁଏ ସେହି ପ୍ରଜ୍ଞାପୁରୁଷଙ୍କର ପ୍ରଚ୍ଛଦ ହାତର ଆଶିଷ ଥିଲା । ସେହି ଛାୟାସ୍ନିଗ୍ଧ ମହୀରୂହ ତଳେ ନିରୀହ ବନପକ୍ଷୀଟିଏ ପରି କୁହୁଗାନରେ ମୁଁ ବିଭୋର ଥିଲି । ଆଜି

ଯେତେବେଳେ ସେ ଗଛର ଛାଇ ନାହିଁ ମୁଁ ନିଜକୁ ନିଃସ୍ୱ ମନେ କରୁଛି । ଖାଲି ମୋ ପାଇଁ ନୁହେଁ, ପ୍ରତ୍ୟେକଟି ଛାତ୍ରଙ୍କ ପାଇଁ ସେ ଥିଲେ ଜଣେ ଯଥାର୍ଥ ମାର୍ଗଦର୍ଶକ ଗୁରୁ । ତାଙ୍କ ବାସଗୃହ କେଉଁ ଗୁରୁକୁଳ ଆଶ୍ରମଠୁ କମ୍ ନୁହଁ । ସେହି ଥାକଥାକ ବହିର ସମ୍ଭାଷଣ, ସେହି ନିରଳସ ଜୀବନର କର୍ମ ପ୍ରେରଣା, ଆଲୋଚନାର ଦିଗନ୍ତ ବିସ୍ତାରୀ ପଟ୍ଟଭୂମି ଜଣେ ଜିଜ୍ଞାସୁକୁ ଆଲୋକ ପଥର ସନ୍ଧାନ ଦିଏ । ଡ୍ରଇଁରୁମ୍ ଟପି ଦୁଆରବନ୍ଧ ପାଖରେ ଚାହିଁଲେ ଦିଶନ୍ତି ଜଣେ କଳ୍ପଲୋକର ସନ୍ଧାନୀ, ଯିଏକି ନିବିଷ୍ଟ ଥା'ନ୍ତି ଲେଖାପଢ଼ାରେ, ପାଖକୁ ଯାଇ ପ୍ରଣାମ କଲେ ବର୍ଷିଯାଏ ଆଶୀର୍ବାଦର ଅଭୟ ମୁଦ୍ରା । ପଚାରି ବୁଝନ୍ତି ଭଲମନ୍ଦ, ସାହିତ୍ୟ ସେବା ସଂପର୍କରେ । ତାଙ୍କର ପଦିଏ ହସ ହସ କଥା ମନରେ ଭରଦିଏ ଗିରିଲଂଘିବାର ଉତ୍କଣ୍ଠା । ଜୀବନର ସାୟାହ୍ନରେ ବି ସେ କଲମ ଧରି ସଂଶୋଧନ କରୁଥାନ୍ତି ଛାତ୍ରମାନଙ୍କର ଲେଖା । ମୃତ୍ୟୁ ସହିତ ସଂଘର୍ଷ କରୁଥିଲା ବେଳେ ବି ପଚାରୁଥାନ୍ତି ପ୍ରକାଶନ ପୁସ୍ତକ ସଂପର୍କରେ । ଅଦ୍ଭୁତ ସେ ଯୋଗଜନ୍ମା, ସଂସାରୀ ହୋଇ ମଧ ସେ ଜଣେ ଯୋଗୀ । ସମୟ ସତେ ଅବା ମଥାନତ କରିଛି ତାଙ୍କ କର୍ମ ତତ୍ପରତା ପାଖରେ । ତାଙ୍କରି ନିଷ୍ଠା ଆମ ସମସ୍ତଙ୍କର ଧ୍ୟେୟ ହେଉ । ତାଙ୍କ ଅବର୍ତ୍ତମାନରେ ଆମ ଆଖିର ଲୁହ ଦିବାଲୋକ ପାଇଁ ତାଙ୍କ ପଥ ପରିଷ୍କାର କରୁ ।



ଅଧ୍ୟାପିକା, ଓଡ଼ିଆ
ନାରାୟଣ ବୀରବର ସାମନ୍ତ ମହାବିଦ୍ୟାଳୟ
ଝିମାଣୀ, କୁଜଙ୍ଗ, ଜଗତ୍‌ସିଂହପୁର

# ଆମ ଗାଁ'ର ମଉଡ଼ମଣି

## ସୁବ୍ରତ ବଳ

ମୋର ସାର୍‌ଙ୍କ ସହ କେବେ ଭେଟ ହୋଇନି କି ସେ ମୋର ଶିକ୍ଷକ ବି ନୁହନ୍ତି । ସମସ୍ତେ ସାର୍ କହୁଥିବାରୁ ମୁଁ ମଧ୍ୟ ତାଙ୍କୁ ସାର୍ ବୋଲି ଡାକୁଛି । ସାର୍ ଆମରି ଗାଁ ଅର୍ଜ୍ଜୁନବିଂଧାର ଲୋକ । ତାଙ୍କ ଘର କୁମ୍ଭାର ସାହିରେ । ଭଦ୍ରକ-ଚାନ୍ଦବାଲି ରାସ୍ତାର ପୀରହାଟ ବଜାରର ପୂର୍ବ ଛକ ହେଉଛି ବିନ୍ଧା ଛକ । ଆମେ ସେଇଠୁ ଓହ୍ଲାଇ ତାଙ୍କରି ଘର ବାଟ ଦେଇ ଆମ ଘରକୁ ଯାଉ । ତାଙ୍କର ଦୁଇ ଦାଦାପୁଅଭାଇ ବଙ୍କା ବେହେରା ଓ ଅଶୋକ ବେହେରା ସବୁବେଳେ ଗାଁ'ରେ ରହନ୍ତି । ସେମାନଙ୍କୁ ମୁଁ ଭଲ ଭାବରେ ଜାଣେ । କିନ୍ତୁ ସାର୍ ମୋତେ ଚିହ୍ନି ନାହାନ୍ତି । ତାଙ୍କ ଭାଇଙ୍କର ଗୋଟେ ଚେଳରାତି ଦୋକାନ ଥିଲା । ଆମେ ସେଠୁ ସଉଦା କିଣୁ । ମୁଁ ବୋଧେ ସେତେବେଳେ ମେଟ୍ରିକ୍ ପାଶ୍ କରି ପ୍ଲସ୍‌ଟୁରେ ନାଁ ଲେଖାଇଥାଏ । ଥରେ ସଂଧ୍ୟାରେ ଆମ ଛକ ପାଖରେ ବୁଲୁଥାଏ । ହଠାତ୍ ଗୋଟେ ଧଳା ଆମ୍ବାସାଡ଼ାର କାର ଆମ ଛକ ଆଡ଼କୁ ମୁହାଁଇଲା । ତାହା ସେହି ଦୋକାନ ସାମନାରେ କିଛି ସମୟ ଅଟକି ରହିଲା । ମୁଁ ସେତେବେଳେ ଦୋକାନରୁ ସଉଦା କିଣୁଥାଏ । ତାଙ୍କ ଭାଇ ଦୋକାନରୁ ଉଠି ହଠାତ୍ କାର୍ ପାଖକୁ ଚାଲିଆସିଲେ । ଅଳ୍ପ କିଛି ସମୟ କଥାବାର୍ତ୍ତା ହେବା ପରେ କାର ପୁଣି ଆଗକୁ ଚାଲିଗଲା ।

ସେ ଫେରିଆସିବା ପରେ ମୁଁ ତାଙ୍କୁ ପଚାରିଲି, "କାର୍‌ରେ କିଏ ଆସିଥିଲେ କି ? ଆପଣ କାହା ସହିତ କଥା ହେଉଥିଲେ ?" ସେ କହିଲେ, "ମୋ ଭାଇ । ସେ କଟକରେ ରହନ୍ତି । ତାଙ୍କ ନାଆଁ କୃଷ୍ଣଚରଣ ବେହେରା । ସେ ରେଭେନ୍ସାର ଅଧ୍ୟାପକ ଅଛନ୍ତି ।" ରେଭେନ୍ସା ଭଳି ଏକ ପୁରାତନ ମହାବିଦ୍ୟାଳୟରେ ଆମ ଗାଁ'ର ଜଣେ ଲୋକ ଅଧ୍ୟାପକ ଅଛନ୍ତି ଶୁଣି ମନଟା ବହୁତ ଖୁସି ହୋଇଗଲା । ମନେ ମନେ ତାଙ୍କୁ ସମ୍ମାନ ଜଣାଇଲି । କିନ୍ତୁ ତାଙ୍କୁ ଦେଖିବାର ସୁଯୋଗ ମିଳିଲା ନାହିଁ ।

ମୁଁ ଭୁବନେଶ୍ୱରରେ 'ଟାଇମ୍‌ପାସ୍' ପ୍ରକାଶନୀ ସଂସ୍ଥାରେ କାମ କରୁଥିବା ବେଳେ 'ଲଘୁପଂକ' ନାମରେ ଗୋଟେ ପାଣ୍ଡୁଲିପି ବହି ହେବାପାଇଁ ଆସିଲା । ତାହା କଂପୋଜ୍ କରୁଥିବା ବେଳେ ଲେଖକଙ୍କ ନାଁ କୃଷ୍ଣଚରଣ ବେହେରା ଦେଖି ସେ ଆମ ଗାଁ'ର ଲୋକ କି ବୋଲି ଭାଇ(ସରୋଜ ବଳ)ଙ୍କୁ ପଚାରିଲି ଏବଂ ନିଶ୍ଚିତ ହେଲି ଯେ ସେ ଆମ ଗାଁ'ର କୃଷ୍ଣ ସାର୍ । ପୂର୍ବରୁ ଜଣେ ଅଧ୍ୟାପକ ବୋଲି ଜାଣିଥିଲି ଏବେ ସେ ଜଣେ ବଡ଼ ସାହିତ୍ୟିକ ବୋଲି ତାଙ୍କଠାରୁ ଶୁଣିଲି ।

ମୋର ଜଣେ ସଂଗୀତଗୁରୁଙ୍କ ଘରେ 'କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ' ବହିଟିଏ ଦେଖିଲି । ସେଥିରେ ସଂପାଦନାରେ ସାର୍‌ଙ୍କ ନାଁ ଲେଖା ଥିବାର ଦେଖି ପୁଣିଥରେ ଉତ୍ସାହିତ ହେଲି । ବହିଟିରେ ଚମ୍ପୂଗୁଡ଼ିକରେ ବ୍ୟବହୃତ କଠିନ ଶବ୍ଦର ଅର୍ଥ ସହିତ ସେ ସବୁର ବ୍ୟାଖ୍ୟା ପ୍ରାଞ୍ଜଳ ଭାବରେ ଦିଆଯାଇଥିଲା । ବହିଟିକୁ କିଣିବାକୁ ଇଚ୍ଛାହେଲା । ଭାବିଲି ସାର୍‌ଙ୍କ ଘରକୁ ଯାଇ ବହିଟି କିଣି ଆଣିବି । କିନ୍ତୁ ବହିମେଳାରେ ତାହା ମିଳିଯିବାରୁ ସେଠାରୁ କିଣିଆଣିଲି । କିନ୍ତୁ ସାର୍‌ଙ୍କ ଘରକୁ ଯାଇପାରିଲି ନାହିଁ କି ତାଙ୍କ ସହ ଭେଟ ବି ହୋଇପାରିଲା ନାହିଁ ।

ଅନ୍ୟମାନଙ୍କଠାରୁ ଶୁଣିଛି, ସାର୍ ତାଙ୍କ କାମରେ ଖୁବ୍ ନିଷ୍ଠାପର । ଛୋଟିଆ କାମଟିକୁ ମଧ୍ୟ ଅତି ଯତ୍ନର ସହିତ ଧ୍ୟାନ ଦେଇ କରନ୍ତି । ତାଙ୍କର ସବୁଠୁ ଗୋଟିଏ ବଡ଼ ଗୁଣ ହେଲା ସେ ତାଙ୍କ ଅଂଚଳ ଲୋକଙ୍କୁ ଖୁବ୍ ଭଲ ପାଆନ୍ତି । ସେମାନଙ୍କର ଉନ୍ନତି ଦେଖିଲେ ବହୁତ ଖୁସି ହୁଅନ୍ତି । ସେହି ନ୍ୟାୟରେ ଭାଇଙ୍କ ସହ ତାଙ୍କର ଭଲ ବନ୍ଧୁତା । ଏପରି ପରସୁଖରେ ସୁଖୀ ହେବା ମାନସିକତା ଆଜିର ସମାଜରେ ଖୁବ୍ ବିରଳ । ତାଙ୍କ ଭଳି ଜଣେ ସାହିତ୍ୟ, ସଂସ୍କୃତିରୁଚିଶୀଳ ବ୍ୟକ୍ତିତ୍ୱ ଆମ ଗାଁ କାହିଁକି ଆମ ଅଂଚଳରେ ଦୁର୍ଲଭ । ଗାଁ କନିଆଁ ସିଂଘାଣି ନାକି ପରି ସେ ଉପଯୁକ୍ତ ସମ୍ମାନ ଆମ ଅଂଚଳବାସୀଙ୍କଠାରୁ ପାଇନାହାନ୍ତି । କିନ୍ତୁ ସାରା ଓଡ଼ିଶାରେ ତାଙ୍କ ଅଗଣିତ ଛାତ୍ରଛାତ୍ରୀ, ସାହିତ୍ୟବନ୍ଧୁ, ଶୁଭେଚ୍ଛୁଙ୍କଠାରୁ ଯଥେଷ୍ଟ ଶ୍ରଦ୍ଧା ଓ ସମ୍ମାନ ପାଇଛନ୍ତି ।

ସେଦିନ ଆମ ଅଫିସ୍‌ର ସାର୍‌ମାନଙ୍କର ଟୁପୁରାଟାପୁରୁ ଶବ୍ଦ ଏବଂ କାହାକୁ ଦେଖାକରିବାକୁ ଯିବାର ପ୍ରସ୍ତୁତି ଦେଖି ଜାଣିବାକୁ ପାଇଲି ଯେ କୃଷ୍ଣ ସାର୍ ଆଉ ନାହାନ୍ତି । ଆପୋଲୋରେ ଚିକିତ୍ସିତ ହେଉଥିବା ସମୟରେ ତାଙ୍କର ଦେହାନ୍ତ ହୋଇଯାଇଛି । ମୋର ବି ତାଙ୍କ ସହିତ ସାର୍‌ଙ୍କୁ ଦେଖି ଯିବାକୁ ବହୁତ ଇଚ୍ଛା ହେଲା । କିନ୍ତୁ ତାହା ବି ସମ୍ଭବ ହେଲା ନାହିଁ । କେହି ଜଣେ କହିଦେଲେ ମୃତ୍ୟୁ ପରେ ନିର୍ଜୀବ ଶରୀରରେ ଆଉ କି ପ୍ରତିକ୍ରିୟା ଥାଏ । ମନକଥା ମନରେ ରହିଗଲା । •

# ଶ୍ରଦ୍ଧାଞ୍ଜଳି

## ରାଖାଲ ଚନ୍ଦ୍ର ଦାସ

ଏହି ମିତବାକ୍, କୃଶତନୁ, ସରଳ ଚିତ୍ତ ବ୍ୟକ୍ତିଙ୍କ ସହ କେବେ ପରିଚୟ ହେଲା ମୋର ସ୍ମରଣ ନାହିଁ । ମାତ୍ର ଘନିଷ୍ଠତା ବୃଦ୍ଧି ପାଇବା ପରେ ଜାଣିଲି ଯେ ଏହି ବ୍ୟକ୍ତି ପ୍ରଚାର ବିମୁଖ ଥିଲେ ହେଁ ସ୍ମିତ ପ୍ରଜ୍ଞର ବିଶେଷ ଗୁଣର ଅଧିକାରୀ ଥିଲେ ସେ । ବିଭିନ୍ନ ପ୍ରକାର ଝଞ୍ଜାର ସମ୍ମୁଖୀନ ହୋଇଥିଲେ । ମାତ୍ର ବିଚଳିତ ହୋଇନାହାନ୍ତି । ଭଦ୍ରକ ମହାବିଦ୍ୟାଳୟରେ ନିଯୁକ୍ତ ଥିବା ସମୟରେ ତାଙ୍କର ଏକ କ୍ଷୁଦ୍ର ଗଳ୍ପ ତତ୍‌କାଳୀନ କଲେଜ ପରିଚାଳନାର ସଭ୍ୟଙ୍କୁ ଏପରି ବିଭ୍ରତ କରିଥିଲା ଯେ ସେମାନେ ଏହି ଲେଖକଙ୍କ ବିରୁଦ୍ଧେ କଠିନ କାର୍ଯ୍ୟାନୁଷ୍ଠାନ କରିବାପାଇଁ ଦୃଢ଼ବଦ୍ଧ ହୋଇଥିଲେ । ପୁନରାୟ ଏହି ମହାବିଦ୍ୟାଳୟରେ ଏକ ଜଟିଳ ପରିସ୍ଥିତିରେ ତାଙ୍କୁ ଅଧ୍ୟକ୍ଷ ପଦରେ ରହିବାକୁ ପଡିଥିଲା । ଅସହିଷ୍ଣୁ ଦଳ ତାଙ୍କୁ ନାନା ପ୍ରକାରେ ବିବ୍ରତ କରୁଥିଲେ ଓ ତାଙ୍କୁ ସେହି ପଦରୁ ବିଚ୍ୟୁତ କରିବା ପାଇଁ ବଦ୍ଧପରିକର ଥିଲେ । କୃଷ୍ଣ ବାବୁଙ୍କ ସେ ସମୟରେ ଖୁବ ନିକଟରୁ ଦେଖିବାର ସୁଯୋଗ ପାଇଥିଲି । ତାଙ୍କର ଆତ୍ମ ବିଶ୍ୱାସ ଓ ମାନସିକ ଦୃଢ଼ତାର ପରିଚୟ ମୁଁ ପାଇଛି । ଶାନ୍ତ ଓ ଅଶାନ୍ତ ପରିସ୍ଥିତିରେ ସେ ଥିଲେ ଅବିଚଳିତ । ଭାଷା ଥିଲା ନମ୍ର ଓ କ୍ରୋଧ ବିମୁକ୍ତ । ମୋର ବିଭିନ୍ନ କାର୍ଯ୍ୟକ୍ରମରେ ତାଙ୍କର ସହଯୋଗିତା ଲାଭ କରିଛି । ତାଙ୍କର ସଖ୍ୟତା ପ୍ରାପ୍ତି ମୋର ଦୁର୍ଲଭ ସୌଭାଗ୍ୟ ଥିଲା କହିଲେ ଅତ୍ୟୁକ୍ତି ହେବନାହିଁ । 'ଏଷଣା' ପତ୍ରିକା ଉପହାର ସର୍ବଦା ପ୍ରାପ୍ତ ହୋଇଛି । ଫୋନରେ ମୋର କୁଶଳ ବାର୍ତ୍ତା ଗ୍ରହଣ କରିବାରେ ହେଳା ନଥିଲା । ତାଙ୍କର ତିରୋଭାବ ମୋ ପାଇଁ ଏକ ଅପୂରଣୀୟ କ୍ଷତି ।



# ପ୍ରେମ ପୁରୁଷଙ୍କୁ ପ୍ରଣାମ

## ପବିତ୍ର ପାଣିଗ୍ରାହୀ

ଡଃ କୃଷ୍ଣଚରଣ ବେହେରା ନାଁଟି ଓଡିଆ ସାହିତ୍ୟର ଏକ ସଶ୍ରଦ୍ଧ ଉଚ୍ଚାରଣ । ଅବିଭକ୍ତ ବାଲେଶ୍ୱର ତଥା ଏବର ଭଦ୍ରକ ଜିଲ୍ଲା ଅର୍ନ୍ତଗତ ତିହିଡି ବ୍ଲକର ଅର୍ଜୁନବିଂଧା ଗ୍ରାମରେ ଭୂମିଷ୍ଠ ସାର୍‌ଙ୍କର (ଯଦିଓ ମୁଁ ତାଙ୍କ ଛାତ୍ର ନଥିଲି) କର୍ମଭୂମି ମୁଖ୍ୟତଃ ଥିଲା ଭଦ୍ରକ ଓ କଟକ ।

ଓଡିଆ ଭାଷା ସାହିତ୍ୟର ଜଣେ ପ୍ରବୀଣ ଅଧ୍ୟାପକ, ଜଣେ ସୁସଂଗଠକ, ଧୁରୀଣ ପ୍ରାବନ୍ଧିକ ଓ ଗବେଷକ, "୩୬/ଭାବୁବାଈ ଲେନ୍", "ଚା କପ୍‌ରେ ଝଡ" ଓ "ବେଦୀ ଓ ଅନ୍ୟାନ୍ୟ ଗଳ୍ପ" ପରି ଗଳ୍ପ ସଂକଳନର ସଫଳ କଥାକାର ଡଃ ବେହେରା କେବଳ ଜଣେ ସାରସ୍ୱତ ସାଧକ ନଥିଲେ, ସାହିତ୍ୟ ହିଁ ଥିଲା ତାଙ୍କ ଜୀବନ । ନିଜର ନିଷ୍ଠା ଓ ଅଂଗୀକାରବଦ୍ଧତା ଯୋଗୁଁ ସେ ଏକ ଅନୁଷ୍ଠାନରେ ପରିଣତ ହୋଇଥିଲେ । ଓଡ଼ିଆ ଗବେଷଣା ପରିଷଦ ଓ 'ଏଷଣା' ପତ୍ରିକା ଏହାର ଅନ୍ୟତମ ଉଦାହରଣ । ଜଣେ ସରଳ, ନିର୍ଭେଜାଲ ମଣିଷଟିଏ ଥିଲେ ସେ । ସମସ୍ତଙ୍କୁ ଭଲ ପାଉଥିଲେ । ନିଦା ଓ ନିରଳସ ଚେହେରା ଭିତରବି ଥିଲେ ସର୍ବଦା ପ୍ରାଣୋଛଳ ଓ ରୋମାଂଟିକ । ମଣିଷର ମନଗହନର ନିଭୃତ କଥାକୁ 'ବେଦୀ' ଗଳ୍ପରେ ସ୍ୱକୀୟ ଶୈଳୀରେ ପ୍ରକାଶ କରି ବିତର୍କର ଝଡ଼ ସତ୍ତ୍ୱେ ସେଥିରୁ ସେ ଉତ୍ତୀର୍ଣ୍ଣ ହୋଇଥିଲେ । 'ପ୍ରେମ ପୃଥିବୀ' ପତ୍ରିକା ତରଫରୁ ପ୍ରଦତ୍ତ 'ପ୍ରେମପୁରୁଷ' ଉପାଧି ତାଙ୍କ ପାଇଁ ଥିଲା ଯଥାର୍ଥ ।

ବିଭୋର ମଣିଷଟିଏ ଥିଲେ ସେ । ବୟସରେ କନିଷ୍ଠ ମାନଙ୍କୁ ମଧ୍ୟ ନାଁ ଧରି ନଡାକି ବାବୁ କରୁଥିଲେ । ଭାଷଣ ଦେଲାବେଳେ ମଝିରେ ମଝିରେ ନିଜେ ହସିଦେଉଥିଲେ । ନିଆରା ଓ ଚମତ୍କାର ସେ ହସ । ଅନେକ ଦୁଃଖ ଭିତରେ ବି ସେ ହସୁଥିଲେ ସର୍ବଦା । ସତେଯେମିତି ସଂସାରର ସବୁଦୁଃଖକୁ ନୀଳକଂ ପରି ଉତ୍ତମ୍ କରି ସଭିଙ୍କୁ ହସ ବାଣ୍ଟିବା ପାଇଁ ସେ ବଦ୍ଧପରିକାର ଥିଲା ।

ଯେତେ କହିଲେ ବି ସରିବନି ତାଙ୍କ କଥା । ତାଙ୍କ ପରି ନିଷ୍ଠାପର ଯଶସ୍ୱୀ ସାରସ୍ୱତ ସାଧକ ତଥା ପ୍ରେମିକ ପୁରୁଷଙ୍କ ଅମର ଆତ୍ମାକୁ ମୋର ପ୍ରଣାମ । ●

ଭଦ୍ରକ

# ଜଣେ ଭଲ ମଣିଷ

## କପିଳେଶ୍ୱର ମଲ୍ଲିକ

କୃଷ୍ଣଚରଣ ବେହେରା ଓଡିଆ ସାହିତ୍ୟ ଜଗତର ଜଣେ ଅମ୍ଳାନ ପ୍ରତିଭା । ତାଙ୍କ ବିୟୋଗରେ ସମଗ୍ର ଓଡିଆ ସାହିତ୍ୟ ଜଗତର ଅପୂରଣୀୟ କ୍ଷତି ଘଟିଲା । ଏହି ମହାନ ପ୍ରତିଭା ଥିଲେ ଏକାଧାରରେ ଜଣେ କବି, ଗାଳ୍ପିକ, ପ୍ରାବନ୍ଧିକ, ସମାଲୋଚକ ଓ ସଂଗଠକ । ଜଣେ ଦରଦି ମଣିଷ ଭାବରେ ସାଧାରଣ ମଣିଷକୁ ଭଲପାଇବାର କଳା ତାଙ୍କୁ ବେଶ୍ ଜଣାଥିଲା । ତାଙ୍କ ଗଳ୍ପ ଗୁଡିକରେ ମହ ମହ ବାସି ଉଠେ ସମାଜର ବାସ୍ତବ ଚିତ୍ର । ନିଖୁଣ ଭାବରେ ସାଧାରଣ ମଣିଷର ଭଲ, ମନ୍ଦ, ହସ, କାନ୍ଦ, ସୁଖ-ଦୁଃଖ, ଓ ଆବେଗର କଥାକୁ ଚମତ୍କାର ଭାବରେ ପ୍ରକାଶ କରିଛନ୍ତି ତାଙ୍କ ଗଳ୍ପ ଗୁଡିକରେ । ସାରଙ୍କ ସାହ ହୋଇଥିବା ସାକ୍ଷାତ୍କାର ମୋ ପାଇଁ ସ୍ମରଣୀୟ ହୋଇ ରହିବ । ସ୍ୱଳ୍ପ ସମୟ ମଧ୍ୟରେ ଅନେକ ତଥ୍ୟ ପାଇଥିଲେ ସୁଧା ଆହୁରି କିଛି ବାକି ରହିଗଲା । ତାଙ୍କ ସ୍ଥାନ ଓଡିଆ ସାହିତ୍ୟ ଜଗତରେ ନିଶ୍ଚିତ ଭାବରେ ଅପୂରଣୀୟ ହୋଇ, ଏକ ବିରାଟ ଶୂନ୍ୟସ୍ଥାନ ଛାଡିଗଲା । ସେହି ମହାନ ଆତ୍ମାଙ୍କ ଚରଣାବିନ୍ଦରେ ପ୍ରଣାମ ଜଣାଉଛି ବା ପ୍ରଭୁ ଜଗନ୍ନାଥଙ୍କ ନିକଟରେ ପ୍ରାଥନା କରୁଛି ତାଙ୍କ ଅମର ଆତ୍ମା ସଦ୍‌ଗତି ଲାଭକରୁ ।



ଗବେଷକ, ବିଶ୍ୱଭାରତୀ
ଶାନ୍ତିନିକେତନ, ପଶ୍ଚିମବଙ୍ଗ

# ସାହିତ୍ୟ ସମାଲୋଚନାର ଖଡିଛୁଆଁ ଓ କୃଷ୍ଣସାର

ସୁବ୍ରତ କୁମାର ପୃଷ୍ଟି

ପଞ୍ଚାଅଶୀ ବୟସ । ସାଧାରଣ ମଣିଷପାଇଁ ଏହା ବହୁତ କିଛି, ମାତ୍ର ଯେଉଁମାନଙ୍କ ଚିନ୍ତାଚେତନା ଓ କାର୍ଯ୍ୟଧାରାରେ ସମାଜ ଗତିଶୀଳ, ସେମାନଙ୍କ ଜୀବନକୁ ବୟସ ବାନ୍ଧି ରଖିପାରେନି । ଓଡିଶାର ଜଣେ ସୁନାମଧନ୍ୟ ସାହିତ୍ୟିକ, ଶିକ୍ଷାବିତ, ଦକ୍ଷ ସମାଲୋଚକ ତଥା ମୋର ଦୀକ୍ଷାଗୁରୁ ପ୍ରଫେସର କୃଷ୍ଣଚରଣ ବେହେରା ଏହି ଭଳି ଜଣେ ବ୍ୟକ୍ତିତ୍ୱ, ଯାହାଙ୍କ ଅବର୍ତ୍ତମାନରେ ଓଡିଆ ସାହିତ୍ୟର ଅପୂରଣୀୟ କ୍ଷତି ଘଟିଲା ।

କୃଷ୍ଣ ସାରଙ୍କ ସହ ମୋର ପରିଚୟ ହୁଏ ବନ୍ଧୁ ସୂର୍ଯ୍ୟନାରାୟଣଙ୍କଦ୍ୱାରା ଏଷଣା ପତ୍ରିକାର ସହକାରୀ ଭାବରେ କାର୍ଯ୍ୟ କରିବାପାଇଁ ୨୦୦୦ମସିହାରେ । ସାରଙ୍କର ଆବଶ୍ୟକ ଥିଲା ଓଡିଆ ଭାଷାସାହିତ୍ୟର ଜଣେ ଛାତ୍ର ଆଉ ମୋର ଦରକାର ଥିଲା କଟକରେ ରହି ପଢିବାପାଇଁ କିଛି ଆର୍ଥିକ ସହାୟତା । ମାସିକ ଦୁଇଶହ ଟଙ୍କା ପାରିତୋଷିକରେ ସପ୍ତାହକୁ ୨ଦିନ ସମୟ ଦେବି ବୋଲି ରୋକଠୋକ କଥା । ମୋର ଅଭିମାନୀ ମନପାଇଁ ଏହି ପ୍ରଥମ ଦିନ ଭାରି ଅସହଜ ଥିଲା, ଭାବିଥିଲି କିଛି ଭୁଲ ନିଷ୍ପତ୍ତି ନେଲି କି ? କିଛି ଦିନ ପରେ କାମ ଆରମ୍ଭ ସହିତ ସାହିତ୍ୟରେ ହାତ ସଳଖେଇବାପାଇଁ ପ୍ରତି ପଦକ୍ଷେପରେ ସାରଙ୍କ ପରାମର୍ଶ ମୋର ସୃଜନଶୀଳତାକୁ ମାର୍ଜିତ କରିବା ସହିତ ସମାଲୋଚନାତ୍ମକ ଦୃଷ୍ଟିଭଙ୍ଗୀକୁ ଅଧିକ ଶାଣିତ କରିଥିଲା । ପ୍ରକୃତରେ କହିବାକୁ ଗଲେ ସାହିତ୍ୟର ଡିଗ୍ରୀ ଧରିଥିଲେ ସୁଦ୍ଧା ଏ ପର୍ଯ୍ୟନ୍ତ ସାହିତ୍ୟକୁ ଦେଖିବାର ଦୃଷ୍ଟିଶକ୍ତି ମୋ ନିକଟରେ ସୃଷ୍ଟି ହୋଇ ନ ଥିଲା । ସାହିତ୍ୟ ସମାଲୋଚନାର ଅସଲ ଖଡିଛୁଆଁ ଏଇଠୁ ଶିଖିଲି ଓ କୃଷ୍ଣ ସାର ହିଁ ମୋରେ ହାତ ଧରି ଶିଖାଇଲେ ।

ଏହାପରେ ମୁଁ ୟୁଜିସି ବୃତ୍ତି ପାଇ ଗବେଷଣା ସହିତ ସିଭିଲସେବା ପରୀକ୍ଷା ପ୍ରସ୍ତୁତିପାଇଁ ଦିଲ୍ଲୀ ଆସିଲି । ସାରଙ୍କ ସହ ମୋର ସମ୍ପର୍କ ଅତି ନିବିଡ ଥାଏ । ଏହି

ନିବିଡତାହିଁ ମୋତେ ଓଡିଆଭାଷାର ଶାସ୍ତ୍ରୀୟତାପାଇଁ ନୂଆ ବାଟ ଦେଖାଇଥିଲା । ୨୦୦୮ରେ ଦିଲ୍ଲୀରୁ ଫେରି ସାରଙ୍କ ସହ ପୁଣି ଯୋଡିହେବାପରେ ଓଡିଶା ଇତିହାସରେ ଆଉ ଏକ ସ୍ୱର୍ଣ୍ଣିମ ଅଧ୍ୟାୟ ଲେଖା ହେବାର ପଥ ଫିଟିଲା । ସେ ସମୟରେ ଓଡିଆ ଭାଷାକୁ ଶାସ୍ତ୍ରୀୟତା କଥା କେହି ଚିନ୍ତା ହିଁ କରି ନ ଥାନ୍ତି । ଯାହାକୁ ଶାସ୍ତ୍ରୀୟତା ବିଷୟରେ କହିଲି, ଲେଖିଥିବା ପାଠ ଦେଖାଇଲି; ସମସ୍ତେ ନାକ ଟେକିଲେ, ଥଟ୍ଟାପରିହାସ କଲେ । କେତେକ ପରାମର୍ଶ ଦେଲେ ଆ.ଇ.ଏସ. ନ ହେଲୁ ନାହିଁ ଅଧ୍ୟାପକପାଇଁ ଲାଗିପଡ । ଫାଲତୁ କାମରେ ସମୟ ନଷ୍ଟ କରନି । କିନ୍ତୁ ଏକମାତ୍ର କୃଷ୍ଣସାର ମୋତେ ଉତ୍ସାହିତ କଲେ, ଲେଖିଥିବା ପାଠକୁ ପୁଅ ଶୁଭକାନ୍ତକୁ ଦେଖିବାକୁ ଦେଲେ । ଶୁଭକାନ୍ତ ଭାଇଙ୍କ ପରାମର୍ଶ ଓ କୃଷ୍ଣସାରଙ୍କ ଉତ୍ସାହ ମୋତେ ନୂତନ ଶକ୍ତି ପ୍ରଦାନ କଲା । ବଞ୍ଚିବାପାଇଁ କୌଣସି ବୃତ୍ତି ଯୋଗାଡ ବଦଳରେ ସ୍ୱାବଲମ୍ବୀଶୀଳତାକୁ ଆପଣେଇବାକୁ ସାରଙ୍କ ପରାମର୍ଶ ମୋତେ ଏ ଦିଗରେ ବହୁତ କାମ ଦେଲା । ଶାସ୍ତ୍ରୀୟତାପାଇଁ କାମ କରୁକରୁ ଏହାର କାର୍ଯ୍ୟକାରିତାପାଇଁ ଓଡିଆ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠାପାଇଁ ଶୁଭକାନ୍ତ ଭାଇଙ୍କ ପରାମର୍ଶକୁ ସାର ଗ୍ରହଣ କଲେ ଓ ଏ ବିଷୟରେ କାମ କରିବାପାଇଁ ମୋତେ ପରାମର୍ଶ ଦେଲେ । ଏଥିପାଇଁ ଦିଲ୍ଲୀରେ ଏକ ସ୍ୱତନ୍ତ୍ର ବୈଠକର ଆୟୋଜନ କରାଇ କିଭଳି ଏହି ୨ଟି କାମ ହୋଇପାରିବ, ସେ ବିଷୟରେ ତୁରନ୍ତ ପଦକ୍ଷେପ ନେବାକୁ ଶୁଭକାନ୍ତଭାଇଙ୍କୁ ନିର୍ଦ୍ଦେଶ ଦେଇଥିଲେ ।

ଓଡିଆଭାଷାର ଶାସ୍ତ୍ରୀୟମାନ୍ୟତା ଓ ଓଡିଆ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠାର ମୂଳ ବିନ୍ଦୁ ଥିଲେ କୃଷ୍ଣ ସାର । ତେଣୁ ଉତ୍କଳ ସଂସ୍କୃତି ବିଶ୍ୱବିଦ୍ୟାଳୟ କୁଳପତିଙ୍କ କାର୍ଯ୍ୟାଳୟରେ ଅନୁଷ୍ଠିତ ଏକ ଆଲୋଚନାସଭାରେ ସେ ଦାୟିତ୍ୱ ନେଲେ ଓଡିଆ ବିଶ୍ୱବିଦ୍ୟାଳୟ ସ୍ଥାପନ କମିଟିର ଅଧ୍ୟକ୍ଷ ପଦବୀ । ପୁଣି ଏହି କାର୍ଯ୍ୟକୁ ଆହୁରି ଗତିମୁଖର କରି ଓଡିଶାର ସମସ୍ତ ବୁଦ୍ଧିଜୀବୀଙ୍କୁ ଏକାଠି କରିବାପାଇଁ ସମସ୍ତଙ୍କୁ ପତ୍ର ଲେଖିବା ସହିତ ଗଠନ କଲେ ଓଡିଆ ଅଧ୍ୟୟନ ଓ ଗବେଷଣା ସଂସ୍ଥା । ତାଙ୍କରି ପରାମର୍ଶରେ ବିଶିଷ୍ଟ ଭାଷାବିତ ତଥା ତାଙ୍କର ଶିକ୍ଷାଗୁରୁ ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକ ହେଲେ ଏହାର ଅଧ୍ୟକ୍ଷ । ମାତ୍ର ୧ ମାସ ଭିତରେ ତତ୍କାଳୀନ ବିଧାୟିକା ତଥା ଗବେଷଣା ପରିଷଦ ସଦସ୍ୟା ଡକ୍ଟର ସିପ୍ରା ମଲ୍ଲିକଙ୍କ ସହାୟତାରେ ଏକ ବେସରକାରି ବିଲ ଉପସ୍ଥାପନ କରି କେବଳ ରାଜ୍ୟବାସୀ ବା ଆମ ବୁଦ୍ଧିଜୀବୀ ମହଲକୁ ନୁହେଁ, ବରଂ ରାଜ୍ୟ ସରକାରଙ୍କୁ ହତଚକିତ କରିଦେଇଥିଲେ । ଏହି ସମୟରେ ଶାସ୍ତ୍ରୀୟମାନ୍ୟତା

କାର୍ଯ୍ୟକ୍ରମ ଆଉ ଆମ ଭିତରେ ସିମୀତ ନ ଥିଲା । ବିଶିଷ୍ଟ ସାମ୍ବାଦିକ ବରେନ୍ଦ୍ରକୃଷ୍ଣ ଧଳ ନିଜ ଆଲେଖ୍ୟ ମାଧ୍ୟମରେ ସାର୍ବଜନୀନ କରିଦେଇଥିଲେ । ଏପରିକି କେନ୍ଦ୍ର ସ୍ୱୀକୃତିପାଇଁ ଯେଉଁ ଗୋପନ କ୍ରିୟାକଳାପ ଆବଶ୍ୟକ, ତାହାର ଅନ୍ତିମ ବିନ୍ଦୁରେ ଶୁଭକାନ୍ତଭାଇ ପହଞ୍ଚାଇ ସାରିଥିଲେ । ଅପେକ୍ଷାଥିଲା ତେଲୁଗୁ, କନ୍ନଡ ଭାଷା ଶୈଳୀରେ ଓଡିଆଭାଷାର ଶାସ୍ତ୍ରିୟ ମାନ୍ୟତାପାଇଁ୨୮/୨୯ନଭେମ୍ବର୨୦୧୨ରେ ୨ଦିନିଆ ଜାତୀୟ ପାଠଚକ୍ର ଆୟୋଜନ ମାଧ୍ୟମରେ ଏହାକୁ ସାର୍ବଜନୀନ କରିବା । ମାତ୍ର ବିଧିର ବିଧାନକୁ କେହି ଅତିକ୍ରମ କରିପାରିବେନି । ଶୁଭକାନ୍ତ ଭାଇଙ୍କ ଆକସ୍ମିକ ତିରୋଧାନ କେବଳ ସାରଙ୍କ ମନୋବଳକୁ ଭାଙ୍ଗି ଦେଇ ନ ଥିଲା, ବରଂ ଆମମାନଙ୍କ କାର୍ଯ୍ୟଧାରାକୁ ସଂପୂର୍ଣ୍ଣ ପ୍ରଭାବିତ କରିଥିଲା । ଏଭଳି ଦାରୁଣ ଦୁଃଖରେ ସାର ବୋଧହୁଏ କିଛିଦିନପାଇଁ ନିଜ ଅସଜଡା ମନକୁ ସଜାଡିବାର ଉଦ୍ୟମ କରୁଥିଲେ । ବୟସାଧିକ୍ୟ ସହିତ ଶାରୀରିକ ଅସୁସ୍ଥତା ସହିତ ନିଜ ପ୍ରିୟ ପୁତ୍ରର ଅକାଳ ବିୟୋଗ ତାଙ୍କର ସବୁକିଛି ସ୍ୱପ୍ନ ସମ୍ଭାବନାକୁ ବିନଷ୍ଟ କରିବାର ଉଦ୍ୟମକୁ ସେ କିନ୍ତୁ ପ୍ରତିହତ କରିବାପାଇଁ ସତେଯେପରି ପ୍ରତିଜ୍ଞାବଦ୍ଧ ଥିଲେ । ଏଷଣା ପତ୍ରିକା ସମ୍ପାଦନା ସହିତ ଓଡିଆ ଗବେଷଣା ପରିଷଦର ଆନୁସଙ୍ଗିକ କାର୍ଯ୍ୟ ଭିତରେ ନିଜକୁ ହଜାଇ ଦେଇଥିଲେ । ତାଙ୍କର ସତପରାମର୍ଶ ଓ ମାର୍ଗଦର୍ଶନ ଫଳରେ ଓଡିଆ ଭାଷା ଶାସ୍ତ୍ରୀୟମାନ୍ୟତା ମାତ୍ର ୧ବର୍ଷ ଭିତରେ ପାଇଲା ଓ ରାଜ୍ୟ ସରକାର ଓଡିଆ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରିବେ ବୋଲି ଘୋଷଣା କଲେ ।

ଆଜି ଓଡିଆଭାଷାର ଶାସ୍ତ୍ରୀୟମାନ୍ୟତା ଓ ଓଡିଆ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠାର ଶ୍ରେୟ ନେବାପାଇଁ ସମସ୍ତେ ବ୍ୟାକୁଳ । ଅଥଚ ପରଦା ଆଡୁଆଳରେ ରହିଯାଇଥିବା ଏହି ମହାନ ସାଧକ କେବେ କେଉଁଠି ଦିନେହେଲେ ଏ ବିଷୟରେ ପାଟି ଫିଟେଇ ନାହାଁନ୍ତି । କେବଳ ସେତିକି ନୁହେଁ, ମୋର ସମସ୍ତ ଦ୍ୱନ୍ଦାତ୍ମକ ସ୍ଥିତିରେ ସାରଙ୍କ ପରାମର୍ଶ ଲକ୍ଷ୍ମଣଗାର ସଦୃଶ ହୋଇଥିବାରୁ ଯେତେବେଳେ ଦେବୀସାର ଶାସ୍ତ୍ରୀୟତା ଭିତ୍ତିପତ୍ରରେ ତାଙ୍କ ନାମ ଲେଖିବାକୁ ଓ ସରକାରଙ୍କୁ ଦେବାପାଇଁ ମୋତେ କହିଥିଲେ, ସେତେବେଳେ ମୁଁ ଏଭଳି ଘଡିସନ୍ଧି ମୁହୁର୍ତ୍ତରେ ସାରଙ୍କ ପରାମର୍ଶ ମାଗିଥିଲି । ସାର ପ୍ରାୟ ୧୫ମିନିଟ ଚୁପ ରହିଲେ । ଏଭଳି ନିରବତା କେବେ ମୁଁ ଦେଖି ନ ଥିଲି । କହିଲେ, ଦେବୀବାବୁ ଯଦି କହୁଛନ୍ତି, ସେ ନିଶ୍ଚିତ ଆଗପଛ ବିଚାର କରି କହିଥିବେ । ତୁମେ ତାଙ୍କ କଥାରେ ରାଜି ହୋଇଯାଅ ।

ଏଭଳି ଉତ୍ତର ସାରଙ୍କଠାରୁ ଆଶା କରି ନ ଥିଲି । କ୍ଷୁବ୍ଧ ହୋଇ ଉଠି ଆସିଲି ସତ, ମାତ୍ର ସାରଙ୍କ କଥାକୁ ମାନି ନେଇଥିଲି । ବୋଧହୁଏ ସେହି ଦିନଠାରୁ ସାରଙ୍କ ସହିତ ଆଉ ବିଶେଷ ଆନ୍ତରିକ ସାକ୍ଷାତ ହୋଇପାରିନି । ସତେ ଯେପରି ଉଭୟ ଉଭୟଙ୍କଠାରେ ଦୋଷୀ ହୋଇଯାଇଥିଲୁ । ସମୟ ସମୟରେ ସାର ଫୋନ କରି କଟକ ଆସିବାକୁ କୁହନ୍ତି । ମାତ୍ର ଯାଇପାରେନି, ଏପରିକି ଅସୁସ୍ଥ ଶରୀର ଭୁବନେଶ୍ୱର ଆସି ୨୧ଦିନ ରହିଲା ପରେ ବି ମୁଁ ଅଧମ କିନ୍ତୁ ମୋର ପୂଜ୍ୟ ସାରଙ୍କୁ ଜୀବିତ ଅବସ୍ଥାରେ ଦେଖିପାରିଲିନି । ଗତ ଶନିବାର ୧୦ଟାରେ ଚେତନା ରହିତ ଶରୀରର ଅର୍ଦ୍ଧଉନ୍ମୁଖ ପାଟିରେ ମୁଁ ପବିତ୍ର ଗଙ୍ଗାତୁଳସୀଜଳର ଶେଷ ବିନ୍ଦୁ ଦେବାର ୫ ମିନିଟ ପରେ ଡାକ୍ତରଙ୍କ ସେହି ମର୍ମସ୍ପର୍ଶୀ ଘୋଷଣା ଆମ ସମସ୍ତଙ୍କୁ ନିର୍ବାକ କରିଦେଇଥିଲା । ବହୁଦିନ ଯନ୍ତ୍ରଣା ସହୁଥିବା ମଣିଷର ମୋକ୍ଷ କାମନା କରୁଥିଲୁ ସତ, ମାତ୍ର ଆମକୁ ହଠାତ ଏମିତି ଅନାଥ କରି ଛାଡିଯିବାଟା ସହଜରେ ଗ୍ରହଣ କରିପାରୁ ନ ଥିଲୁ । ପ୍ରଭୂ ଜଗନ୍ନାଥଙ୍କ ନିକଟରେ ପ୍ରାର୍ଥନା ସ୍ୱଦେହରେ ନ ହେଉ ପଛେ, ଆଉକେଉଁ ରୂପରେ ମୋର ପ୍ରିୟ ସାର ଆମ ଗହଣକୁ ଫେରି ଆସନ୍ତୁ । ମୋତେ ଶକ୍ତି ଦିଅନ୍ତୁ ଓଡିଆଜାତିପାଇଁ କାମ କରିବାକୁ ।



ସଦସ୍ୟ ସଚିବ
ଓଡିଆ ଅଧ୍ୟୟନ ଓ ଗବେଷଣା ସଂସ୍ଥା
ପ୍ଲଟ ନଂ ଏନ-୪/୧୭, ନୂଆପଲ୍ଲୀ, ଭୁବନେଶ୍ୱର
ଦୂରଭାଷା-୯୦୯୦୪୬୫୭୫୮

# ଜଣେ ନିଆରା ମଣିଷ

**ଦିଲୀପ କୁମାର ବେଉରା**

ପ୍ରଫେସର ଡକ୍ଟର କୃଷ୍ଣଚରଣ ବେହେରା ଆମ ଓଡ଼ିଆ ଭାଷା-ସାହିତ୍ୟକୁ ଯେଉଁ ମୂଲ୍ୟବାନ ଅବଦାନ ଦେଇଯାଇଛନ୍ତି, ତାହା ତାଙ୍କୁ ସ୍ମରଣୀୟ କରି ରଖିବ ଚିରକାଳ । ଜୀବନ-ଜିଜ୍ଞାସାର ଯଥାର୍ଥ ମୂଲ୍ୟ ବୁଝୁଥିବା ଏହି ଜ୍ଞାନତପସ୍ୱୀ ତାଙ୍କର ଅନୁସନ୍ଧିତ୍ସା ବଳରେ ନିଜକୁ ସୁପ୍ରତିଷ୍ଠ କରିବା ସହିତ ଶହ ଶହ ଛାତ୍ରଛାତ୍ରୀ ତଥା ଗବେଷକମାନଙ୍କର ପ୍ରେରଣାର ଉତ୍ସ ପାଲଟି ନିଜର ଅମ୍ଳାନ କୀର୍ତ୍ତି ସ୍ଥାପନ କରିଦେଇ ଗଲେ ।

ପ୍ରଫେସର କୃଷ୍ଣଚରଣ ବେହେରାଙ୍କୁ ମୁଁ ସାର୍ ବୋଲି ସମ୍ବୋଧନ କରୁଥିଲି । ସାର୍‌ଙ୍କ ସହିତ ମୋର ସଂପର୍କ ଘନିଷ୍ଠ ଥିଲା, ପତ୍ରପତ୍ରିକାର ସଂପାଦନାକୁ ନେଇ । କୋଡ଼ିଏ ବର୍ଷର ଅତୁଟ ସଂପର୍କ । ସାର୍ ଲେଖାଟିଏ ପ୍ରସ୍ତୁତ କରିସାରିଲେ ଫୋନ୍ କରୁଥିଲେ, 'ଜନସୁଧା' ର ଲେଖାଟି ମୁଁ ଲେଖିସାରିଛି, କେତେବେଳେ ଆସିବ ? ହଉ ହଉ, ଆସି ନେଇଯିବ । ପତ୍ରିକା ପ୍ରକାଶନ ପରେ ହେଉ ବା ଲେଖାଟିଏ ପାଇଁ ଯିବାକୁ ହେଉ; ସାର୍‌ଙ୍କ ଘରକୁ ଯାଇ ଯାଇ ଏକ ପାରିବାରିକ ସଂପର୍କ ଗଢ଼ିଉଠିଥିଲା ।

ସାର୍ ସମୟକୁ ଆଦୌ ନଷ୍ଟ କରନ୍ତି ନାହିଁ । ଦେଖିଲେ ଖୁସୀ ହୋଇ ହସି ଦିଅନ୍ତି, କାମ ଥିଲେ ବସାନ୍ତି, କାମ ନ ଥିଲେ ନିଜେ ଉଠି ଯାଇ ଅନ୍ୟକୁ ଯିବାକୁ ଦେଇ ଆପଣାକର୍ମରେ ଲାଗିପଡ଼ନ୍ତି । ମାର୍ଜିତ କଥା, ଚମତ୍କାର ବ୍ୟବହାରରେ ଖୁସୀ କରାଇ ଅନ୍ୟକୁ ବିଦାୟ ଦିଅନ୍ତି ।

ସାର୍‌ଙ୍କ ସହିତ ମୋର ଏଇ କେତେବର୍ଷର ସଂପର୍କ ବେଶ୍ ସ୍ମରଣୀୟ ଓ ସୁଖକର । ତାଙ୍କର ସେହି ଉଚ୍ଚାଙ୍ଗ ବ୍ୟକ୍ତିତ୍ୱ ଓ ସାରସ୍ୱତ ପ୍ରତିଭାକୁ ମୋର ପ୍ରଣାମ ।



# ଏଷଣାର ଏକ କ୍ରାନ୍ତିଧାରା : ଡକ୍ଟର କୃଷ୍ଣଚରଣ ବେହେରା

ଆର୍ଯ୍ୟକୁମାର ହର୍ଷବର୍ଦ୍ଧନ

ଓଡ଼ିଆ ସାହିତ୍ୟର ଜଣେ ଧୀରୋଦାତ୍ତ ସ୍ରଷ୍ଟାଭାବେ ଡ. କୃଷ୍ଣଚରଣ ବେହେରା ମୋର ସୃଜନସତ୍ତାକୁ ସଦାବେଳେ ପ୍ରେରିତ କରିଆସିଛନ୍ତି । ସାହିତ୍ୟ ପ୍ରତି ତାଙ୍କର ସମର୍ପଣଶୀଳ ସଂକଳ୍ପ ହିଁ ତାଙ୍କୁ ବ୍ୟକ୍ତି ନୁହେଁ ବରଂ ଗୋଟିଏ ଅନୁଷ୍ଠାନର ପରିଚୟ ପ୍ରଦାନ କରିଛି । ଆଜି କାହିଁକି କେଜାଣି ଏକ ଖାଁ ଖାଁ ପଣ ଆବୋରି ଆସୁଛି । ଯୁବପିଢ଼ି ଯେମିତି ଧୀରେ ଧୀରେ ମୁରବି ଛେଉଣ୍ଡ ହୋଇଯାଉଛି । କୃଷ୍ଣଚରଣଙ୍କ ସାରସ୍ୱତ ବ୍ୟକ୍ତିତ୍ୱର ଆଭାରେ ଅନେକ ଯୁବ ପ୍ରତିଭା ଉଦ୍‌ଭାସିତ । ବିଶେଷକରି ଗବେଷଣା ପରି ଏକ କଠୋର ଓ ଶୁଷ୍କ ଭୂମିକୁ ସେ ତାଙ୍କର ମୌଳିକ ସର୍ଜନାତ୍ମକ ଶୈଳୀରେ ଅତ୍ୟନ୍ତ ସାବଲୀଳ ଓ ସରସ କରି ଗଢ଼ି ତୋଳିଥିଲେ । ତା’ ସହ ଯୁବସ୍ରଷ୍ଟାମାନଙ୍କ ପାଇଁ ଏକ ପ୍ଲାଟ୍‌ଫର୍ମ ନିର୍ମାଣ କରିଥିଲେ ।

ବେଳେବେଳେ ବିଶ୍ୱାସ ବି ହେଉନି ଯେ ସେ ଆମକୁ ଛାଡ଼ି ଚାଲିଯାଇଛନ୍ତି । ଛାଇ ନିଦରେ ଏବେ ବି ଲାଗୁଛି ଯେ ମୋବାଇଲ ରିଂ ହେଉଛି ଓ ସୁଇଚ୍ ଅନ୍ କଲାବେଳକୁ ସେପଟୁ ଭାସିଆସୁଛି... “ଆରେ ହର୍ଷ... ଏଷଣା ଛପା ହୋଇ ଆସିଯାଇଛି, ଆସି ନେଇଯିବ ।”

ସେଇ ଆଦରଭରା ସ୍ୱର, ସେଇ ମିଠା ମିଠା ହସ, ସେଇ ଅନାବିଳ ଆତିଥ୍ୟ ସତରେ କ’ଣ ସବୁଦିନ ପାଇଁ ହଜିଗଲା । ଲିଭିଗଲା ଦିକ୍ ଦିକ୍ ହୋଇ ଜଳୁଥିବା ଏକ ଅବିଶ୍ରାନ୍ତ ଦୀପ । ଭାବପ୍ରବଣତାର ସବୁ କୋହ ଓ ଲୁହ କେଉଁ ଏକ ଅନ୍ଧାରୀ ମୂଲକରେ ବାଟବଣା ହେଉଥାଏ ନିଜ ଅଜାଣତରେ । ଭାବି ହେଉନି ।

ପ୍ରାୟତଃ ୧୯୯୮ ମସିହାର କେଉଁ ଏକ ଅପରାହ୍ଣରେ ପରମ ପୂଜ୍ୟ ଗୁରୁଦେବ ଡ. ଉମେଶ ପତ୍ରୀ ମୋତେ ସାଂଗରେ ଧରି ଡକ୍ଟର ବେହେରାଙ୍କ ବସାକୁ ନେଇଥିଲେ ।

ଉତ୍କଳ ଆପାର୍ଟମେଣ୍ଟରେ ହିଁ ପ୍ରାବନ୍ଧିକ କୃଷ୍ଣଚରଣଙ୍କୁ ମୁଁ ପ୍ରଥମ ଦେଖା କରିଥିଲି । ଓଡ଼ିଆ ସାହିତ୍ୟ, ସେମିଟିକ୍ ଧର୍ମଧାରା, ଦର୍ଶନ ତତ୍ତ୍ୱକୁ ନେଇ ଡକ୍ଟର ପତ୍ରୀ ଓ ଡ. ବେହେରାଙ୍କ ଭିତରେ ପ୍ରାୟ ତିନି-ଚାରି ଘଣ୍ଟାର ଚର୍ଚ୍ଚା । ଗୁଢ଼ ରହସ୍ୟଘନ ବିମର୍ଶ କିନ୍ତୁ ଖୁବ୍ ସାବଲୀଳ ଓ ଅତ୍ୟନ୍ତ ପ୍ରାଞ୍ଜଳ ବିଚାରବୋଧରେ ଦୁହିଁଙ୍କ ବ୍ୟକ୍ତିସତ୍ତା ଯେତିକି ଉଜ୍ଜଳି ଉଠୁଥିଲା, ମୋର ଆଗ୍ରହ ଓ ଉତ୍କଣ୍ଠା ସେତିକି ବଢୁଥିଲା । ତା' ପୂର୍ବରୁ ମୁଁ କୃଷ୍ଣଚରଣଙ୍କୁ କିଛିକାଂଶରେ ରେଭେନ୍ସା କଲେଜ ଲାଇବ୍ରେରୀରେ ପଢ଼ିଥିଲି ।

ଏହା ପରର ଘଟଣାବଳୀର ସମୟ ପ୍ରାୟ ୧୯ ବର୍ଷ । ୧୯ ବର୍ଷର ସାରସ୍ୱତ ସ୍ମୃତିରେ ଅନେକ ଉତ୍ସବ, ଅନେକ ପାଠଚକ୍ର ଓ ଅନେକ ବିଚାର-ଆଲୋଚନା । ଓଡ଼ିଆ ଗବେଷଣା ପରିଷଦର ସଦସ୍ୟତା ଗ୍ରହଣ ପୂର୍ବକ ପରିଷଦର ପାଠଚକ୍ରରେ ପ୍ରବନ୍ଧପାଠ କରିବା ଓ ଏଷଣାରେ ପ୍ରବନ୍ଧ-ସମୀକ୍ଷା ଆଦି ଲେଖିବାର ସେ ଅନନ୍ୟ ଅନୁଭବ ଅବର୍ଣ୍ଣନୀୟ ।

ଓଡ଼ିଆ ସାହିତ୍ୟକୁ ଡ. କୃଷ୍ଣଚରଣଙ୍କ ଅବଦାନକୁ ସ୍ମରଣ କରିବା ପାଇଁ ତାଙ୍କ ସାହିତ୍ୟକୃତିକୁ ଆଉଥରେ ପଢ଼ାଯିବା ଉଚିତ୍ । 'ଚା' କପ୍‌ରେ ଝଡ଼' କବିତା ଠୁ ଆରମ୍ଭ କରି 'ଯୋଜନା ଯଜ୍ଞ ପାଲା' ନାଟକ ଯାଏଁ ପୁଣି 'ସୃଷ୍ଟିର ସ୍ୱପ୍ନ', 'ବେଦୀ' ଗଳ୍ପଠୁ ଆରମ୍ଭ କରି 'କୃଷ୍ଣଚରଣ ବୀଥିକା' ପର୍ଯ୍ୟନ୍ତ ପ୍ରାୟ ୬୩ ଖଣ୍ଡ ଗ୍ରନ୍ଥକୁ ନୂତନ ପିଢ଼ି ଯଦି ପଢ଼ିବାର ପ୍ରଚେଷ୍ଟା ମାତ୍ର କରିବ, ତେବେ ତାଙ୍କ ସୃଜନଯାତ୍ରାର ମହାର୍ଘ ଅବଦାନକୁ ହେଜି ହେବ । ମୋ ମତରେ ଶରୀର କ୍ଷୟ ହୋଇଯାଏ, ମାତ୍ର ଅକ୍ଷରର କ୍ଷର ହୁଏ ନାହିଁ । ତାଙ୍କ ଅକ୍ଷର ସାଧନା ସଦା ଅମର ହୋଇ ରହିବ ।

ଡକ୍ଟର କୃଷ୍ଣଚରଣ ବେହେରାଙ୍କ ଅଶ୍ରୁ, ସ୍ୱେଦ, ତିତିକ୍ଷା ଓ ସଂକଳ୍ପର ସ୍ୱାକ୍ଷର ବହନ କରୁଥିବା ଅନୁଷ୍ଠାନ "ଓଡ଼ିଆ ଗବେଷଣା ପରିଷଦ" କୁ ଯଦି ଆମେ ବଂଚାଇ ରଖିପାରିବା, ତେବେ ସେ ସେଇମିତି ମୁରୁକି ମୁରୁକି ହସୁଥିବେ, ଆମମାନଙ୍କ ସହ ସେ ଚୁପ୍‌ଚାପ୍ ତର୍କବିତର୍କ କରୁଥିବେ, ଆମକୁ ମାର୍ଗଦର୍ଶନ ଦେଉଥିବେ; ସର୍ବୋପରି ସେ କେଉଁ ଅଲୌକିକ ସ୍ୱର୍ଗବାସୀ ନ ହୋଇ ଅକ୍ଷରବ୍ରହ୍ମ ରୂପରେ ଆମମାନଙ୍କ ହୃଦୟକନ୍ଦରରେ ପୂଜା ପାଉଥିବେ । ଏତିକି ଆଶା କରୁଛି ।

ଅଧ୍ୟାପକ, ହିନ୍ଦୀ ଭାଷା ଓ ସାହିତ୍ୟ ବିଭାଗ
ଖ୍ରୀଷ୍ଟ ମହାବିଦ୍ୟାଳୟ, କଟକ

# ଗୁରୁ ନୁହନ୍ତି ସେ ପରଶମଣି

## ଶ୍ରୀଚରଣ ମହାନ୍ତି

ପ୍ରଥମ ଦେଖାରେ, ପ୍ରଥମ ଲେଖାରେ
ସାଜନ୍ତି ହୃଦୟ ମଉଡ଼ମଣି,
ଏତେ ସ୍ନେହେ ଭରା, ସବୁରି ମନକୁ
ଚାହାଣିରେ ସିଏ ପାରନ୍ତି କିଣି ।

ବାର ବରଷରେ ଧରମା ସଜାଏ
ସୂରୁଯ ମନ୍ଦିର ମଥାରେ ଚୂଳି
ବାର ବରଷରେ କୃଷ୍ଣଚରଣ
ହାତରେ ଧରିଲେ ଲେଖାର କାଳି ।

ପାଠପଢ଼ା ସାଥେ ଲେଖି ଚାଲିଥିଲେ
ହୃଦ କନ୍ଦର ଭାବନା ଭୋଳେ,
ସ୍ୱାଧୀନ ଭାରତେ ତୁହାଇ ଗାଇଲେ
"ଧନ୍ୟ ମୁଁ ଏଇ ପତାକାତଳେ ।"

ପଛକୁ ନ ଚାହିଁ ଆଗେଇ ଚାଲିଲେ
ଅସୀମ ସାହସେ ଅମଡ଼ା ମାଡ଼ି,
ସ୍ୱାଧୀନ ଭାବନା, ସ୍ୱାଧୀନ ଚେତନା
ଗଳ୍ପ, କବିତା ଯୋଡ଼ିକି ଯୋଡ଼ି ।

ଅନେକ ଲେଖାରେ କନକ ଭରିଲା
ସ୍ରଷ୍ଟା ମଣ୍ଡଳେ ସାଜିଲେ ଗୁରୁ,
ସତକଥା ଲେଖି ପାଠକ ମନରେ
କେବେ ଭରିଥିଲେ କଣ୍ଟାତରୁ ।

କିନ୍ତୁ ହେ ଗୁରୁ ଲେଖନୀରେ ତବ
ଭରିଭରି ଗଲା ଅନେକ ଲେଖା,
ବିବିଧ ରଚନା ଭରିଲା ପ୍ରେରଣା
ଲେଖକ ମହଲେ ସାଜିଲ ସଖା ।

ଲେଖକ ଲେଖିକା ଗଢ଼ି ଚାଲିଗଲ
ସ୍ରଷ୍ଟା ମଣ୍ଡଳ କରିଲ ସୃଷ୍ଟି,
ଗବେଷଣା ପାଇଁ 'ଏଷଣା' ସଜାଇ
ସମାଜେ ଆନନ୍ଦ କରିଲ ବୃଷ୍ଟି ।

ଜୀବନରେ ଥିଲା ମଣିଷ ଗଢ଼ିବା
ସ୍ନେହ ଶ୍ରଦ୍ଧାର ପ୍ରଲେପ ଦେଇ,
ମଣିଷ ଗଢ଼ିଲ, ମଣିଷ ଗଢ଼ିଲ
କିଛି ଭେଦଭାବ ବାଛିଲ ନାହିଁ ।

ବୟସ କେଉଁଠି ହାର ମାନିଗଲା
କର୍ମଜୀବନ ପାରିଲ କିଣି
ସଂସାର ଦୁଃଖ ହୃଦୟରେ ଭରି
ନିଜ ଦମ୍ଭରେ ପାରିଲ ଜିଣି ।

ଏଇ ହୃଦୟକୁ କିଏବା ମାପିବ ?
ଆପଣ ତ ସ୍ନେହ ଶ୍ରଦ୍ଧାର ଖଣି,
ସରଗକୁ ଗଲେ ସ୍ୱର୍ଗୀୟ ହୋଇ
ଗୁରୁ ନୁହନ୍ତି ସେ ପରଶମଣି ॥



(୩୧.୭.୨୦୧୭ ସକାଳ ୭ଟା)

# ପାହିଗଲା କାହିଁ ରାତି

## ସନ୍ତୋଷ କୁମାର ପାଢ଼ୀ

ଜନ୍ମ ମୃତ୍ୟୁ ସତ୍ୟ ଏହା ମୁଁ ଜାଣିଛି ଏତ ଦୁନିଆରେ ନୀତି
ସପନ ତୁମର ସରି ତ ନଥିଲା ପାହିଗଲା କାହିଁ ରାତି ।
ସବୁଦିନ ପାଇଁ ଭାବିଥିଲୁ ଆମ୍ଭେ ତୁମକୁ ଦେଖିବା ପାଇଁ
କୃଷ୍ଣଚରଣରେ ନାମ ବହିଥିଲ କୁଆଡ଼େ ଗଲ ଦୂରେଇ ।
ଛାଡ଼ିଯିବା ପାଇଁ ଥିଲା ଯଦି ମନେ କାହିଁକି ଆଦରି ନେଲ
ଅଳ୍ପ ଦିନର ଏ ସଂପର୍କକୁ ତୁମେ ଏତେ ଶୀଘ୍ର ଭାଙ୍ଗି ଦେଲ ।
ବନ୍ଧନ ଡୋରିରେ ବାନ୍ଧି ଦେଇଗଲ ରହିବ କାଳ କାଳକୁ
ହୃଦୟ ଆମ୍ଭର ବ୍ୟାକୁଳ ହେଉଛି ତୁମ ଦରଶନ ପାଇବାକୁ ।
ଆଜି ବି ରଖିଛି ସାଇତି ମୋ ଘରେ ତୁମ ବହି ଉପହାର
ଏ ଓଡ଼ିଶା ମାଟି ଖୋଜୁଛି ତୁମକୁ କାହିଁ ହୋଇଗଲ ପର ।
ଆସିଥିଲ ବୋଲି ଏକା ଏକା ତୁମେ ଚାଲିଗଲ ହୋଇ ଏକା
ପରିବାର ଜନ ସାଙ୍ଗେ କାହିଁ କଲ ଅଳପ ଅଳପ ଦେଖା ।
ଜୀବନ ଯୁଦ୍ଧରେ ହାରିଗଲ ତୁମେ ଭୁଲିଗଲ ବାପା, ଭାଇ
ଯିବା ପୂର୍ବେ ଟିକେ ସମସ୍ତଙ୍କ କଥା କାହିଁକି ଭାବିଲ ନାହିଁ ।
ମାନସ ମନାସୀ ମା' ହିଙ୍ଗୁଳା ପାଶେ ଜାଳି ଲୁହର ଦୀପାଳି
ହୃଦୟକୁ ମୋର ଭାଙ୍ଗି ଦେଇ ତୁମେ ଏତେ ଶୀଘ୍ର ଗଲ ଭୁଲି ।
ତୁମ ଫେରିବାକୁ ଚାହିଁ ସାଙ୍ଗସାଥି ସର୍ବେ ନିଇତି ପୂଜନ୍ତି ଦିଅଁ
ଅଧା ରହିଗଲା ସପନ ତୁମର ଯାତ୍ରା ରହିଗଲା ବାକି ।
ସମୟ ଆଗରୁ ଛାଡ଼ି ଚାଲିଗଲ ଝୁରେ ତୁମ ଗାଆଁ ମାଟି
'ଫୁଲଣଟିଏ ହୋଇ ଫୁଟିଥିଲ ତୁମେ ବେହେରା ଘର ବନାନୀରେ ।

ବାସନା ବହିବା ଆଗରୁ କାହିଁକି ମଉଳି ଗଲ ଗଛରେ
ତୁମ୍ଭେ ଗଲା ପରେ ଜହ୍ନର କାରଣ କେଉଁଆଡ଼େ ଗଲା ହଜି ।
ହୃଦୟକୁ ମୋର ଆସଇ ପୂର୍ଣ୍ଣିମା ସତେ ଅମାବାସ୍ୟା ସାଜି
ପ୍ରାଧାପକ ଭାବେ ଜଣା ହୋଇଥିଲ ଉତ୍କଳ ବିଶ୍ୱବିଦ୍ୟାଳୟରେ ।
ସାହିତ୍ୟିକରେ ଓ କଳାସଂସ୍କୃତିରେ ସଂଗଠନ ଗଢ଼ିବାରେ
ସୁଦିନେ ଦୁର୍ଦ୍ଦିନେ ତୁମେ ଥିଲ ପରା ତୁମ ପରି କେହି ନାହିଁ
କୀର୍ତ୍ତିଧାରା ତୁମ ଅକ୍ଷୁଣ୍ଣ ରହିବ ଅମ୍ଲାନ ହୋଇବ ନାହିଁ ।
ପୂଜୁଥିବି ନିତି ଦେବାଦେବୀଙ୍କୁ ମୁଁ ଫୁଲ ଚନ୍ଦନ ଦେଇ
ତୁମ ଆତ୍ମାର ସଦ୍‌ଗତି କାମନା କରୁଛି ରହିବ ଅମର ହୋଇ ।
ମୋର ଦୋଷ ଥିଲେ କ୍ଷମା କରିଦେବ ନ ଭାବିବ କେବେ ପର
ଅଧମ ସନ୍ତୋଷ ଢାଳି ଅଶ୍ରୁ ନୀର କରେ କୋଟି ନମସ୍କାର... ।



ଗୋପାଳପୁର, ପ୍ରଥମଖଣ୍ଡ, ରସୁଲପୁର

# ଲୋଡ଼ା ତବ ଆଶୀର୍ବାଦ

ଦାମୋଦର ବେହେରା

ଶିକ୍ଷା ଆଉ ସାଂସ୍କୃତିକ ଚେତନାର ଶିଖା ଅନିର୍ବାଣ
ବିଦ୍ୟାର ଗଭୀରତନ୍ତ୍ରେ ନିମଜ୍ଜିତ ତୁମରି ସ୍ୱାକ୍ଷର
ବିଚାର ବିମୁଗ୍ଧ ଛନ୍ଦେ ପଥଚାରୀ ତୁମେ ଭଗୀରଥ
ରଚିଛ ଯା'ଜୀବନରେ ସାଧ ଆଉ ସାଧନା କକ୍ଷରେ ।

ଜୀବନର ଦୀପଶିଖା ଲିଭି ସିନା ଗଲା ଆଜି ତବ
ପ୍ରଜ୍ଞାର ଶାଣିତ ଛନ୍ଦ ରଚେ ନୃତ୍ୟ ମଧୁର ଗୁଂଜନେ
ସମୟର କରବାଳେ ପ୍ରତିଧ୍ୱନି କହେ କାନେ କାନେ
ସାହିତ୍ୟର କାନନରେ ବୁଣିଗଲ ବିଭୂତି ମହାନ ।

ବୀର ତୁମେ ମୃତ୍ୟୁଞ୍ଜୟୀ କାଳର ମୈନାକ
ଶୁଦ୍ଧାତ୍ମା ଯାଜ୍ଞିକ ଆହେ ଏ ଜାତି କାର୍ତ୍ତିକ
ଯାହା ତୁମେ ଅର୍ପିଗଲ ଏ ମାଟି କଲ୍ୟାଣେ
ସାରସ୍ୱତ ଉଦ୍ଦୀପନ ସତେକି ସେ ଶିଳାର କୋଣାର୍କ ।

ଘେନ ଆଜି ଶ୍ରଦ୍ଧାଂଜଳି ବିନମ୍ର ପ୍ରଣତି
ମୃତ୍ୟୁ ନୁହେଁ ରୂପାନ୍ତରେ ଯାତ୍ରା ଆଜିତବ
ଦେଇ ଯାଅ ଆଶୀର୍ବାଦ କରେ ମୁଁ ପ୍ରାର୍ଥନା
ସାଇତି ରଖିବି ତବ ଅମୃତ ବିଭବ ।



ସଚିବ, ସାରସ୍ୱତ ସାହିତ୍ୟ ସାଂସ୍କୃତିକ ପରିଷଦ
ଦଶରଥପୁର, ଯାଜପୁର

# **The Only Talisman You Need** (this week)

**Ananya Behera**

I've come across hundreds of articles and books about self-help. These writings prescribe a million different ways how we can be successful, how we can make more money, how we can be more effective at work, how we can lead healthier lives, how we can tweak the laws of attraction; and in essence how can we enrich the quality of our lives. To add to these works of text, I've watched dozens of videos on the same topics. People these days have taken it upon themselves to share what has worked for them, to get to the stage they are at, and it's a beautiful thing because we are at a point in history where people are going out of their way to help each other. And, because information in this format is so accessible and penetrates every aspect of our lives, people can make progress and change their lives easily.

How many times have you come across an article titled - "10 eventual habits of....." or something similar? Even accounts on Instagram post daily quotes that are meant to inspire and motivate. There's a lot of positivity and optimism in the world and it's amazing, which brings me to why I'm writing this piece. I personally love to read books, articles, magazines, etc. that will help me upgrade my lifestyle. Starting from Dale Carnegie's legendary "How to Stop Worrying and Start Living" to Tim Ferris'

"The 4 Hour Workweek", if there's a prescription for a lifehack, I'm usually all over it. You'll find stacks of Men's Fitness, Men's Health and GQ at my place, too. In the paragraphs below, I want to condense all this information into a single truth. I'm making an attempt to capture the essence of how we can live better lives. Of course, what I am about to suggest is not the only formula - in fact, I'd be foolish to call it a formula, but it's more like a mantra, which has worked for me and here I am sharing that with you.

We all want to improve our lives right? We all want to make more money, be happier, get fitter and be more successful, and the first thing we usually do to this effect is set goals for ourselves. Goals are great. Goals keep us focussed - whether it's getting that promotion at the office or if it's starting revision for an upcoming exam, goals are intangible thoughts and words that drive us. But, before you set a goal, you need to think how badly do you need/want this. How badly do you really need this? Is this something that you really need in your life? If you can justify the absolute necessity of something, then only can you position yourself to achieve it. And once you've justified why something is a goal, the why is your motivation. Let's say you really, really want to do well in your exam. Why do you want to do well? Is it to improve your chances at a scholarship? Is it to impress your parents? Is it to get a qualification that leads to something better? Is it for yourself? Sometimes, you'll have to think a few steps ahead, but once you distill the actual reason you are doing something, and this something, is something that you want from the bottom of heart, with all your being, then that is the only motivation you need. But motivation, by itself, is not going to

get you anywhere. Motivation is intangible. However, add some discipline into the mix, and you have winning combination. Discipline is what brings you closer to attaining your goals, not motivation.

However, how many times have we set goals and made a start towards them, only to wander off course and find ourselves back in our starting positions. It's happened to me so many times that at times, I've become extremely frustrated and just given up completely. And, what I've lately come to realise, is that consistency in discipline is the missing ingredient. Consistency in our actions, consistency in our decisions and consistency in our choices lead us in the right direction. And the surefire way to ensure consistency is to simply Be a better version of yourself today than you were yesterday. Let me explain. If you progressively, bit by bit, do something everyday, but each new day, you do a bit more in the direction of your goal, you aren't just laying the foundations to achieve your goal, but you're also becoming a better version of yourself (assuming that the goal you've set is aimed at making you a better you). Take quitting to smoke cigarettes as an example. You're on a pack a day at the moment. Well, it isn't going to happen overnight. There has to be a gradual wind-down. You smoked 10 today, try smoking 9 tomorrow, and 8 the next day. You only smoke when you drink? Maybe share a pack with a friend, and the next time with two friends? Enough about smoking. You want to get to that magical 100kg bench press and you're at a measly 40kg (no judgements, I started at 40kg too). It ain't gonna work if you all of a suddenly decide to rack up the bar. In fact, you'll probably hurt yourself. You benched 70kg today? Try 70.5kgs tomorrow? Any progress, no

matter how infinitesimal it may be, is progress and is responsible for you being a better version of you.

Be a better version of yourself today than you were yesterday

So, there you have jt. Consistently improving yourself by doing something slightly different each day takes you towards your goal. All the tips and lifehacks you read may eventually result in whatever they promise, but making these into sustainable habits takes time and persistence. It's not foolish to aim high, it's foolish to not have a progressive plan that supports. Invest time to think of what you really want and then invest more time in thinking how badly you want it. Make a plan that slowly and pragmatically takes you to it. Along the way, you'll see yourself becoming a better version of yourself. Don't let anyone tell you your limitations. We're all created equal with the exact same potential. After all, your genetics and DNA don't wake you up at 5am to get shit done.

I'm unclear why I chose to write on this topic, but the reason why I chose to write this now is clear. I lost my grandfather over the weekend, and he was a true man of words. A professor in literature, my grandfather, instilled in me, a love for writing - stories, poems, fiction and non-fiction. It's easy to get lost in the demands of your day job and kind of, lose touch, with things that used to be a passion. And so, this write up is dedicated to him and I hope that somebody, somewhere reads this and enrich their life.



Australia

# Love You Jeje

**Ananyaashree Behera**

Jeje, I can't imagine this life being nearly as beautiful without you in it. I have grown up seeing you dedicate your life to what you loved the most. Your generosity, work ethic, humility and selflessness are all qualities that I admire and qualities I myself aspire to. There are so many wonderful memories; from taking my first odia lessons and hand writing practices in childhood to encouraging me to go for higher studies and pursue my PhD. I remember those days when I used to cry for some reason and you come to my room crying and trying to console me for whatever has happened and to move on in life. Seeing tears rolling down your innocent eyes has always made me realise how much you loved all of us. I also remember your advice on how important it is for choosing a right partner for marriage who would also take care of my parents as his own. Jeje I promise you, I will always take care of mommy baba and never leave them alone. Your words have always influenced me in every aspect of my life. And I believe you will be my guiding light.

I miss our Sunday mornings when you wake me up early in the morning asking me what would I prefer (chicken or fisn) for lunch knowing that I always have chicken on Sundays. I miss you when I open the door after returning from lab and see the empty chair in the living room and the television

switched off. This reminded me of how much concerned you were for my late arrivals from lab. You know some times I got irritated by the loud bengali movies you watched for hours, but today I long for your presence with us. The pain you suffered for the last 23 days hurt everyone of us and it was very difficult for us to let you go.

Jeje, thank you for teaching me the importance of being true to ourselves and enjoying every minute of this life. Albert Einstein once said, "Our death is not an end if we can live on in our children and the younger generation. For they are us, our bodies are only wilted leaves on the tree of life." Jeje, you had ears that truly listened, arms that always hold, love that never ended and a heart that was made of gold. We will always celebrate your life and continue your legacy. You will stay forever in my heart. I love you Jeje.



Cuttack

# My Favorite Old Man

**Amrutashree Behera**

When I was younger I remember the countless times I've torn up paintings and drawings that I was unhappy with. I would sit on the beige plastic mat or 'sapa' that lay infront of Jeje's bed and scribble across countless white sheets, hoping to create a work of art that would make me happy. As I would complete colouring in one sheet, jeje would see the unhappiness across my face. He would notice that I wasn't pleased with what I had drawn or that something had gone wrong. He'd stop me from throwing it away, and instead take them from my hands and put them in a folder. He said he would keep them all safely and show them all to me whenever I come back to him and give him more works of art for safe-keeping.

Jeje taught me what learning from my mistakes meant. As a designer and artist pursuing my dreams in New York, it's always been important for me to know that a mistake won't define me or my work. Jeje was the person who made me believe in this since I was 5. Seeing him take a piece of work from me each time I returned home, and create a portfolio of my works right beside his bed gave me a push to pursue my dreams. His belief in me since I was young, and the constant encouragement to live my dreams and work hard will forever motivate me to stand back up after every mistake I make.

The way jeje would collect my works of art and keep them safe for me to see my progress as I grew older, I will keep and cherish every memory of him as the world's most amazing Grand Father. From sipping tea with him at 6 O' clock, to asking him for plain sheets of paper or forcing him to smile each time a picture of us would be taken.

You will forever remain in my heart Grandpa,

Rest In Peace my favourite Old Man.



America

# ସାହିତ୍ୟ ସାଧକ ଡକ୍ଟର କୃଷ୍ଣଚରଣ ବେହେରା

**ଆବିର୍ଭାବ : ୨ ଜୁନ୍ ୧୯୩୨**

**ତିରୋଧାନ : ୨୯ ଜୁଲାଇ ୨୦୧୭**

## ଜୀବନପଞ୍ଜି

- ଜନ୍ମସ୍ଥାନ : ତିହିଡ଼ିର ଅର୍ଜ୍ଜୁନବିନ୍ଧା ଗ୍ରାମ, ଭଦ୍ରକ ଜିଲ୍ଲା ।
- ବାପା : ପୀତାମ୍ବର ବେହେରା, ମାତା : ପବିତ୍ରା ଦେବୀ ।
- ବାପା ପୀତାମ୍ବର ଥିଲେ ଓଡ଼ିଶା ଆକାଉଣ୍ଟାଣ୍ଟ ଜେନେରାଲଙ୍କ ଷ୍ଟେନୋ । ସୁଦୂର ରାଞ୍ଚିରେ ଥିଲା ତାଙ୍କ କର୍ମଭୂମି ।
- କୃଷ୍ଣଚରଣଙ୍କ ବାଲ୍ୟଜୀବନ ସହଜ ନଥିଲା । ଦୁଃଖ-କଷ୍ଟରେ ବଢ଼ିଥିଲେ ।
- ୩/୪ ବର୍ଷ ବୟସରେ ତାଙ୍କ ମାତା ପବିତ୍ରା ଦେବୀଙ୍କ ଅକାଳ ବିୟୋଗ ଘଟିଲା । ବାପା ଥା'ନ୍ତି ସୁଦୂର ରାଞ୍ଚିରେ । କପାଳରେ ଅପତ୍ୟ ସୁଖ ନଥିଲା ।
- ମା' ଛେଉଣ୍ଡ ହେଲା ପରେ ଦାଦା ମାୟାଧର ବେହେରା ଓ ବଡ଼ ମା' ସତ୍ୟ ବୋଉ ହେପାଜତରେ ଲାଳିତ ପାଳିତ ହେଲେ । ମାମୁଘର ଗାଁ ନନ୍ଦପୁରରେ ରହଣି ଓ ଶିକ୍ଷାଦୀକ୍ଷାର ପ୍ରାଥମିକ ପ୍ରବନ୍ଧ ।
- ଶିକ୍ଷା ବିବରଣୀ : ଆରୁହା ପ୍ରାଇମେରୀ ସ୍କୁଲରେ ପ୍ରାଥମିକ ଶିକ୍ଷା । ଚନ୍ଦ୍ରକାଟବିନ୍ଧା ମଡ଼େଲ ୟୁପି ସ୍କୁଲରେ ତୃତୀୟ ଶ୍ରେଣୀରୁ ପଞ୍ଚମ ଶ୍ରେଣୀ ଯାଏ ଶିକ୍ଷା ଲାଭ ।
- ତିହିଡ଼ି ମାଇନର ସ୍କୁଲରେ ଷଷ୍ଠ, ସପ୍ତମ ଶ୍ରେଣୀ (୧୯୪୩) ଅଧ୍ୟୟନ ।
- ୧୯୪୪ରେ ଦୋଳସାହି ରାମନାରାୟଣ ହାଇସ୍କୁଲରେ ୮ମ ଶ୍ରେଣୀରେ ଭର୍ତ୍ତି ଓ ୧୯୪୮ରେ ମାଟ୍ରିକ୍ୟୁଲେସନ ପାସ୍ । ଉଚ୍ଚଶିକ୍ଷା ଭଦ୍ରକ କଲେଜରେ ଇଣ୍ଟରମେଡ଼ିଏଟ୍ ଶ୍ରେଣୀରୁ ।
- ୧୯୫୦ରୁ ୧୯୫୨ କଟକ ରେଭେନ୍ସା କଲେଜର ସ୍ନାତକ ଛାତ୍ର ।୧୯୫୨ରେ ବି.ଏ. ଡିଗ୍ରୀ ହାସଲ ।
- ୧୯୫୨ରେ ପଶ୍ଚିମବଙ୍ଗ ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟ ଶାନ୍ତିନିକେତନରେ ସ୍ନାତକୋତ୍ତର ଶ୍ରେଣୀରେ ଭର୍ତ୍ତି । (ଶାନ୍ତିନିକେତନ ପ୍ରକୃତରେ ଥିଲା ତାଙ୍କ ସାଧନାର ପ୍ରସ୍ତୁତି ଭୂମି ।

- ଭଦ୍ରକ କଲେଜରେ ପଢ଼ିବା ବେଳକୁ ସାମ୍ୟବାଦୀ ଆନ୍ଦୋଳନ ପ୍ରତି ଆଗ୍ରହ ଏବଂ ଲେଖାଲେଖି ପ୍ରତି ଆଗ୍ରହ ।
- ବିଶ୍ୱଭାରତୀରେ ପଢ଼ିଲା ବେଳେ ବିଶ୍ୱକବି ରବିନ୍ଦ୍ରନାଥଙ୍କ ପ୍ରଭାବରେ ପ୍ରଭାବିତ ।
- କଟକ ଆକାଶବାଣୀର ସ୍ୱୀକୃତିପ୍ରାପ୍ତ ଗୀତିକାର । ପଚାଶରୁ ଅଧିକ ଗୀତ ପ୍ରସାରିତ ।
- ୧୯୫୩ରେ ପ୍ରକାଶିତ ହୁଏ ପ୍ରଥମ କବିତା ସଂକଳନ 'ଚା' କପ୍‌ରେ ଝଡ଼' ।
- ଶାନ୍ତିନିକେତନରେ ଅଧ୍ୟୟନ ବେଳେ ପତ୍ରପତ୍ରିକା ସଂପାଦନା ସହ ସଂପୃକ୍ତି । ୧୯୫୩-୫୪ରେ ଗଞ୍ଜଭିତ୍ତିକ ପତ୍ରିକା ଅଗ୍ରଣୀ ପତ୍ରିକା ସଂପାଦନା ଦାୟିତ୍ୱ ।
- ଦୁର୍ଗାଚରଣ ପରିଡ଼ା ଓ କୃଷ୍ଣଚରଣଙ୍କ ମିଳିତ ସଂପାଦନାରେ ପ୍ରକାଶ ପାଇଲା 'କବିତା' । ଏଥିରେ କିଛି କବିତା ସହ କେତେକ ସମୀକ୍ଷା ସ୍ଥାନ ପାଇଥିଲା । ପରବର୍ତ୍ତୀ ସମୟରେ ଜାତୀୟ-ଆନ୍ତର୍ଜାତୀୟ କବିଙ୍କ ଅନୂଦିତ କବିତା ଏଥିରେ ପ୍ରକାଶ ପାଇବା ସହ ପାଠକୀୟ ଆଦର ଲାଭ କରିଥିଲା ।
- ୧୯୫୫ରେ ବିଶ୍ୱଭାରତୀ ଶାନ୍ତି ନିକେତନରୁ ଓଡ଼ିଆ ଭାଷା ସାହିତ୍ୟରେ ସ୍ନାତକୋତ୍ତର ଡିଗ୍ରୀ ଲାଭ ।
- ସେହିବର୍ଷ ରାଇରଙ୍ଗପୁରର ଜୟନ୍ତୀ ଦେବୀଙ୍କ ସହ ବିବାହ ସଂପନ୍ନ, 'ଡଗର' ପତ୍ରିକା ସହ ସଂପୃକ୍ତି । କେତେକ ବିଶେଷ ସଂକଳନର ପ୍ରକାଶନ ।
- ୧୯୫୫ ସେପ୍ଟେମ୍ବରରୁ ଡିସେମ୍ବର ଭଦ୍ରକ କଲେଜରେ ଅସ୍ଥାୟୀ ଅଧ୍ୟାପକ ।
- ୧୯୫୬ ଅଗଷ୍ଟ ୬ରେ ସେହି ଭଦ୍ରକ କଲେଜରେ ଅଧ୍ୟାପକ ଭାବେ ଯୋଗଦାନ । ୧୯୫୬ରୁ ୧୯୭୧ ଦୀର୍ଘ ୧୫ ବର୍ଷ କାଳ ଭଦ୍ରକ କଲେଜରେ ଅଧ୍ୟାପନା ।
- 'ଓଡ଼ିଆ ଉପନ୍ୟାସ' ସଂପର୍କରେ ଗବେଷଣା କରି ୧୯୬୭ରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡ଼ି. ଉପାଧିପ୍ରାପ୍ତ ।
- ୧୯୭୧ରୁ ୭୫ ବାରିପଦା ମହାରାଜା ପୂର୍ଣ୍ଣଚନ୍ଦ୍ର କଲେଜରେ ଅଧ୍ୟାପନା ।
- ୧୯୭୫-୮୧ ରେଭେନ୍‌ସା କଲେଜରେ ଶିକ୍ଷାଦାନ ।
- ୧୯୮୧-୮୬ ଫୁଲବାଣୀ ସରକାରୀ କଲେଜରେ ଅଧ୍ୟାପନା ।
- ୧୯୮୬-୯୦ ରେଭେନ୍ସା କଲେଜରେ ଅଧ୍ୟାପନା ଏବଂ ୧୯୯୦ ଜୁନ୍ ୩୦ରେ ଅବସର ଗ୍ରହଣ ।
- ୧୯୯୦-୯୨ ଭଦ୍ରକ ମହିଳା ମହାବିଦ୍ୟାଳୟର ଅଧ୍ୟକ୍ଷ ଦାୟିତ୍ୱ ।

- କାଞ୍ଚିକାବେରୀ ତାଙ୍କ ପ୍ରଥମ ସାରସ୍ୱତ ସୃଷ୍ଟି ହୋଇଥିଲା ବେଳେ 'ଏଇ ପତାକାର ତଳେ' କବିତା ୧୯୪୭- ୪୮ ମସିହାରେ କୋଲକାତାରୁ ଆକୁଳି ମିଶ୍ରଙ୍କ ସଂପାଦନାରେ ପ୍ରକାଶିତ 'ଆଲୁଅ'ରେ ଆତ୍ମପ୍ରକାଶ କରିଥିଲା । ଏଇଟି ତାଙ୍କ ସାରସ୍ୱତ ସାରଣୀର ପ୍ରଥମ ପର୍ବ ।
- ୧୯୬୬ରେ ଦୁଷ୍ପ୍ରାପ୍ୟ 'ମୋଗଲ ତାମସା'ର ପୂର୍ଣ୍ଣାଙ୍ଗ ପାଣ୍ଡୁଲିପି ସଂଗ୍ରହ, ସଂପାଦନା ଓ ପ୍ରକାଶନ । ଭଦ୍ରକ ସାଂସ୍କୃତିକ ଇତିହାସର ପୁନର୍ଜୀବନ ଓ 'ମୋଗଲ ତାମସା'ର ସଂରକ୍ଷଣ ।
- ୧୯୮୦ରେ ଛାତ୍ର କ୍ଷେତ୍ରବାସୀ ନାୟକଙ୍କ ସହଉଦ୍ୟମରେ 'ଓଡ଼ିଆ ଗବେଷଣା ପରିଷଦ' ଗଠନ ଏବଂ ଏହାର ମୁଖପତ୍ର 'ଏଷଣା'ର ସଂପାଦନା ଦାୟିତ୍ୱ ବହନ । ଏଯାବତ୍ ଏହି ଗବେଷଣାଧର୍ମୀ ଓଡ଼ିଆ ପତ୍ରିକା 'ଏଷଣା' ସଂପାଦନାରେ ନିମଗ୍ନ' ।
- ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ପ୍ରାଚୀ ସମିତି (୧୯୨୬) ପରେ 'ଓଡ଼ିଆ ଗବେଷଣା ପରିଷଦ' ଏକମାତ୍ର ଗବେଷଣାଭିତ୍ତିକ ପ୍ରତିଷ୍ଠାନ, ଯହିଁରେ କୃଷ୍ଣଚରଣଙ୍କ ନେତୃତ୍ୱରେ ୨୨ଖଣ୍ଡରୁ ଅଧିକ ପ୍ରାଚୀନ ଓ ଆଧୁନିକ ଗ୍ରନ୍ଥ ସଂପାଦନା ଓ ପ୍ରକାଶନ ।
- ନିୟମିତ ପାଠଚକ୍ର ଜରିଆରେ ଜ୍ଞାନ-ବିଜ୍ଞାନର ପ୍ରସାରଣ, ସାହିତ୍ୟ ଚର୍ଚ୍ଚା ।
- ପ୍ରାୟ ୩୬ ବର୍ଷ କାଳ ଇଣ୍ଟରମେଡ଼ିଏଟ୍ ପିଲାଙ୍କୁ ଶିକ୍ଷାଦାନ । ଏହା ବ୍ୟତୀତ ୩୪ ବର୍ଷ ବି.ଏ. (ସମ୍ମାନ), ୧୧ବର୍ଷ ସ୍ନାତକୋତ୍ତର ଏବଂ ୬ବର୍ଷ ଏମ୍‌ଫିଲ୍ ଛାତ୍ରଛାତ୍ରୀଙ୍କୁ ଶିକ୍ଷାଦାନ ।

## ସୃଷ୍ଟି- ସମ୍ଭାର

### କାବ୍ୟ କବିତା

୧. ଚା' କପ୍‌ରେ ଝଡ଼ (୧୯୫୩)
୨. ୫୪, ଭାନୁବାଈ ଲେନ୍ (୧୯୫୯)
୩. ପିପାସାର ପ୍ରାର୍ଥନା (ଅଧ୍ୟାପକ ବୈଷ୍ଣବଚରଣ ବଳଙ୍କ ସହ) (୧୯୬୮)
୪. ଲଘୁପଞ୍ଚକ (୧୯୮୩)

### ନାଟ୍ୟକୃତି

୧. ଯଥା ନଳସ୍ୟ ଦମୟନ୍ତୀ (୧୯୫୯)
୨. ଯୋଜନା ଯଜ୍ଞ ପାଲା (୧୯୫୯)

## ଗଳ୍ପଗୁଚ୍ଛ

୧. ସୃଷ୍ଟିର ସ୍ୱପ୍ନ (୧୯୫୮)
୨. ଗୋପନ ପତ୍ର (୧୯୬୨)
୩. ଭଙ୍ଗା ଓ ଗୋଟା (୧୯୬୭)
୪. 'ବେଦୀ' ଇତ୍ୟାଦି ଗଳ୍ପ (୧୯୭୧)
୫. 'ନାରୀ' ଏକ ନଦୀର ନାମ (୧୯୭୬)
୬. ଐତରେୟ (୧୯୮୨)
୭. ନାରୀମେଧ (୧୯୮୯)
୮. ଦର୍ପକଦର୍ପଣ (୨୦୦୪)
୯. ଇତରଇତରା (୨୦୦୮)
୧୦. ମାଟିମାଗୁଣି (୨୦୧୦)
୧୧. ଆଦିକଳ୍ପ (୨୦୧୪)
୧୨. ଶ୍ରେଷ୍ଠଗଳ୍ପ (୨୦୧୪)

## ଶିଶୁ- କିଶୋର ରଚନା

୧. କଥାଟିଏ କହୁଁ ଗୀତଟିଏ ଗାଉଁ (୧୯୬୮), ୪ର୍ଥ ସଂସ୍କରଣ-୧୯୮୩
୨. ଗପସପ (୧୯୮୨)
୩. ଅତିବଡ଼ୀ ଜଗନ୍ନାଥ ଦାସ(୨୦୦୨)
୪. ଗଛଲତାର ସଂସାର (୨୦୧୦)

## ପ୍ରବନ୍ଧ- ସାହିତ୍ୟାଲୋଚନା

୧. ପ୍ରଗତି ସାହିତ୍ୟ (୧୯୫୮), ଦ୍ୱିତୀୟ ସଂସ୍କରଣ- (୧୯୭୦)
୨. କଥା ସାହିତ୍ୟ (୧୯୬୦), ତୃତୀୟ ସଂସ୍କରଣ- (୧୯୭୮)
୩. ଅଶ୍ଳୀଳତା ବିପକ୍ଷରେ (୧୯୬୬)
୪. ଓଡ଼ିଆ ଉପନ୍ୟାସ (୧୯୬୮), ୪ର୍ଥ ମୁଦ୍ରଣ- ୨୦୧୪
୫. କେତୋଟି ସାହିତ୍ୟିକ ଅଭିଭାଷଣ (୧୯୭୦), ଦ୍ୱିତୀୟ ସଂସ୍କରଣ (୧୯୭୭)
୬. ଅଧ୍ୟାପକର ବେଦନା (୧୯୭୨)
୭. ଶ୍ରୀଜଗନ୍ନାଥ ଓ ଓଡ଼ିଆ ସାହିତ୍ୟ (୧୯୭୪),୨ୟ ମୁଦ୍ରଣ (୧୯୮୨)
୮. ନାଟ୍ୟ ସାହିତ୍ୟ ପରିଚୟ (୧୯୭୮), ତୃତୀୟ ମୁଦ୍ରଣ-୨୦୦୮

୯. ଚରୁ ଓ ଚରିତ (୧୯୭୯)
୧୦. ମଧ୍ୟସ୍ଥ ବାଣୀ (୧୯୮୦)
୧୧. ସଂପାଦ ସନ୍ଦର୍ଭ (୧୯୮୧), ଦ୍ୱିତୀୟ ମୁଦ୍ରଣ- ୧୯୮୭
୧୨. ପ୍ରସଙ୍ଗ : ଗଳ୍ପ- ଉପନ୍ୟାସ (୧୯୮୯)
୧୩. ବୀକ୍ଷାବିଚିତ୍ରା (୧୯୯୧)
୧୪. ପ୍ରସଙ୍ଗ : ଧର୍ମ ଓ ଶିକ୍ଷା (୧୯୯୩)
୧୫. କୁସୁମକେଳି (୧୯୯୫)
୧୬. ପ୍ରସଙ୍ଗ : ନାଟକ-ଏକାଙ୍କିକା (୧୯୯୭)
୧୭. କୃଷ୍ଣଚରଣ ବୀଥିକା (୧୯୯୯)
୧୮. ପଣ୍ଡିତ ନୀଳମଣି ବିଦ୍ୟାରତ୍ନ (୨୦୦୨)
୧୯. ସଭାସମ୍ଭାଷ (୨୦୦୫)
୨୦. ପ୍ରସଙ୍ଗ : ସାହିତ୍ୟାଲୋଚନା (୨୦୦୭)
୨୧. ଓଡ଼ିଆ ସାହିତ୍ୟରେ ଇସ୍‌ଲାମୀ ପ୍ରଭାବ (୨୦୦୭)

## ସଂକଳିତ- ସଂପାଦିତ ଗ୍ରନ୍ଥ

୧. ଦଶହରା (୧୯୬୦)
୨. କବିଶେଖର ଚିନ୍ତାମଣି (୧୯୬୩)
୩. ମୋଗଲ ତାମସା (୧୯୬୬)
୪. ଚୟନିକା (ଡକ୍ଟର କ୍ଷେତ୍ରବାସୀ ନାୟକଙ୍କ ସହ) (୧୯୭୬)
୫. ପଲ୍ଲୀକବି ନନ୍ଦକିଶୋର ସ୍ମାରକ ଗ୍ରନ୍ଥ (୧୯୭୬)
୬. କିଶୋରଚନ୍ଦ୍ରାନନ୍ଦ ଚମ୍ପୂ (୧୯୭୭), ୫ମ ମୁଦ୍ରଣ- ୧୯୯୫
୭. ଏକାଙ୍କିକା ଚୟନ (୧୯୭୭)
୮. ଏ ଯୁଗର ଗଦ୍ୟ ଚୟନ (୧୯୭୮)
୯. ବୈକୁଣ୍ଠନାଥ ଗ୍ରନ୍ଥାବଳୀ, ୨ୟ ଖଣ୍ଡ (୧୯୭୯)
୧୦. ପ୍ରୀତିସୁଧାକର (୧୯୭୯)
୧୧. ବୈଦେହୀଶ ବିଳାସ (୧୯୮୦), ତୃତୀୟ ମୁଦ୍ରଣ- ୧୯୮୯
୧୨. ସାରସ୍ୱତ ସାରଥୀ (ଅଧ୍ୟାପକ ପଠାଣି ପଟ୍ଟନାୟକଙ୍କ ସହ) (୧୯୮୦)
୧୩. କଳାବତୀ (୧୯୮୧)
୧୪. ଫୁଲମଣି ଓ କରୁଣାର ବିବରଣ (୧୯୮୨)

୧୫. ଗୋପାଳକୃଷ୍ଣ ପଦାବଳୀ- ପରିକ୍ରମା (୧୯୮୫), ଚତୁର୍ଥ ସଂସ୍କରଣ- ୧୯୯୮
୧୬. କୋଟି ବ୍ରହ୍ମାଣ୍ଡସୁନ୍ଦରୀ (୧୯୯୩)
୧୭. ଫକୀରମୋହନ ଗ୍ରନ୍ଥାବଳୀ (ଅଧ୍ୟାପକ ଦେବେନ୍ଦ୍ରକୁମାର ଦାଶଙ୍କ ସହ) (୨୦୦୦)
୧୮. କବିସୂର୍ଯ୍ୟ ଗ୍ରନ୍ଥାବଳୀ (୧୯୯୮)
୧୯. ଗୋପାଳକୃଷ୍ଣ ରଚନାବଳୀ (୨୦୦୩)
୨୦. ଦଳିତ ଆନ୍ଦୋଳନ ଓ ଦଳିତ ସାହିତ୍ୟ (ଶୈଳଜ ରବିଙ୍କ ସହ) (୨୦୦୭)

## ପୁରସ୍କାର-ସମ୍ମାନ-ସମ୍ବର୍ଦ୍ଧନା

୧. ଉତ୍କୃଷ୍ଟ ଲୋକ ନାଟକ ଲେଖା ପାଇଁ ଭାରତ ସରକାରଙ୍କ ପକ୍ଷରୁ ପୁରସ୍କାର (୧୯୫୯)
୨. ଶିଶୁଲେଖା ପାଇଁ ଓଡ଼ିଶା ସରକାରଙ୍କ ପକ୍ଷରୁ ପୁରସ୍କାର- (୧୯୭୦)
୩. ବିଷୁବ ମିଳନ ପୁରସ୍କାର, ପ୍ରଜାତନ୍ତ୍ର ପ୍ରଚାର ସମିତି, କଟକ (୧୯୭୯)
୪. କେଦାରନାଥ ଗବେଷଣା ପ୍ରତିଷ୍ଠାନ ପୁରସ୍କାର, ଭୁବନେଶ୍ୱର, (୧୯୯୫)
୬. ପ୍ରଗତି ଉତ୍କଳ ସଂଘ, ରାଉରକେଲା ପକ୍ଷରୁ ସମ୍ବର୍ଦ୍ଧନା (୧୯୯୬)
୭. ଗୋପୀନାଥ ନନ୍ଦ ପ୍ରବନ୍ଧ ପୁରସ୍କାର, ଉତ୍କଳ ସାହିତ୍ୟ ସମାଜ, କଟକ (୧୯୯୭)
୮. ଉତ୍କଳ ପାଠକ ସଂସଦ ସାରସ୍ୱତ ସମ୍ମାନ- (୧୯୯୮)
୯. ନାଟ୍ୟଭୂଷଣ ପୁରସ୍କାର, କଟକ (୧୯୯୮)
୧୦. ପଲ୍ଲୀକବି ନନ୍ଦକିଶୋର ବଳ ଫାଉଣ୍ଡେସନ ସମ୍ମାନ, ଭୁବନେଶ୍ୱର (୧୯୯୯)
୧୧. ନିଖିଳ ଭାରତ ଓଡ଼ିଆ ଅଧ୍ୟାପକ ସମ୍ମେଳନ ପକ୍ଷରୁ ଟିଚର- ସ୍କଲାର ସମ୍ମାନ (୨୦୦୦)
୧୨. ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର- (୨୦୦୧)
୧୩. ଲେଖକ ସାମ୍ମୁଖ୍ୟ ସମ୍ମାନ (୨୦୦୨)
୧୪. ପୁନର୍ନବା ସାହିତ୍ୟ ସମ୍ମାନ, କେନ୍ଦ୍ରାପଡ଼ା (୨୦୦୨)
୧୫. ରୋଟାରି କ୍ଲବ୍ ସାହିତ୍ୟ ସମ୍ମାନ (୨୦୦୨)
୧୬. କବିଶେଖର ଚିନ୍ତାମଣି ମହାନ୍ତି ପୁରସ୍କାର- (୨୦୦୫)
୧୭. ବିଜୟା ମିଳନ ସମ୍ମାନ, ଭଦ୍ରକ- (୨୦୦୬)
୧୮. ଆର୍ତ୍ତବଲ୍ଲଭ ସ୍ମୃତି ସଂସଦ ସମ୍ମାନ, କଟକ-(୨୦୦୬)
୧୯. ଫକୀରମୋହନ ବିଶ୍ୱବିଦ୍ୟାଳୟ, ବାଲେଶ୍ୱର ପକ୍ଷରୁ ସମ୍ମାନ- (୨୦୦୭)

୨୦. ରାଜଧାନୀ କଲେଜ ପକ୍ଷରୁ ସାରସ୍ୱତ ସମ୍ମାନ- (୨୦୦୮)
୨୧. ନିମାପଡ଼ା କଲେଜ ପକ୍ଷରୁ ସାରସ୍ୱତ ସମ୍ମାନ- (୨୦୦୮)
୨୨. ପଣ୍ଡିତ ଗୋଦାବରୀଶ ମିଶ୍ର ସାରସ୍ୱତ ସମ୍ମାନ, ସାରଳା ସାହିତ୍ୟ ସଂସଦ, କଟକ- (୨୦୦୮)
୨୩. ଗଙ୍ଗାଧର ରଥ ଫାଉଣ୍ଡେସନ ପକ୍ଷରୁ ସାହିତ୍ୟ ଭାରତୀ ସମ୍ମାନ- (୨୦୦୯)
୨୪. ଶତଦ୍ରୁ ପ୍ରବନ୍ଧ ସମ୍ମାନ, ଭୁବନେଶ୍ୱର- (୨୦୧୦)
୨୫. ଶ୍ରୀରାଧା ଗୋବିନ୍ଦ ସମ୍ମାନ, ଭଦ୍ରକ- (୨୦୧୨)
୨୬. ଆଜୀବନ ସାହିତ୍ୟ ସାଧକ ସମ୍ମାନ- (୨୦୧୩)
ଓଡ଼ିଆ ବିଭାଗ, ରେଭେନ୍ସା ବିଶ୍ୱବିଦ୍ୟାଳୟ
୨୭. ଉଦୟଭାନୁ ଜ୍ୟୋତି ସମ୍ମାନ, କଟକ- ୨୦୧୫
୨୮. ଶ୍ରୀଧର ଦାସ ସାରସ୍ୱତ ସମ୍ମାନ, ସାରଳା ସାହିତ୍ୟ ସଂସଦ, କଟକ- ୨୦୧୬
୨୯. ପ୍ରଜ୍ଞାକୌସ୍ତୁଭ କୃଷ୍ଣଚରଣ ସମ୍ମାନ- (୨୦୧୬)
ଡ. ହୃଷୀକେଶ ପଣ୍ଡା ଫାଉଣ୍ଡେସନ, କଟକ
୩୦. ଫକୀରମୋହନ ସାହିତ୍ୟଶ୍ରୀ ପୁରସ୍କାର- (୨୦୧୭)
ଫକୀରମୋହନ ସାହିତ୍ୟ ପରିଷଦ, ବାଲେଶ୍ୱର



ନୁହେଁ ବଂଧୁ ନୁହେଁ ଏହା ଚିତା
ଏ ଜାତି ତିମିର ତଳେ
ଏ ଅଲିଭା ମୁକତି ସଳିତା ।

- ସଚ୍ଚି ରାଉତରାୟ